# MAHATMA GANDHI'S
# Autobiography

*Translated by*

**Sri Pitambara Misra, B. A.**

Printed by Sri R. N. Das.

Kishore Chandra Press,

**Aska** *( Ganjam )*



Rs 6 5 P 0 0

# ମୋ' ଟିପ୍ପଣୀ ।

'ମହାତ୍ମା ଗାନ୍ଧିଙ୍କ ଆତ୍ମଚରିତ' ଗାନ୍ଧିଜୀଙ୍କ ଗୁଜରାଟୀ ଭାଷା ଲିଖିତ ଓ ତାଙ୍କ ଶିଷ୍ୟ ଶ୍ରୀଯୁକ୍ତ ମହାଦେବ ଦେଶାଇଙ୍କ କର୍ତ୍ତୃକ ଇଂରେଜୀ ଭାଷାରେ ଅନୂଦିତ "The Story of My Experiments with Truth ଶୀର୍ଷକ ବହିର ଅବିକଳ ଅନୁବାଦ । ବହି ଟିର ଅନୁବାଦ ଆରମ୍ଭ କରିବା ତିନି ବର୍ଷରୁ ଅଧିକ ହେଲାଣି । ଇତି-ମଧ୍ୟରେ କ୍ରମାଗତ ଏକ ବର୍ଷ ଧରି ସାପ୍ତାହିକ "ଆଶା" ପତ୍ରିକାରେ ମୋ' ଲେଖାର କେତୋଟି ପରିଚ୍ଛେଦ ମାତ୍ର ପ୍ରକାଶ ପାଇଥିଲା । ଛାତ୍ରାବସ୍ଥାରେ ଛାତ୍ର ସୁଲଭ ଉତ୍ସାହ ପ୍ରଣୋଦିତ ହୋଇ ଏହି ଅନୁବାଦରେ ହସ୍ତକ୍ଷେପ କରିଥିଲି; ସ୍ୱତନ୍ତ୍ର ବହି ଆକାରରେ ମୋ' ଲେଖା ପ୍ରକାଶ କଲେ ହୁଏତ ଆଦରଣୀୟ ହୋଇ ନପାରେ ବୋଲି ସନ୍ଦେହ କରି ଆଜଯାଏ ସେଥିରୁ କ୍ଷାନ୍ତ ହୋଇ ରହିଥିଲି । କିନ୍ତୁ ମୋର କେତେ ଜଣ ବନ୍ଧୁଙ୍କ ପ୍ରୋତ୍ସାହ ଓ ଅନୁରୋଧ ହେତୁ ଆଜି 'ଆତ୍ମଚରିତ'ର ପ୍ରଥମଖଣ୍ଡ ପ୍ରକାଶ କରିବା ପାଇଁ ସାହସୀ ହୋଇ ଅଛି । ମୁଁ କେତେ ଦୂର କୃତକାର୍ଯ୍ୟ ହୋଇଅଛି, ତାର ବିଚାର ଭାର ପାଠକ ଓ ପାଠିକାଙ୍କ ଉପରେ ନିର୍ଭର କରେ ।

ଶ୍ରୀଯୁକ୍ତ ମହାଦେବ ଦେଶାଇଙ୍କ ବହିଟି ପାଞ୍ଚ ଭାଗରେ ବିଭକ୍ତ ଓ ଦୁଇ ଖଣ୍ଡରେ ପୂର୍ଣ୍ଣ ହୋଇ ଅଛି । ସେଥିରେ ଗାନ୍ଧିଜୀଙ୍କ ଜନ୍ମଠାରୁ ଆରମ୍ଭ କରି ଅସହଯୋଗ ଆନ୍ଦୋଳନର ପ୍ରାରମ୍ଭ ଯାଏ ସମସ୍ତ ବିଷୟ ବର୍ଣ୍ଣିତ ହୋଇ ଅଛି । ପୁସ୍ତକର କଳେବର ବଢ଼ିଯିବା ଭୟରେ 'ଆତ୍ମ-ଚରିତ'ଟି ଖଣ୍ଡ୍ ୬ କରି ପ୍ରକାଶ କରିବା ପାଇଁ ସ୍ଥିର କରି ଏହି ପ୍ରଥମ ଖଣ୍ଡରେ କେବଳ ଦୁଇଟି ଭାଗମାତ୍ର ଛପାଇ ଅଛି । ମହାତ୍ମାଜୀଙ୍କ ଜନ୍ମ ( ଅକ୍ଟୋବର, ୧୮୬୯ ) ଠାରୁ ୧୮୯୬ ସାଲ ଡିସେମ୍ବର ମାସରେ ସେ

ଦ୍ୱିତୀୟଥର ପାଇଁ ଦକ୍ଷିଣ ଅଫ୍ରିକାକୁ ଯିବା ପର୍ଯ୍ୟନ୍ତ ଏଥିରେ ପ୍ରକାଶ ପାଇ ଅଛି । ଅବଶିଷ୍ଟ ଛଅ ଗୋଟି ଭାଗ ଦ୍ୱିତୀୟ ବା ତୃତୀୟ ଖଣ୍ଡରେ ଛପାଇ ବହିଟି ପୂର୍ଣ୍ଣ କରିବା ଅଭିଳାଷ ଅଛି; ଭଗବାନଙ୍କର ଯାହା ଇଚ୍ଛା ।

ସାହିତ୍ୟ-କ୍ଷେତ୍ରରେ ଏହା ମୋର ପ୍ରଥମ ପ୍ରୟାସ । ସୁତରାଂ ମୋର ଲେଖା ଦୋଷ-ରହିତ, ମାର୍ଜିତ ଓ ସଂଯତ ହୋଇ ଅଛି ବୋଲି ମୁଁ କହି ପାରୁନାହିଁ । ଆହୁରି ମଧ୍ୟ ଏହି ବହି ଯେ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିବ, ସେ ଆଶା ରଖି ମୁଁ ଏହା ପ୍ରକାଶ କରୁନାହିଁ । ତଥାପି ସମସ୍ତ ଓଡ଼ିଆ ଭାଇ ଭଉଣୀଙ୍କୁ ଜଗତର ଶ୍ରେଷ୍ଠ ମାନବ ମହାତ୍ମା ଗାନ୍ଧିଙ୍କ ଜୀବନ ଚରିତ ପଢ଼ିବା ପାଇଁ ସୁବିଧା ଓ ସୁଯୋଗ କରାଇ ଦେବା ମୋର ଉଦ୍ଦେଶ୍ୟ । ଏ ବହି ଖଣ୍ଡି ପଢ଼ି ଜଣକର ସ୍ପୃହା ଯଦି କୌଣସି ଉପକାର ହୁଏ, ତାହାହେଲେ ମୁଁ ନିଜକୁ ଧନ୍ୟ ମନେ କରିବି ଓ ମୋର ଶ୍ରମ ସାର୍ଥକ ହେଲା ବୋଲି ଧରି ନେବି ।

ଦୁଃଖର କଥା, ଛପା-ଭ୍ରମ ସଂଶୋଧନ ପାଇଁ ଉପଯୁକ୍ତ ବ୍ୟବସ୍ଥା ନ କରି ପାରିଥିବା ଯୋଗୁଁ ବହିଟିରେ ସ୍ଥାନେ ସ୍ଥାନେ ମୁଦ୍ରଣ ଦୋଷ ରହିଯାଇ ଅଛି । ସେଥି ଲାଗି ପାଠକ ଓ ପାଠିକାଙ୍କ ନିକଟରେ ମୁଁ କ୍ଷମା ପ୍ରାର୍ଥୀ ।

ଏ ବହି ସମ୍ପର୍କରେ ଯେଉଁମାନେ ମୋତେ ସାହାଯ୍ୟ କରି ଅଛନ୍ତି, ସେମାନଙ୍କଠାରେ ମୁଁ କୃତଜ୍ଞ ।

ଅସିକା,
୨।୨।୧୯୩୧

ଅନୁବାଦକ ।

ପରିଚ୍ଛେଦ— ବିଷୟ | ପୃଷ୍ଠାଙ୍କ



## ଦ୍ୱିତୀୟ ଭାଗ ।

# ଭୂମିକା ।



ଗତ ପାଞ୍ଚ ବର୍ଷ ପୂର୍ବେ ମୋର କେତେ ଜଣ ସହକର୍ମୀଙ୍କ ଅନୁରୋଧରୁ ମୁଁ ମୋର ଆତ୍ମଚରିତ ଲେଖିବା ପାଇଁ ସ୍ୱୀକାର କରିଥିଲି । ଆରମ୍ଭ କଲି, କିନ୍ତୁ ପ୍ରଥମ ପୃଷ୍ଠାଟି ଲେଖିଛି କି ନାହିଁ ବୋମ୍ବାଇରେ ଗଣ୍ଡଗୋଳ ଆରମ୍ଭ ହେଲା—ସୁତରାଂ ସେ କାର୍ଯ୍ୟ ସେତିକିରେ ରହିଲା । ତା ଉତ୍ତାରୁ ଧାରାବାହିକ ଭାବରେ ଅନେକ ଘଟଣା ଘଟିଗଲା ଏବଂ ପରିଶେଷରେ ମୁଁ ଏରବାଡା ଜେଲରେ ବନ୍ଦୀ ହେଲି । ଶ୍ରୀଯୁକ୍ତ ଜୟରାମ ଦାସ ସେତେବେଳେ ସେ ଜେଲରେ ଥିଲେ । ଅନ୍ୟ ସମସ୍ତ ବିଷୟ ଛାଡ଼ିଦେଇ ଆତ୍ମଚରିତ ଶେଷ କରିବା ପାଇଁ ସେ ମୋତେ କହିଲେ । ମୁଁ ତାହାଙ୍କୁ ଉତ୍ତର ଦେଲି ଯେ ପଢ଼ିବା ସକାଶେ ମୁଁ ଗୋଟିଏ କାର୍ଯ୍ୟକ୍ରମ କରି ସାରିଅଛି, ତାହା ଶେଷ ହେବାଯାଏ ମୁଁ ଅନ୍ୟ କୌଣସି ବିଷୟ ଭାବିନପାରେ । ଏରବାଡାରେ ଯଦି ମୁଁ ମୋର ପୂର୍ଣ୍ଣ ଜେଲ ସମୟ ପାଇଁ ରହିଥାନ୍ତି, ତାହାହେଲେ ଆତ୍ମଚରିତ ଲେଖା ଶେଷ କରି ପାରିଥାନ୍ତି, କିନ୍ତୁ କାର୍ଯ୍ୟ ଶେଷ କରିବାପାଇଁ ଆହୁରି ଏକ ବର୍ଷ ଥିଲା ମୋତେ ଜେଲରୁ ମୁକ୍ତ କରାଗଲା । ସ୍ୱାମୀ ଆନନ୍ଦ ଏବେ ସେ ପ୍ରସ୍ତାବର ପୁନରୁତ୍ଥାନ କରି ଅଛନ୍ତି ଏବଂ ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହର ଇତିହାସ ଶେଷ କରି ଦେଇ-ଥିବା ଯୋଗୁଁ 'ନବଜୀବନ' ପତ୍ରିକା ପାଇଁ ଆତ୍ମଚରିତ ଲେଖିବା ସକାଶେ ମୁଁ ଲାଳାୟିତ । ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ ତାହା ପୃଥକ ଭାବରେ ଲେଖିବା ସକାଶେ ସ୍ୱାମୀଜି ମୋତେ କହିଲେ କିନ୍ତୁ ମୋର ସମୟର ଅଭାବ । ପ୍ରତ୍ୟେକ ସପ୍ତାହରେ ମୁଁ ଗୋଟିଏ ପରିଚ୍ଛେଦ ମାତ୍ର ଲେଖିପାରୁଥିବି । 'ନବଜୀବନ' ପାଇଁ ପ୍ରତି ସପ୍ତାହରେ କିଛି ଲେଖିବା କଥା; ତେବେ ତାହା ଆତ୍ମଚରିତ କାହିଁକି ନହେବ ? ସ୍ୱାମୀଜି ମୋର

ପ୍ରସ୍ତାବକୁ ସମର୍ଥନ କଲେ—ସୁତରାଂ ମୁଁ ବର୍ତ୍ତମାନ ଲେଖିବାକୁ ଅଗ୍ରସର ହେଉଛି ।

କିନ୍ତୁ ଏ ସମ୍ବନ୍ଧରେ ଜଣେ ଧର୍ମଗୁରୁ ବନ୍ଧୁଙ୍କର ସନ୍ଦେହ ହେଲା; ମୋର ଗୀରବ ଦିବସରେ (ସୋମବାର) ସେ ମୋ ନିକଟରେ ତାଙ୍କର ସନ୍ଦେହ ପ୍ରକାଶ କଲେ । ସେ ମୋତେ ପ୍ରଶ୍ନ କଲେ, "କାହିଁକି ଆପଣ ଏହି ପ୍ରୟାସ କରୁ ଅଛନ୍ତି ? ଆତ୍ମଚରିତ ଲେଖିବା ଅଭ୍ୟାସ ପାଶ୍ଚାତ୍ୟ ଲୋକଙ୍କର । ଆମ ପ୍ରାଚ୍ୟଲୋକଙ୍କ ଭିତରୁ କେହି ଲେଖିଥିବା କଥା ମୁଁ ଜାଣିନାହିଁ—ପାଶ୍ଚାତ୍ୟ ସମ୍ପର୍କ ଯେଉଁମାନେ କେହି କେହି ଲେଖି ଅଛନ୍ତି । ପୁଣି ଆପଣ କଣ ଲେଖିବେ ? ମନେ କରନ୍ତୁ ଆପଣ ଆଜି ଯାହାକୁ ଠିକ ବୋଲି ଧରିଅଛନ୍ତି, ହୁଏତ କାଲି ତାକୁ ପରିତ୍ୟାଗ କରିପାରନ୍ତି କିମ୍ବା ଆଜିର କର୍ମ ପନ୍ଥା ଭବିଷ୍ୟତରେ ପରିବର୍ତ୍ତନ କରିପାରନ୍ତି; ତାହାହେଲେ ଯେଉଁମାନେ ଆପଣଙ୍କର କଥା କିମ୍ବା ଲେଖା ଉପରେ ନିର୍ଭର କରି ସେମାନଙ୍କର ଆଚରଣ ଗଢ଼ନ୍ତି, ସେମାନେ ଭ୍ରମରେ ପଡ଼ିବା ସମ୍ଭବ ନୁହେଁକି ? ଏବେ କାହିଁକି କେବେ ହେଲେ ଆତ୍ମଚରିତ ଭଳି କିଛି ନଲେଖିବା ଉଚିତ ବୋଲି ଆପଣ କଣ ମନେ କରୁନାହାନ୍ତି" ?

ତାହାଙ୍କର ଏହିଯୁକ୍ତି ମୋତେ କିଛିଏ ସ୍ପର୍ଶ କଲା । କିନ୍ତୁ ଗୋଟିଏ ପ୍ରକୃତ ଆତ୍ମଚରିତ ଲେଖିବା ସକାଶେ ଚେଷ୍ଟା କରିବା ମୋର ଉଦ୍ଦେଶ୍ୟ ନୁହେ । ମୋର ସମସ୍ତ ସତ୍ୟ-ପରୀକ୍ଷାର ଚରିତ ଲେଖିବା କେବଳ ମୋର ଇଚ୍ଛା, ଏବଂ ମୋର ଜୀବନ ବ୍ୟାପୀ ମୁଁ ଯେହି ପରୀକ୍ଷାରେ ଲିପ୍ତ ହୋଇଥିବା ଯୋଗୁଁ ବାସ୍ତବିକ ମୋର ଲେଖା ଗୋଟିଏ ଆତ୍ମଚରିତର ଆକାର ଧାରଣ କରିବ । କିନ୍ତୁ ପ୍ରତି ପୃଷ୍ଠାରେ ଯଦି କେବଳ ମୋର ପରୀକ୍ଷାର ପରିଚୟ ମିଳିବ, ତାହାହେଲେ ମୋର ଆଉ କିଛି ଭାବନାନାହିଁ । ମୁଁ ବିଶ୍ୱାସ କରୁଛି ଯେ ଏହି ସବୁ ପରୀକ୍ଷାର କ୍ରମିକ ବିବରଣୀ ନିଶ୍ଚୟ ପାଠକ-

ଙ୍କର ଉପକାର କରିବ । ରାଜନୀତି-କ୍ଷେତ୍ରରେ ମୋର ଯେଉଁ ପରୀକ୍ଷା ତାହା କେବଳ ଭାରତରେ ନୁହେଁ, କେତେଦୂର ପର୍ଯ୍ୟନ୍ତ ସମସ୍ତ ଶିକ୍ଷିତ ଜଗତରେ ଏବେ ପ୍ରଚଳିତ । ମୋ ଦୃଷ୍ଟିରେ ସେ ସବୁର ମୂଲ୍ୟ ବେଶୀ ନୁହେ ଏବଂ ସେଥିଲାଗି ମୁଁ ଯେଉଁ 'ମହାତ୍ମା' ପଦ ପାଇ ଅଛି, ତାହାକୁ ମୂଲ୍ୟତ ଆହୁରି ଊଣା । ସେହି ଉପାଧି ମୋତେ ଅନେକ ସମୟରେ କଷ୍ଟ ଦେଇଅଛି; ସେଥିଲାଗି ମୋର ମନ କେବେହେଲେ ଫୀତ ହୋଇଅଛି ବୋଲି ମୋର ସ୍ମରଣ ହେଉନାହିଁ । କିନ୍ତୁ ଧର୍ମ-କ୍ଷେତ୍ରରେ ମୋର ଯେଉଁ ପରୀକ୍ଷା, ତାହା ମୋତେ କେବଳ ଜଣା; ସୁତରାଂ ସେ ସମ୍ପର୍କରେ ଏଠାରେ କିଞ୍ଚିତ୍ କହିବି । ରାଜନୀତି କ୍ଷେତ୍ରରେ କାମ କରିବାପାଇଁ ମୋର ଯାହା କିଛି ଶକ୍ତି ଅଛି, ତାହା ମୋର ଧର୍ମକ୍ଷେତ୍ରରେ ପରୀକ୍ଷା ଯୋଗୁଁ । ଯଦି ପରୀକ୍ଷାଗୁଡ଼ିକ ପ୍ରକୃତରେ ଧର୍ମଗତ, ତେବେ, ଆତ୍ମ ପ୍ରଶଂସା ପାଇଁ ସେଠାରେ ସ୍ଥାନନାହିଁ । ତାହା ସବୁ କେବଳ ମୋର ନମ୍ରତା ବଢ଼ାଇବା କଥା । ମୁଁ ଅତୀତ ପ୍ରତି ଦୃଷ୍ଟି ପକାଇ ଯେତିକି ଭାବନା କରେ, ମୋର ସୀମା ଉପରେ ଆବଦ୍ଧ ସେତିକି ଉପଲବ୍ଧି କରିଥାଏ ।

ଆତ୍ମଜ୍ଞାନ ଲାଭ କରିବା—ଭଗବାନଙ୍କୁ ମୁହାଁମୁହିଁ ଦେଖିବା ତଥା ମୋକ୍ଷ ଲାଭ କରିବା ପାଇଁ ମୁଁ ଅଭିଳାଷ କରିଅଛି— ତିରିଶି ବର୍ଷ ଧରି ଅନବରତ ଚେଷ୍ଟା କରୁଅଛି । ଏହି ଅଭିଳାଷ ପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ମୁଁ ଜୀବନ ଧରି ରହିଅଛି । ମୁଁ ଯାହା ଲେଖୁଛି କିମ୍ବା କହୁଛି ଏବଂ ରାଜନୀତି କ୍ଷେତ୍ରରେ ମୁଁ ଯେଉଁ ଦୁଃସାହସର କାର୍ଯ୍ୟ କରୁଅଛି ତାହା ସବୁ ସେହି ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ । କିନ୍ତୁ ଜଣକ ପକ୍ଷେ ଯାହା ସମ୍ଭବ ସମସ୍ତଙ୍କ ପକ୍ଷେ ମଧ ତାହା ସମ୍ଭବ ବୋଲି ମୋର ବିଶ୍ୱାସ । ସୁତରାଂ ମୋର ପରୀକ୍ଷା ସବୁ ମୁଁ ଗୁପ୍ତ ଭାବରେ ନକରି ପ୍ରକାଶ୍ୟ ଭାବରେ କରି-ଅଛି; ଅଥଚ ତଦ୍ୱାରା ସେଗୁଡ଼ିକର ଆଧ୍ୟାତ୍ମିକ ମୂଲ୍ୟ କମି ଯାଇଅଛି ବୋଲି

।

ମୁଁ ଭାବନା କରୁନାହିଁ । କେତେ ବିଷୟ ଅଛି, ତାହା କେବଳ ନିଜକୁ ଓ ଭଗବାନଙ୍କୁ ଗୋଚର । ସେସବୁ ସ୍ପଷ୍ଟଭାବେ ପ୍ରକାଶ କରିହୁଏ ନାହିଁ । ମୁଁ ଯେଉଁ ପରୀକ୍ଷା ସବୁ କହିବାକୁ ଯାଉଛି ତାହା ସେହିଧରଣର ନୁହେଁ । କିନ୍ତୁ ତାହା ସବୁ ଆଧ୍ୟାତ୍ମିକ ତଥା ନୈତିକ ପରୀକ୍ଷା — କାରଣ ଧର୍ମର ସାର ହେଉଛି ନୀତି ।

ଧର୍ମ ସମ୍ବନ୍ଧୀୟ ଯେଉଁ ସବୁ ବିଷୟ ପିଲାଠାରୁ ଆରମ୍ଭ କରି ବୟସ୍ପ୍ରାପ୍ତ ବ୍ୟକ୍ତି ପର୍ଯ୍ୟନ୍ତ ସମସ୍ତେ ବୁଝିପାରିବେ ତାହା ଏହି ଚରିତରେ ଲେଖାଯିବ । ମୁଁ ଯଦି ସେସବୁ ନିରପେକ୍ଷ ଓ ନମ୍ର ଭାବରେ ଲେଖିପାରିବି ତାହାହେଲେ ଅନ୍ୟାନ୍ୟ ପରୀକ୍ଷକମାନେ ତାହାଙ୍କର ପରୀକ୍ଷା ସବୁ ସଫଳ କରିବାପାଇଁ ସେଥିରୁ ସାମଗ୍ରୀ ପାଇପାରିବେ । ଏହି ପରୀକ୍ଷାଗୁଡ଼ିକ ଦୋଷ ଶୂନ୍ୟ ବୋଲି ମୁଁ କହିନପାରେ । ଜଣେ ବୈଜ୍ଞାନିକ ନିଜର ପରୀକ୍ଷା ସବୁ ଖୁବ୍ ସଠିକ ଓ ସୂକ୍ଷ୍ମଭାବେ ଏବଂ ଉପଯୁକ୍ତ ଭବିଷ୍ୟତ ଚିନ୍ତା ସହ-କାରେ କଲେ ମଧ୍ୟ ତାହାଙ୍କର ମୀମାଂସା ଶେଷ ମୀମାଂସା ବୋଲି ସେ କେବେ କହନ୍ତି ନାହିଁ, କିନ୍ତୁ ତାହା ଭ୍ରମାତ୍ମକ ହୋଇପାରେ ବୋଲି ସେ ମନେ କରିଥାନ୍ତି । ମୋର ପରୀକ୍ଷା ସମ୍ବନ୍ଧେ ମଧ୍ୟ ମୁଁ ସେହି ଧାରଣା ରଖିଛି । ମୁଁ ଗଭୀର ଆତ୍ମ ପରୀକ୍ଷା କରିଛି—ନିଜକୁ ନିଖାରି ଦେଖିଛି ଏବଂ ପ୍ରତ୍ୟେକ ମାନସିକ ଅବସ୍ଥାକୁ ପରୀକ୍ଷା ଓ ବିଶ୍ଳେଷଣ କରିଅଛି । ତଥାପି ମୋର ସିଦ୍ଧାନ୍ତ ସବୁ ଶେଷ କିମ୍ବା ଦୋଷ ରହିତ ବୋଲି କହିବା ବହୁଦୂରର କଥା । କିନ୍ତୁ ମୁଁ ବାସ୍ତବିକ ଗୋଟିଏ ଦାବୀ କରି-ପାରେ ଏବଂ ତାହା ଏହି:—ମୋତେ ମୋର ସିଦ୍ଧାନ୍ତ ସବୁ ସମ୍ପୂର୍ଣ୍ଣ ଦୋଷ ରହିତ ପରି ଦିଶୁଛି ଏବଂ ବର୍ତ୍ତମାନ ତାହା ଶେଷ ସିଦ୍ଧାନ୍ତ ବୋଲି ବୋଧ ହେଉଅଛି । ଯଦି ସେପରି ହୋଇନଥାନ୍ତା, ତାହାହେଲେ ମୁଁ ତଦନୁ-ସାରେ କାର୍ଯ୍ୟ କରନ୍ତି ନାହିଁ । କିନ୍ତୁ ମୁଁ କାର୍ଯ୍ୟକ୍ଷେତ୍ରରେ ଗ୍ରହଣ ଓ ବର୍ଜନ ନୀତି ଅବଲମ୍ବନ କରି ସେ ଅନୁସାରେ କାର୍ଯ୍ୟ କରିଅଛି । ମୋ’

କାର୍ଯ୍ୟ କରି ଯେତେଦିନ ପର୍ଯ୍ୟନ୍ତ ମୋର ହୃଦୟ ଓ ମନକୁ ତୃପ୍ତ କରୁଥିବ ସେତେଦିନ ଯାଏ ମୁଁ ମୋର ମୌଳିକ ସିଦ୍ଧାନ୍ତକୁ ଧରିଥିବି ।

ମୁଁ ଯଦି କେବଳ ଆଧ୍ୟାତ୍ମିକ ନୀତି ବ୍ୟାଖ୍ୟା କରୁଥାନ୍ତି ତାହାହେଲେ ଗୋଟିଏ ଆତ୍ମଚରିତ ଲେଖିବା ଚେଷ୍ଟା କଦାପି କରନ୍ତି ନାହିଁ । କିନ୍ତୁ ସେହି ନୀତିଗୁଡ଼ିକ ଉପରେ ନାନା କାର୍ଯ୍ୟରେ ବ୍ୟବହାର ଯୋଗ୍ୟ, ତାହା ଦର୍ଶାଇଦେବା ମୋର ଉଦ୍ଦେଶ୍ୟ; ସୁତରାଂ ମୁଁ ଯେଉଁ ପରିଚ୍ଛେଦଗୁଡ଼ିକ ଲେଖିବାକୁ ଯାଉଛି ତାର ଶିରୋନାମା "ମୋର ସତ୍ୟ-ପରୀକ୍ଷା ଚରିତ" ବୋଲି ଦେଇଅଛି । ଅହିଂସା, ସଂଯମ ଓ ଅନ୍ୟାନ୍ୟ ଯେଉଁ ସବୁ ଆଚରଣ-ନୀତି ସତ୍ୟଠାରୁ ପୃଥକ ବୋଲି ଧରାଯାଇ ଅଛି ତାହାର ପରୀକ୍ଷା ଏଥିରେ ସନ୍ନିବିଷ୍ଟ ହେବ, ସତ୍ୟ ଅନେକଗୁଡ଼ିଏ ଆନୁସଙ୍ଗିକ ନୀତିର ସମଷ୍ଟି କିନ୍ତୁ ମୋ ପକ୍ଷେ ସତ୍ୟ ସର୍ବଶ୍ରେଷ୍ଠ ନୀତି । ଏହି ସତ୍ୟ କେବଳ ବାକ୍ୟରେ ନୁହେଁ ମନରେ ଓ ଭାବନାରେ ମଧ୍ୟ ପ୍ରକାଶ ପାଇବା କଥା, ଏବଂ ତାହା କେବଳ ଆମର ଧାରଣାତ୍ମକ ସତ୍ୟ ନୁହେଁ, ତାହା ନିରବଚ୍ଛିନ୍ନ ସତ୍ୟ, ଅନନ୍ତସତ୍ୟ ତଥା ସ୍ୱୟଂ ଭଗବାନ । ଭଗବାନଙ୍କ ଅବତାର ଅସଂଖ୍ୟ; ସୁତରାଂ ତାହାଙ୍କର ସଂଜ୍ଞା ମଧ୍ୟ ଅସଂଖ୍ୟ । ତାହା ମୋତେ ଆଶ୍ଚର୍ଯ୍ୟରେ ଓ ଭୟରେ ଅଭିଭୂତ କରେ ଓ କିଛିକ୍ଷଣ ଯାଏ ମୁଁ ସ୍ତମ୍ଭିତ ହୁଏ । ତଥାପି ମୁଁ ଭଗବାନଙ୍କୁ ସତ୍ୟରୂପେ କେବଳ ଉପାସନା କରୁଅଛି । ମୁଁ ତାହାଙ୍କୁ ଆହୁରି ଦେଖିନାହିଁ, କିନ୍ତୁ ଖୋଜି ବୁଲୁଅଛି । ଏହି ଅନୁସନ୍ଧାନ ବେଳେ ମୁଁ ମୋର ପ୍ରିୟତମ ବସ୍ତୁ ମଧ୍ୟ ତ୍ୟାଗ କରିବା ପାଇଁ ପ୍ରସ୍ତୁତ । ଯଦି ମୋର ପ୍ରାଣ ମଧ୍ୟ ଦେବାକୁ ପଡ଼େ, ମୋର ବିଶ୍ୱାସ ତାହା ଉତ୍ସର୍ଗ କରିବା ପାଇଁ ମୁଁ କୁଣ୍ଠିତ ହେବିନାହିଁ । କିନ୍ତୁ ଯେତେଦିନ ଯାଏ ମୁଁ ସେହି ନିରବଚ୍ଛିନ୍ନ ସତ୍ୟ ପାଇନାହିଁ ସେତେଦିନ ଯାଏ ମୁଁ ମୋର ଧାରଣାତ୍ମକ ସତ୍ୟକୁ ଧରିଥିବି । ସେହି ସତ୍ୟ ମୋର ବର୍ତ୍ତମାନ ଆଲୋକ ଓ ଆଶ୍ରୟ । ଏହି ସତ୍ୟ-ଅନ୍ୱେଷଣ-ପଥ ସଙ୍କଟାପନ୍ନ, ସଙ୍କୀର୍ଣ୍ଣ ଓ

କ୍ଷୁରଧାର ପଥ ପ୍ରମାଦ ପୂର୍ଣ୍ଣ ହେଲେହେଁ ତାହା ମୋପକ୍ଷେ ସହଜ ଗମ୍ୟ ଓ ମସୃଣ ହୋଇଅଛି । ଏହି ପଥର ପଥିକ ହୋଇଥିବା ଯୋଗୁଁ ମୋର ବଡ଼ ବଡ଼ ଦୋଷ ମଧ୍ୟ ମୋତେ ନଗଣ୍ୟ ବୋଧ ହୋଇଅଛି; କାରଣ ତାହା ମୋତେ ଦୁଃଖଭୋଗରୁ ରକ୍ଷା କରିଅଛି । ମୋର ଆଲୋକ ସାହାଯ୍ୟରେ ମୁଁ ଅଗ୍ରଗତି କରୁଅଛି । ଯାଉଁ ଯାଉଁ ଅନେକ ସମୟରେ ମୁଁ ସେହି ନିରବଚ୍ଛିନ୍ନ ସତ୍ୟ ତଥା ଭଗବାନଙ୍କର କ୍ଷୀଣ ଆଭାସ ପାଇଅଛି । ପ୍ରତିଦିନ ମୋଠାରେ ଏହି ଧାରଣା ବଢୁଅଛି ଯେ ଭଗବାନ କେବଳ ସତ୍ୟ ଆଉ ସବୁ ଅସତ୍ୟ । ମୋର କିପରି ଏହି ଧାରଣା ଜନ୍ମିଅଛି ତାହା ଯଦି କେହି ଜାଣିବା ପାଇଁ ଇଚ୍ଛା କରନ୍ତି ତାହାହେଲେ ସେମାନେ ଚେଷ୍ଟା କରନ୍ତୁ— ମୋପରି ପରୀକ୍ଷା କରନ୍ତୁ ଓ ଯଦି ପାରିବେ ମୋ ଧାରଣାରେ ଭାଗୀ ହୁଅନ୍ତୁ । ମୋର ଆଉ ଗୋଟିଏ ଧାରଣା ଜନ୍ମି ଆସୁଅଛି ଯେ ଯାହା ମୋପକ୍ଷେ ସମ୍ଭବ ତାହା ଗୋଟିଏ ଶିଶୁପକ୍ଷେ ମଧ୍ୟ ସମ୍ଭବ ହୋଇପାରେ ଏବଂ ଏହା କହିବା ପାଇଁ ମୋର ଉପଯୁକ୍ତ କାରଣ ଅଛି । ସତ୍ୟ ଅଥଚ ଭଗବାନଙ୍କୁ ଅନୁସନ୍ଧାନ କରିବା ଯେତିକି ସହଜ ସେତିକି କଠିନ । ଜଣେ ଉଦ୍ଧତ ବ୍ୟକ୍ତି ପକ୍ଷେ ତାହା ଅସମ୍ଭବ ବିବେଚିତ ହୋଇପାରେ କିନ୍ତୁ ଗୋଟିଏ ସରଳ ଶିଶୁ ପକ୍ଷେ ଖୁବ ସମ୍ଭବ ହୋଇପାରେ । ଜଣେ ସତ୍ୟ ଅନ୍ୱେଷୀ ନିଜକୁ ଧୂଳିଠାରୁ ଅଧିକ ତୁଚ୍ଛ ମନେ କରିବା ଉଚିତ । ଲୋକେ ନିଜ ପାଦରେ ଧୂଳିକୁ ଦଳିଥାନ୍ତି, କିନ୍ତୁ ସତ୍ୟ-ଅନ୍ୱେଷୀ ନିଜକୁ ଏହିପରି ନମ୍ର କରିବାକୁ ହେବ ଯେ ସେ ଧୂଳିର ମଧ୍ୟ ପ୍ରଭୁତ୍ୱ ସ୍ୱୀକାର କରିବ । ସେତେବେଳେ କେବଳ ସେ ସତ୍ୟର କ୍ଷୀଣ ଆଭାସ ପାଇବ । ବଶିଷ୍ଠ ଓ ବିଶ୍ୱାମିତ୍ରଙ୍କ କଥୋପକଥନରୁ ଏକଥା ସ୍ପଷ୍ଟ ଜଣା ଯାଏ । ଖ୍ରୀଷ୍ଟ ଓ ମୁସଲମାନ ଧର୍ମରୁ ମଧ୍ୟ ଏହାର ଯଥେଷ୍ଟ ପରିଚୟ ମିଳେ ।

ମୁଁ ଯାହା ଏଥିରେ ଲେଖୁଛି ସେଥିରୁ ଯଦି ପାଠକଙ୍କୁ ମୋର ଗର୍ବର ସୂଚନା ମିଳେ, ତେବେ ଧରି ନେବାକୁ ହେବ ଯେ ମୋର ଅନ୍ୱେ-

ଷଣରେ କୌଣସି ଭ୍ରମ ଘଟୁଅଛୁ ଏବଂ ମୁଁ ସତ୍ୟର ଯେଉଁ ଷୀଣ ଅଭ୍ରାସ ପାଇ ଅଛୁ, ତାହା ମସୀଚକା ଛଡ଼ା ଅନ୍ୟ କଛୁ ନୁହେଁ । ମୋପର ଶତ ଲୋକ ମାଟରେ ମିଶନ୍ତୁ; କନ୍ତୁ ସତ୍ୟର ପ୍ରାଧାନ୍ୟ ବଜାୟ ରହୁ । ମୋଭଳି ଭ୍ରାନ୍ତ ଓ ନଶ୍ୱର ବ୍ୟକ୍ତିଙ୍କୁ ପରୀକ୍ଷା କରିବାକୁ ଯାଇ ସତ୍ୟର ପ୍ରାଧାନ୍ୟ ଯେପରି ତିଳଶମାତ୍ର କମାଇଁ ଦିଆ ନଯାଏ ।

ମୋର ଆଶା ଓ ପ୍ରାର୍ଥନା ଯେ ଏହି ପରିଚ୍ଛେଦ ଗୁଡ଼କରେ ଉଲ୍ଲିଖିତ ଉପଦେଶ ସବୁ ଦୋଷ ଶୂନ୍ୟ ତଥା ଅନୁକରଣୀୟ ବୋଲି କେହି ଯେପରି ବିବେଚନା ନକରନ୍ତୁ । ଏଠାରେ ଯେଉଁ ପରୀକ୍ଷା ସବୁ ବିବୃତ ହୋଇ ଅଛୁ ତାହା କେବଳ ଦୃଷ୍ଟାନ୍ତ ସ୍ୱରୂପ ଧରି ନେବା ଉଚିତ ଏବଂ ସେ ଗୁଡ଼କର ଆଦର୍ଶରେ ଯେ କୌଣସି ବ୍ୟକ୍ତି ନିଜର ଅନୁରାଗ ଓ ଶକ୍ତି ଅନୁସାରେ ତାଙ୍କର ପରୀକ୍ଷା କରି ପାରନ୍ତି । ଏହି ନିର୍ଦ୍ଧାରିତ ସୀମା ପର୍ଯ୍ୟନ୍ତ ଦୃଷ୍ଟାନ୍ତ ଗୁଡ଼କ ବାସ୍ତବିକ ସହାୟତା କରିବ ବୋଲି ମୋର ବିଶ୍ୱାସ, କାରଣ ଯେଉଁ ସବୁ ବିଭତ୍ସ ବିଷୟ ପ୍ରକାଶ କରିବା କଥା, ତାହା ଛପାଇ ରଖିବା ପାଇଁ କମ୍ବା ତାର ଗୁରୁତା କମାଇଁ ଦେବା ପାଇଁ ମୁଁ ଯାଉ ନାହିଁ । ପାଠକମାନଙ୍କୁ ମୁଁ ମୋର ସମସ୍ତ ଦୋଷ ଓ ଭ୍ରାନ୍ତି ଜଣାଇ ପାରିବି ବୋଲି ମୋର ଆଶା । ସତ୍ୟାଗ୍ରହ—ବିଜ୍ଞାନ ଅନୁସାରେ ପରୀକ୍ଷା ଗୁଡ଼କର ବିବରଣୀ ଦେବା ମୋର ଉଦ୍ଦେଶ୍ୟ; କନ୍ତୁ ମୁଁ କପରି ଭଲ ତାହା କହିବା ପାଇଁ ନୁହେ । ମୁଁ ନିଜେ ନିଜକୁ ପରୀକ୍ଷା କଲାବେଳେ ସତ୍ୟ ପରି କଠିନ ହେବି ଏବଂ ଅନ୍ୟମାନେ ସେହିପରି ହୁଅନ୍ତୁ ବୋଲି ମୋର ଇଚ୍ଛା । ସେହି ମାପ କାଠିରେ ମୁଁ ନିଜକୁ ମାପି ସୁରଦାସଙ୍କ ସହିତ ଗାଇବି:—

ପାସୋରିଲି ତାକୁ ଗଢ଼ିଛୁ ଯେ ମୋତେ
କେତେ ମୁଁ ବିଶ୍ୱାସ ହରା,

ମୋପରି କୁତ୍ସିତ ଦୁରାତ୍ମର ମଧ୍ଯ

ତାହାଙ୍କ ଠାରୁ ଦୂରରେ ଅଛି ବୋଲି ନିରବଚ୍ଛିନ୍ନ ବେଦନା ଅନୁଭବ କରୁ ଅଛି । ମୁଁ ସମ୍ପୂର୍ଣ୍ଣଭାବେ ଜାଣି ଅଛି ଯେ ସେ ମୋର ଜୀବନର ପ୍ରତି ନିଶ୍ୱାସ ପ୍ରଶ୍ୱାସକୁ ପରିଚାଳନ କରୁ ଅଛନ୍ତି ଏବଂ ମୁଁ 'ତାହାଙ୍କ'ର ସନ୍ତାନ ମାତ୍ର । ମୋର ଅନ୍ତରକୁ ଦୁଷ୍ଟ ପ୍ରବୃତ୍ତି ଯୋଗୁଁ ମୁଁ 'ତାଙ୍କ' ଠାରୁ ଏତେ ଦୂରରେ ଅଛି; କିନ୍ତୁ ମୁଁ ସେଥିରୁ ରକ୍ଷା ପାଇ ନପାରେ ।

ଏତିକରେ ଶେଷ କରି ପ୍ରକୃତ ଚରିତ୍ରଟା ପରବର୍ତ୍ତୀ ପରିଚ୍ଛେଦରେ ଆରମ୍ଭ କରିବି ।

ସାବରମତି ଆଶ୍ରମ,

୨୬-୧୧-୧୯୨୫

ଏମ୍: କେ: ଗାନ୍ଧି ।



# ମହାତ୍ମା ଗାନ୍ଧୀଙ୍କ ଆତ୍ମଚରିତ ।

## ପ୍ରଥମ ପରିଚ୍ଛେଦ ।

### ( ବଂଶ ପରିଚୟ ଓ ଜନ୍ମ )

ଗାନ୍ଧୀ ବଂଶ ଜାତିରେ 'ବଣିଆଁ' ଓ ପ୍ରଥମେ ବୋଧହୁଏ ବଣିକ ଥିଲେ, କିନ୍ତୁ ମୋର ପିତାମହଙ୍କଠାରୁ ଆରମ୍ଭ କରି ତିନି ପୁରୁଷ ଯାଏ ସେମାନେ କାଥିଆବାଡ଼ର ରାଜଧାନୀମାନଙ୍କରେ ପ୍ରଧାନ ମନ୍ତ୍ରୀଥିଲେ । ମୋର ପିତାମହ ଉତ୍ତମଚାନ୍ଦ ଗାନ୍ଧୀ ଓରଫ 'ଓଠା' ଗାନ୍ଧୀ ଜଣେ ନୀତିଜ୍ଞ ବ୍ୟକ୍ତି । ପୋରବନ୍ଦରର ସେ ଦିବାନ ଥିଲେ, କିନ୍ତୁ ସରକାରୀ ଚକ୍ରାନ୍ତ ହେତୁ ଉକ୍ତ ସ୍ଥାନ ପରିତ୍ୟାଗ କରି ସେ ଯୁନାଗଡ଼ରେ ଆଶ୍ରୟ ନେବା ପାଇଁ ବାଧ୍ୟ ହୋଇଥିଲେ । ଥରେ ସେ ସେଠାର ନବାବଙ୍କୁ ବାମ ହାତରେ ପ୍ରଣାମ କରିବା ଦେଖି କେହି ଜଣେ ତାହାଙ୍କର ଏହି ସ୍ପଷ୍ଟ ଅଭଦ୍ରାମିର କାରଣ ପଚାରିଥିଲେ । ପ୍ରତ୍ୟୁତ୍ତରରେ ସେ ତାଙ୍କୁ କହିଲେ ଯେ "ମୋର ଦକ୍ଷିଣ ହସ୍ତଟି ପୋରବନ୍ଦର ରାଜାଙ୍କ ପ୍ରଭୁତ୍ୱ ସ୍ୱୀକାର କରିସାରିଛି" ।

ପ୍ରଥମ ପତ୍ନୀଙ୍କ ବିୟୋଗ ହେତୁ ଓଠା ଗାନ୍ଧୀ ଦ୍ୱିତୀୟ ବିବାହ କରିଥିଲେ । ତାହାଙ୍କର ଛଅ ଗୋଟି ପୁଅ—ଜ୍ୟେଷ୍ଠ ପ୍ରଥମ ଓ ଦୁଇଟି ଦ୍ୱିତୀୟ ସ୍ତ୍ରୀଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିଲେ । ସେମାନେ ସମସ୍ତେ ବୈମାତ୍ରକ ଭାଇ ବୋଲି ମୋ ବାଲ୍ୟାବସ୍ଥାରେ ମୁଁ କେବେହେଲେ ଜାଣି ନଥିଲି କିମ୍ବା ଅନୁଭବ କରିନଥିଲି । ଏହି ଛଅ ଭାଇଙ୍କ ମଧ୍ୟରୁ 'କରମଚାନ୍ଦ ଗାନ୍ଧୀ' ଓରଫ 'କାବା' ଗାନ୍ଧୀ ପଞ୍ଚମ ଓ 'ତୁଳସୀ ଦାସ' ଗାନ୍ଧୀ ଷଷ୍ଠ ଅଟନ୍ତି । ଏ ଦୁହେଁ ଜଣକ ପରେ ଜଣେ ପୋରବନ୍ଦର ରାଜ୍ୟର ପ୍ରଧାନ ମନ୍ତ୍ରୀ ଥିଲେ । 'କାବା' ଗାନ୍ଧୀ ମୋର ପିତା । ରାଜସ୍ଥାନ କଟେରର ସେ ଜଣେ ସଦସ୍ୟ । ଉକ୍ତ କଟେରର ଅଜିକାଲି ନାହିଁ କିନ୍ତୁ ସେ ସମୟରେ ରାଜା ଓ ତାଙ୍କ ଜାତିଲୋକଙ୍କ ମଧ୍ୟର କଳହ ସବୁ ନିଷ୍ପତ୍ତି କରିବା ଲାଗି ତାହା ବଡ଼

ଉପାଦେୟ ଓ ସମତାସଙ୍ଗତ ହୋଇଥିଲା । ସେ କିଛି କାଳ ପାଇଁ ରାଜକୋଟ ଓ ବଙ୍କାନେର ରାଜଧାନୀମାନଙ୍କରେ ପ୍ରଧାନ ମନ୍ତ୍ରୀ ଥିଲେ ଓ ଜୀବନର ଅନ୍ତିମ ସମୟ ପର୍ଯ୍ୟନ୍ତ ରାଜକୋଟରୁ ସେବା-ବୃତ୍ତି (Pension) ପାଉଥିଲେ ।

କାବା ଗାନ୍ଧୀ ଥରକ ପରେ ଥରେ—ଏହିପରି ଚାରି ଥର ବିବାହ କରିଥିଲେ । ପ୍ରଥମ ଦୁଇ ଭାର୍ଯ୍ୟାଙ୍କ ଗର୍ଭରୁ କେବଳ ଦୁଇଟି ଝିଅ । 'ପୁତଳିବାଈ' ନାମ୍ନୀ ଶେଷ ଭାର୍ଯ୍ୟାଙ୍କର ସନ୍ତାନ ଚାରିଜଣ—ଗୋଟିଏ ଝିଅ ଓ ତିନୋଟି ପୁଅ—ମୁଁ ସେମାନଙ୍କ ମଧ୍ୟରେ ସର୍ବ କନିଷ୍ଠ ।

ମୋର ପିତା ସତ୍ୟପରାୟଣ, ସାହସୀ, ଉଦାର ଓ ସ୍ୱଜାତି ପ୍ରେମିକ, କିନ୍ତୁ ସେ ସହଜରେ ଚିଡିଯାଉ ଥିଲେ । ନ୍ୟୂନାଧିକ ପରିମାଣରେ ସେ ଜଣେ କାମୁକ ବୋଲି ମଧ୍ୟ କୁହାଯାଇ ପାରେ, ଯେହେତୁ ସେ ଚାଳିଶି ବର୍ଷ ବୟସରେ ଚତୁର୍ଥ ଦାର ଗ୍ରହଣ କରିଥିଲେ । କିନ୍ତୁ ସେ ନ୍ୟାୟଶୀଳ ଏବଂ ଘରେ ଓ ବାହାରେ ସମଦର୍ଶୀ ହୋଇ ପ୍ରଶଂସା ପାଇଥାନ୍ତି । ସେ ଜଣେ ବିଶ୍ୱସ୍ତ ରାଜଭକ୍ତ—ଏହା ସମସ୍ତେ ଭଲରୂପେ ଜାଣିଥିଲେ । ଥରେ ତାଙ୍କ ରାଜା, ରାଜକୋଟର ଠାକୁର ସାହେବଙ୍କ ସମ୍ବନ୍ଧେ ଜଣେ ସହକାରୀ ପୋଲିଟିକେଲ ଏଜେଣ୍ଟ କିଛି ଅପମାନ ସୂଚକ କଥା କହିବା ଶୁଣି ସେ ସାହେବଙ୍କ ବିରୁଦ୍ଧରେ ଛିଡା ହୋଇଥିଲେ । ଏଜେଣ୍ଟ ସାହେବ କ୍ରୁଦ୍ଧ ହୋଇଗଲେ ଓ କ୍ଷମା ଭିକ୍ଷା କରିବା ସକାଶେ 'କାବା' ଗାନ୍ଧୀଙ୍କୁ କହିଲେ । ସେ କିନ୍ତୁ ଦୋଷ ସ୍ୱୀକାର କରିବାପାଇଁ ନାରାଜ ହେବାରୁ କେତେ ଘଣ୍ଟା ସାଏ ତାଙ୍କୁ ଅଟକାଇ ରଖା ଯାଇଥିଲା । କିନ୍ତୁ ଏଜେଣ୍ଟ ସାହେବ ଦେଖିଲେ ଯେ କାବା ଗାନ୍ଧୀ ଅଟଳ ଓ ଅପରିବର୍ତ୍ତନୀୟ, ଯେହେତୁ ତାଙ୍କୁ ମୁକ୍ତ କରିଦେବା ପାଇଁ ସେ ଆଦେଶ ଦେଇଥିଲେ ।

ଧନ ସଞ୍ଚୟ କରିବା ସକାଶେ ମୋ ପିତାଙ୍କର ଆଦୌ ଇଚ୍ଛା ଆକାଂକ୍ଷା ନଥିଲା । ସୁତରାଂ ଆମ୍ଭମାନଙ୍କ ପାଇଁ ସେ ଅତି ଅଳ୍ପ ସମ୍ପତ୍ତି ମାତ୍ର

ରଖିଥିଲେ । ଶିକ୍ଷା କ୍ଷେତ୍ରରେ ବେଶି ପ୍ରବେଶ ନଥିଲେହେଁ ତାଙ୍କର ଅନୁଭୂତି ବେଶି । ଅଧିକରେ ସେ ନମ୍ନ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିବେ । ଇତିହାସ କିମ୍ବା ଭୂଗୋଳ ଶିକ୍ଷାରେ ସେ ଅନାବିଷ୍ଟ । କିନ୍ତୁ ବ୍ୟବହାରିକ ବିଷୟରେ ତାଙ୍କର ଯେଉଁ ପରିପକ୍ୱ ଅନୁଭୂତି ଥିଲା ତାହା ନାନା ଜଟିଳ ପ୍ରଶ୍ନର ସମାଧାନ ଓ ଶତ ଶତ ପ୍ରଜା ଶାସନରେ ସହାୟତା କରୁଥିଲା । ଧର୍ମ ଶିକ୍ଷା ସମ୍ବନ୍ଧେ ସେ ସାମାନ୍ୟ କିଛି ଜାଣିଥିଲେ; କିନ୍ତୁ ସର୍ବଦା ଦେବାଳୟକୁ ଯାଇ କିମ୍ବା ଧର୍ମ ବିଷୟକ ବକ୍ତୃତା ଶୁଣି ପ୍ରତ୍ୟେକ ହିନ୍ଦୁ ଯେଉଁ ଧର୍ମଜ୍ଞାନ ଲାଭ କରିଥାଏ ତାହା ସେ ପାଇଥିଲେ । ପରିବାରସଂପୃକ୍ତ ଜଣେ ବ୍ରାହ୍ମଣ ପଣ୍ଡିତଙ୍କ ପ୍ରେରଣାରେ ସେ ବୃଦ୍ଧାବସ୍ଥାରେ ଗୀତାଧ୍ୟୟନ ଆରମ୍ଭ କରିଥିଲେ ଓ ଉପାସନା ବେଳେ ସେଥିରୁ କେତୋଟି ଶ୍ଳୋକ ନିତ୍ୟ ପାରାୟଣ କରୁଥିଲେ ।

ମୋର ମାଆଙ୍କ ସମ୍ବନ୍ଧେ ଯଦି ମୁଁ କିଛି ସ୍ମରଣ ରଖିଥାଏ, ତାହା ତାଙ୍କର ସାଧୁତା ମାତ୍ର । ସେ ବଡ଼ ଧର୍ମପରାୟଣା । ଦୈନିକ ଉପାସନା ପୂର୍ବରୁ ନିଜ ଖାଦ୍ୟ ପେୟ ସମ୍ବନ୍ଧେ ସେ ଆଦୌ ମନ ଦେଉ ନଥାନ୍ତି । 'ହାବେଲି' ନାମକ ଏକ ବିଷ୍ଣୁ ମନ୍ଦିରକୁ ଯିବା ତାଙ୍କ ଦୈନିକ କାର୍ଯ୍ୟ ମଧ୍ୟରୁ ଗୋଟିଏ । ମୋର ଯେତେଦୂର ମନେଅଛି ସେ କେବେହେଲେ 'ଚାତୁର୍ମାସ୍ୟ' ବ୍ରତ ଛାଡ଼ି ନଥିଲେ । ସେ ନିତାନ୍ତ କଠିନ ବ୍ରତମାନ କରିଥାନ୍ତି ସତ କିନ୍ତୁ ସେ ସବୁରେ କିଛି ସ୍ଖଳନ ନଥାଏ । ବେମାର ହେଲେ ମଧ୍ୟ ସେ ସେଥିରୁ ବିରତା ହେଉ ନଥିଲେ । ମୋର ମନେ ଅଛି ଥରେ 'ଚାନ୍ଦ୍ରାୟଣ' ବ୍ରତ କଲାବେଳେ ସେ ପୀଡ଼ିତା ଥିଲେ, ମଧ୍ୟ ତାହା ବ୍ରତ ପାଳନରେ ଅନ୍ତରାୟ ହୋଇ ନଥିଲା । 'ଚାତୁର୍ମାସ୍ୟ' ଉପବାସ ବେଳେ ହବିଷ୍ୟାନ୍ନରେ ରହିବା ତାଙ୍କ ଅଭ୍ୟାସର କଥା । ସେଥିରେ ମଧ୍ୟ ସନ୍ତୁଷ୍ଟା ନହୋଇ ସେ ଦିନେ ଛାଡ଼ା ଦିନେ ନିର୍ଜଳ ଉପବାସ କରୁଥାନ୍ତି । କ୍ରମାଗତ ଦୁଇ ତିନୋଟି ଉପବାସ କରିବା ତାଙ୍କ ପକ୍ଷେ କିଛି ନୁହେ । କୌଣସି ଏକ 'ଚାତୁର୍ମାସ୍ୟ' ବେଳେ

ସେ ପଣ କରିଥିଲେ ଯେ ସୂର୍ଯ୍ୟ ଦର୍ଶନ ବିନା ଆହାର କରିବେ ନାହିଁ । ସୂର୍ଯ୍ୟଙ୍କ ଦର୍ଶନ ପାଇଲେ ମାଆଙ୍କୁ ଯାଇ ଖବର ଦେବୁଁ ବୋଲି ଆମ୍ଭେ ପିଲାମାନେ ସେତେବେଳେ ଅପଲକ ନେତ୍ରରେ ଆକାଶକୁ ଚାହିଁ ରହିଥାଉଁ । ସମସ୍ତେ ଜାଣନ୍ତି ବର୍ଷା ଋତୁରେ ସୂର୍ଯ୍ୟ ଅନେକ ସମୟରେ ସ୍ପଷ୍ଟ-ଭାବରେ ଦେଖା ଦେଇ ନଥାନ୍ତି । ମୋର ମନେ ଅଛି ଅନେକ ଦିନ ଆମ୍ଭେମାନେ ଯେତେବେଳେ ସୂର୍ଯ୍ୟଙ୍କ ଆକସ୍ମିକ ଦେଖା ଖବର ହଠାତ୍ ଯାଇ ତାଙ୍କୁ ଦେଇଥାଉଁ ସେ ତରତର ହୋଇ ଦର୍ଶନ କରିବା ସକାଶେ ଆସନ୍ତି; କିନ୍ତୁ ସେ ଆସୁଁ ଆସୁଁ ପଳାତକ ସୂର୍ଯ୍ୟ ଅଦୃଶ୍ୟ ହୋଇଥା'ନ୍ତି । ସୁତରାଂ ସେଭୋଜନରୁ ବଞ୍ଚିତା ହେବାକୁ ପଡ଼େ । ସେ କିନ୍ତୁ ହସଭରା ମୁଖରେ, "ସେଥିରେ କିଛି କ୍ଷତି ନାହିଁ ଭଗବାନଙ୍କର ଇଚ୍ଛା ମୁଁ ଆଜି ଉପବାସ କରିବାକୁ ହେବ"—କହି ଦୈନିକ କାର୍ଯ୍ୟରେ ଲାଗନ୍ତି ।

ତାଙ୍କର ସାଧାରଣ ଜ୍ଞାନ ବେଶି । ରାଜ୍ୟ ସମ୍ବନ୍ଧେ ସମ୍ପୂର୍ଣ୍ଣ ବିଷୟ ସେ ଜାଣିଥିଲେ । ଦରବାରର ସ୍ତ୍ରୀଙ୍କ ମହଲରେ ତାଙ୍କ ବୁଦ୍ଧିମତ୍ତାର ପ୍ରଶଂସା କରାଯାଉଥିଲା । ମୁଁ ପିଲା ହୋଇଥାଏ ବୋଲି ତାଙ୍କ ସହିତ ଦରବାର ଭିତରକୁ ଯିବା ଅଧିକାର ପାଇଥାଏ ଏବଂ ମୋର ମନେ ଅଛି ଠାକୁର ସାହେବଙ୍କ ବିଧବା ମାତାଙ୍କ ସହ ସେ ନାନା ପ୍ରକାର ଯୁକ୍ତିସଙ୍ଗତ କଥୋପ-କଥନ କରିଥାନ୍ତି ।

'କାବା' ଗାନ୍ଧୀଙ୍କ ଔରସରେ 'ପୁତଳିବାଈ'ଙ୍କ ଗର୍ଭରୁ ୧୮୬୯ ସାଲ୍ ଅକ୍ଟୋବର ତା୨ରିଖରେ ପୋରବନ୍ଦର ବା ସୁଦାମପୁରୀଠାରେ ମୋର ଜନ୍ମ । ମୋର ବାଲ୍ୟାବସ୍ଥା ପୋରବନ୍ଦର ଠାରେ କଟିଥିଲା । କୌଣସି ଏକ ସ୍କୁଲରେ ମୋତେ ନେଇ ଭର୍ତ୍ତି କରିବା ମନେ ହୁଏ । ବଡ଼ କଷ୍ଟରେ ଶୁଣାଣି ନାମତା ତାଲିକାଟି ମାତ୍ର ମୁଁ ମୁଖସ୍ଥ କରି ପାରିଥିଲି । ଅନ୍ୟ ପିଲାଙ୍କ ସଙ୍ଗରେ ଆସି ଶିକ୍ଷକ ମାନଙ୍କୁ ଭର୍ତ୍ସନା କରିବା ବ୍ୟତୀତ ମୋର ଆଉ

ସେ ସମୟର ଅନ୍ୟ କିଛି ଘଟଣା ସ୍ମରଣ ହୁଏନାହିଁ—ଏଥିରୁ ସ୍ପଷ୍ଟ ଅନୁମିତ ହେଉଛି ଯେ ମୋର ବୁଦ୍ଧି କପରି ଜଡ଼ ଓ ସ୍ମରଣ ଶକ୍ତି କପରି ଅପରିପକ୍ୱ ଥିଲା ।



## ଦ୍ୱିତୀୟ ପରିଚ୍ଛେଦ ।

( ଶୈଶବ )



ରାଜସ୍ଥାନ କୋର୍ଟର ସଦସ୍ୟ ହେବା ସକାଶେ ପିତା ଯେତେବେଳେ ପୋରବନ୍ଦର ଛାଡ଼ି ରାଜକୋଟ ଗଲେ ମୋର ବୟସ ସେତେବେଳେ ପ୍ରାୟ ସାତ ବର୍ଷ । ସେଠାରେ କୌଣସି ଏକ ପ୍ରାଥମିକ ବିଦ୍ୟାଳୟରେ ମୋତେ ଭରତି କରାଗଲା । କପରି ଭାବେ ମୋର ସେଠାରେ କାଳ କଟିଥିଲା ଓ କିଏ କିଏ ମୋର ଶିକ୍ଷକ ଥିଲେ, ସେସବୁ ମୋର ସମ୍ପୂର୍ଣ୍ଣ ସ୍ମରଣ ଅଛି । ପୋରବନ୍ଦର ପରି ଏଠାରେ ମଧ ମୋର ପଢ଼ା ସମ୍ବନ୍ଧେ ବିଶେଷତ୍ୱ କିଛି ନାହିଁ, କିନ୍ତୁ ମୁଁ ଜଣେ ମଧ୍ୟମ ଶ୍ରେଣୀ ଛାତ୍ର ହୋଇ ପାରିଥିଲି । ଏହି ସ୍କୁଲ ଛାଡି ନିକଟବର୍ତ୍ତୀ ଅନ୍ୟ ଏକ ସ୍କୁଲରେ ଯାଇ ନାମ ଲେଖାଇଲି ଏବଂ କିଛିଦିନ ପରେ ଉକ୍ତ ସ୍କୁଲରୁ ବିଦାୟ ନେଇ ଉଚ୍ଚ ବିଦ୍ୟାଳୟରେ ପ୍ରବେଶ କଲାବେଳକୁ ମୋର ବୟସ ବାରବର୍ଷ । ଛାତ୍ର ଜୀବନର ଏହି ଅଳ୍ପ ସମୟ ମଧ୍ୟରେ ଶିକ୍ଷକ କିମ୍ବା ସହାଧ୍ୟାୟୀମାନଙ୍କୁ କେବେହେଲେ ମିଥ୍ୟା କହିଥିବା ମୋର ମନେ ନାହିଁ । ମୁଁ ବଡ଼ ଲଜ୍ଜାଶୀଳ ହୋଇଥାଏ ବୋଲି ଏକାବେଳକେ ସଙ୍ଗ ପରିହାର କରିଥିଲି, ବହି ମୋର ଏକାନ୍ତ ସଙ୍ଗୀ । ପ୍ରତିଦିନ ଠିକ୍ ଦଶଟା ବାଜିଲା ବେଳେ ସ୍କୁଲରେ ପହଞ୍ଚି, ସ୍କୁଲ ବନ୍ଦ ହେବା କ୍ଷଣି ଘରକୁ ଦୌଡି ଫେରିଯିବା ମୋର ଅଭ୍ୟାସ । ପ୍ରକୃତରେ ଦୌଡି ଦୌଡି ମୁଁ ଫେରୁଥିଲି—ଏହାର କାରଣ ହେଉଛି ଯେ ଅନ୍ୟ କାହାରି ସହିତ କଥାବାର୍ତ୍ତା କରିବା ପାଇଁ ମୋର



ଇଚ୍ଛା ନଥାଏ ଏବଂ କିଏ ମୋତେ ଉପହାସ କରି ପାରନ୍ତି ବୋଲି ମଧ୍ୟ ଭୟ ହୁଏ ।

ଉଚ୍ଚ ବିଦ୍ୟାଳୟର ପ୍ରଥମବାର୍ଷିକ ପରୀକ୍ଷା ସମୟର ଏକ ଘଟଣା ଏଠାରେ ଉଲ୍ଲେଖ ଯୋଗ୍ୟ । ଥରେ ଶିକ୍ଷା ବିଭାଗ ଇନସ୍ପେକ୍ଟର ମିଃ ଗାଇଲସ୍ ସାହେବ ସ୍କୁଲ ପରିଦର୍ଶନ କରିବା ପାଇଁ ଆସିଥିଲେ । ବନାନ ଶୁଦ୍ଧି ପରୀକ୍ଷା କରିବାଲାଗି ସେ ଯେଉଁ ପାଞ୍ଚଟି ପଦ ପଚାରିଥିଲେ, ତନ୍ମଧ୍ୟରୁ ଗୋଟିଏ ପଦ ମୁଁ ଭୁଲରେ ବିନ୍ୟାସ କରିଥିଲି । ମୋର ଦୋଷ ଦେଖାଇ ଦେବା ସକାଶେ ଶିକ୍ଷକ ମହାଶୟ ଜୋତା ସାହାଯ୍ୟରେ ମୋତେ କେତେ ଠାରିଲେ, କିନ୍ତୁ ମୁଁ ବୁଝିପାରିଲି ନାହିଁ—ମୋର ଧାରଣା ଥିଲା ଯେ ପିଲା-ମାନେ କାଳେ ଅନ୍ୟୋନ୍ୟରେ ଦେଖା ଦେଖି ହୋଇ ଲେଖିବେ ବୋଲି ଶିକ୍ଷକ ମହାଶୟ ତାର ତତ୍ତ୍ୱାବଧାନ ସକାଶେ ସେଠାରେ ଅଛନ୍ତି । ସୁତରାଂ ପାଖ ପିଲାର ଲେଖା ଦେଖି ପଦଟି ସଂଶୋଧନ କରିବା ପାଇଁ, ମୋତେ ସେ ଯେ ଠାରୁଥିଲେ, ତାହା ବୁଝିବା ମୋପକ୍ଷେ କଷ୍ଟକର ହୋଇଥିଲା । ପରିଶେଷରେ ଦେଖାଗଲା ମୋତେ ବାଦଦେଲେ ଆଉ ସବୁ ଛାତ୍ର ପଦ-ଗୁଡ଼ିକ ଠିକ ବିନ୍ୟାସ କରିପାରି ଅଛନ୍ତି । ମୁଁ ଜଣେ କେବଳ ନିର୍ବୋଧ । ମୋର ନିର୍ବୋଧତା ସମ୍ବନ୍ଧେ ମୋତେ ଚେତାଇ ଦେବା ପାଇଁ ଶିକ୍ଷକ ମହାଶୟ ଚେଷ୍ଟା କରିଥିଲେ ସତ, କିନ୍ତୁ ତାହା ବିଫଳ ହେଲା । ଚୈର ପର ଅନ୍ୟର ପ୍ରତିଲିପି ଦେଖି ଲେଖିବା ନିପୁଣତା ମୁଁ ଶିଖିପାରି ନଥିଲି । ତଥାପି ଏହି ଘଟଣା ଯୋଗୁଁ ଶିକ୍ଷକ ମହାଶୟଙ୍କୁ ଭକ୍ତି କରିବାରେ ମୁଁ ଆଦୌ ଅବହେଳା କରି ନଥିଲି । ସ୍ୱଭାବତଃ ମୁଁ ବୟସାଧିକ ଲୋକ-ମାନଙ୍କର ଦୋଷ ଦେଖିନଥାଏ । ସେହେତୁ ଉକ୍ତ ଶିକ୍ଷକ ମହାଶୟଙ୍କ ଦୁର୍ବଳତା ସମ୍ବନ୍ଧେ ନାନା କଥା ଶୁଣିଲେହେଁ ତାଙ୍କପ୍ରତି ମୋର ଭକ୍ତି ଅକ୍ଷୁଣ୍ଣ ରହିଥିଲା । ବୟସାଧିକ ବ୍ୟକ୍ତିମାନଙ୍କର କାର୍ଯ୍ୟ ପର୍ଯ୍ୟାଲୋଚନା ନକରି ସେମାନଙ୍କର ଆଦେଶ କେବଳ ପାଳନ କରିବା ମୁଁ ଶିଖିଥିଲି ।

ସେ ସମୟର ଅନ୍ୟ ଦୁଇଟି ଘଟଣା ମୋର ମନରୁ ଲିଭିବାର ନୁହେଁ । ପାଠ୍ୟପୁସ୍ତକ ଛଡ଼ା ଅନ୍ୟ କିଛି ବହି ପଢ଼ିବାରେ ମୋର ଆଦର ନଥାଏ । ଶିକ୍ଷକମାନଙ୍କୁ ଠକିବା ଦୋଷରୁ ବଞ୍ଚିତ ହେବାଲାଗି ମୁଁ ସବୁବେଳେ ଯତ୍ନବାନ—ସେହେତୁ ପ୍ରତ୍ୟହ ପଢ଼ାପଢ଼ି କରି ସ୍କୁଲକୁ ଯାଉଥାଏ—କିନ୍ତୁ ମୁଁ ଯାହା ପଢ଼େ ଅନେକ ସମୟରେ ସେଥିରେ ମୋର ମନ ଲାଗୁନଥାଏ । କ୍ଲାସ ପାଠ ସୁଚାରୁରୂପେ ପଢ଼ାପଢ଼ି ନହେବା ସ୍ଥଳେ ବାଜେ ପଢ଼ା କରିବା ବଡ଼ମଜା ନାହିଁ । ଦିନେ କିନ୍ତୁ ପିତାଙ୍କର ଗୋଟିଏ ବହିରେ ଅକସ୍ମାତ୍ ମୋର ନଜର ପଡ଼ିଲା । ବହିଟି 'ଶ୍ରାବଣଙ୍କ ପିତୃଭକ୍ତି' ଶୀର୍ଷକ ଖଣ୍ଡିଏ ନାଟକ । ପ୍ରଗାଢ଼ ଅନୁରାଗର ସହିତ ନାଟକଟି ପଢ଼ିଲି । ଠିକ ସେତେବେଳେ ଆମ ଘରଠାକୁ କେତେକ ଛବି ପ୍ରଦର୍ଶକ ଛବିଗୁଡ଼ାଏ ଧରି ଆସିଥିଲେ । ସେମାନେ ଯେଉଁ କେତୋଟି ଛବି ମୋତେ ଦେଖାଇଲେ ତନ୍ମଧ୍ୟରୁ ଶ୍ରାବଣ ତାଙ୍କ ଚକ୍ଷୁ ହୀନ ପିତା ମାତାଙ୍କୁ ଭାରରେ ବହି ତୀର୍ଥକୁ ନେଉଥିବା ଗୋଟିଏ । ପୁସ୍ତକ ପଢ଼ି ଓ ଛବି ଦେଖି ମୁଁ ମନରେ ଯେଉଁ ଧାରଣା କରିଥିଲି ତାହା ଭୁଲିବାର ନୁହେଁ । ମୁଁ ନିଜକୁ କହିଲି, "ଅନୁକରଣ କରିବା ପାଇଁ ଏହା ଏକ ଆଦର୍ଶ" । ଶ୍ରାବଣଙ୍କ ମୃତ୍ୟୁରେ ତାଙ୍କ ପିତା ମାତାଙ୍କର ଯେଉଁ କରୁଣ କ୍ରନ୍ଦନ, ତା ମୋର ସ୍ମୃତି ପଟରେ ଅଦ୍ୟାପି ଅଙ୍କିତ । ତାଙ୍କର ମର୍ମଭେଦୀ ସ୍ୱର ଶୁଣି ମୁଁ ନିତାନ୍ତ ତରଳି ଯାଉଥିଲି ଓ ପିତା ଯେଉଁ ବାଦନ ଯନ୍ତ୍ରଟି (Concertina) ମୋ ପାଇଁ ଆଣି ଦେଇଥିଲେ ତା ସାହାଯ୍ୟରେ ସେ ସ୍ୱର ଅନୁକରଣ କରି ମୁଁ ବଜାଉଥିଲି ।

ଅନ୍ୟ ଏକ ନାଟକ ସମ୍ପର୍କରେ ଅଛି ଗୋଟିଏ ଘଟଣା ହୋଇଥିଲା । କୌଣସି ଏକ ନାଟକ ଦଳ ସେତେବେଳେ ଅଭିନୟ କରିବା ପାଇଁ ଆସିଲେ, ମୁଁ ପିତାଙ୍କର ଅନୁମତି ନେଇ ନାଟକ ଦେଖିବାକୁ ଗଲି । ଅଭିନୀତ 'ହରିଶ୍ଚନ୍ଦ୍ର' ନାଟକଟି ବଡ଼ ହୃଦୟସ୍ପର୍ଶୀ ହୋଇଥିଲା । ତାହା ବାରମ୍ବାର ଦେଖିବା ପାଇଁ ମୋର ମନ ବଳିଲା, ମୁଁ ବିରକ୍ତ ହୋଇନଥିଲି ।

କିନ୍ତୁ ଅଭିନୟ ଦେଖିବା ପାଇଁ ମୁଁ କେତେଥର ବା ଅନୁମତି ପାଇବି ? ନାଟକଟି ମୋ ମନରେ ସବୁବେଳେ ନାଚଲା ଓ କେତେଥର ଯେ ମୁଁ ହରିଶ୍ଚନ୍ଦ୍ର ଅଭିନୟ କରିଅଛି, ତାହାର କଳନା ନାହିଁ । "ହରିଶ୍ଚନ୍ଦ୍ରଙ୍କ ପରି ସମସ୍ତେ କାହିଁକି ସତ୍ୟପରାୟଣ ନହେବେ" ?—ରାତି ଦିବସ ଏହି ପ୍ରଶ୍ନଟି ମୁଁ ନିଜକୁ ପଚାରିବାକୁ ଲାଗିଲି । ସତ୍ୟନିଷ୍ଠ ହେବା ଓ ହରିଶ୍ଚନ୍ଦ୍ର ଯେଉଁ ସବୁ ଯନ୍ତ୍ରଣା ଭୋଗି ଥିଲେ ସେସବୁ ଭୋଗ କରିବା ଭାବ ମୋଠାରେ ସଞ୍ଚରି ଯାଇଥିଲା । ମୋର ବିଶ୍ୱାସ ହେଲା ଯେ ହରିଶ୍ଚନ୍ଦ୍ର ଚରିତଟି ଅକ୍ଷରେ୨ ସତ୍ୟ । ସେ କଥା ସବୁ ଭାବିଲେ ମୋତେ ଅନେକ ସମୟରେ କାନ୍ଦମାଡେ । ମୋର ସାଧାରଣ ଜ୍ଞାନ କହେ ଯେ ହରିଶ୍ଚନ୍ଦ୍ର କଦାପି ଐତିହାସିକ ପୁରୁଷ ନୁହନ୍ତି; କିନ୍ତୁ ମୋ ପକ୍ଷେ 'ହରିଶ୍ଚନ୍ଦ୍ର' ଓ 'ଶ୍ରାବଣ' ଜୀବନ୍ତ ସତ୍ୟ ପୁରୁଷ ଏବଂ ମୋର ବିଶ୍ୱାସ ଯେ ଉକ୍ତ ନାଟକ ଦୁଇଟି ଯଦି ମୁଁ ଆଜି ପୁନର୍ବାର ପଢେ, ତେବେ ପୂର୍ବପରି ବିଚଳିତ ହେବି ।

## ତୃତୀୟ ପରିଚ୍ଛେଦ ।

### ( ବାଲ୍ୟବିବାହ )

ଏହି ପରିଚ୍ଛେଦଟି ଲେଖିବା ସକାଶେ ମୋର ଇଚ୍ଛା ନଥିଲେହେଁ ମୁଁ ଜାଣେ ଇଚ୍ଛା ନଥାଇ ମଧ୍ୟ ଏହିପରି ଅନେକ ପରିଚ୍ଛେଦ ଲେଖିବାକୁ ପଡ଼ିବ; ଏବଂ ମୁଁ ଯେତେବେଳେ ସତ୍ୟର ଉପାସକ ବୋଲି ଦାବିକରୁଛି ତେବେ ମୋର ଆଉ ଗତ୍ୟନ୍ତର ନାହିଁ । ତେର ବର୍ଷ ବୟସରେ ଯେ ମୋର ବିବାହ ହୋଇଥିଲା, ସେକଥା କହିବାପାଇଁ ମୋତେ ବଡ କଷ୍ଟ ଲାଗୁଛି । ମୋ ତତ୍ତ୍ୱାବଧାନରେ ଥିବା ସେହି ବୟସର ଅବିବାହିତ ବାଳକମାନଙ୍କୁ ମୁଁ ଯେତେବେଳେ ଦେଖେ ଓ ମୋର ବିବାହ କଥା ମନେ ପକାଏ, ମୁଁ ବଡ଼ ଦୁଃଖିତ ହୁଏ, କିନ୍ତୁ ସେମାନେ ମୋ ଦଶାରୁ ରକ୍ଷା ପାଇଅଛନ୍ତି ବୋଲି ତାଙ୍କ ସୁଖରେ ସୁଖୀ ହୋଇଥାଏ । ଏହିପରି ଅସଙ୍ଗତ ବାଲ୍ୟବିବାହ ସପକ୍ଷରେ ମୁଁ କୌଣସି ନୈତିକ ଯୁକ୍ତି ଦେଖିପାରୁ ନାହିଁ ।

କାଠିଆବାଡ଼ରେ ନିର୍ବନ୍ଧ ଓ ବିବାହ ଦୁଇଟି ବିଭିନ୍ନ ବିଧାନ । ମୋର ଯେ ସେତେବେଳେ କେବଳ ନିର୍ବନ୍ଧ ହୋଇଥିଲା, ପାଠକେ ସେପରି ବୁଝିବେ ନାହିଁ—ମୁଁ ବିବାହ କରିଥିଲି । ବାଳକ ଓ ବାଳିକା ପକ୍ଷର ଅଭିଭାବକମାନେ ବିବାହ ସମ୍ବନ୍ଧ ରଖିବା ପାଇଁ ପରସ୍ପର ମଧ୍ୟରେ ଯଦି ପ୍ରତିଶ୍ରୁତ ହୁଅନ୍ତି ତାକୁ ନିର୍ବନ୍ଧ କହି—ଏବଂ ତାହା ଭାଙ୍ଗିବାର ନୁହେ । କିନ୍ତୁ ବାଳକର ମୃତ୍ୟୁରେ ବାଳିକା ବିଧବା ହୁଏନାହିଁ । ତାହା ଅଭିଭାବକମାନଙ୍କ ମଧ୍ୟରେ ପ୍ରତିଶ୍ରୁତି ମାତ୍ର—ପିଲାମାନଙ୍କର ସେଥିରେ ଆଦୌ ସମ୍ପର୍କ ନଥାଏ । ମୋ'ର ଏବେ ଠିକ ସ୍ମରଣ ନାହିଁ ସତ, କିନ୍ତୁ ମୋ'ସକାଶେ ବୋଧହୁଏ ତିନଥର ନିର୍ବନ୍ଧ ହୋଇଥିଲା । ମୁଁ ଶୁଣିଥିଲି ମୋ-ପାଇଁ ନିର୍ଦ୍ଧିତ ଦୁଇଟି କନ୍ୟା ଜଣକପରେ ଜଣେ ମରିଯାଇଥିଲେ । ସୁତରାଂ ମୁଁ ଏଥିରୁ ଅନୁମାନ କରିପାରୁଛି ଯେ ମୋ'ପାଇଁ ତୃତୀୟ ଥର ନିର୍ବନ୍ଧ ହୋଇଥିଲା । ସେ ଯାହାହେଉ ମୋ'ର ଟିକିଏ ମନେଅଛି—ତୃତୀୟ ନିର୍ବନ୍ଧ ସମୟରୁ ମୋ'ର ବୟସ ସାତବର୍ଷ । କିନ୍ତୁ ସେ ସମ୍ବନ୍ଧେ ମୋତେ ଆଦୌ କୁହାଯାଇ ନାହିଁ । ଯେଉଁ ବିବାହ ସମ୍ବନ୍ଧେ ମୋ'ର ସମ୍ପୂର୍ଣ୍ଣ ସ୍ମରଣ ଅଛି ସେ ବିଷୟନେଇ ଏହି ପରିଚ୍ଛେଦରେ ଲେଖିବାକୁ ଯାଉଛି ।

ପାଠକେ ଜାଣନ୍ତୁ ଆମେ ତିନିଭାଇ ଥିଲୁଁ । ବଡ଼ଭାଇ ପୂର୍ବରୁ ବିବାହ କରିସାରିଥିଲେ । ମୋଠାରୁ ଦୁଇ ତିନି ବର୍ଷରେ ବଡ଼ ମୋ'ର ଦ୍ୱିତୀୟ ଭାଇ ଏବଂ ବର୍ଷେ ସାନ ହୋଇଥିବା ଅନ୍ୟ ଜଣେ ଖୁଡ଼ୁତ ଭାଇଙ୍କ ସହ ଏକ ସମୟରେ ମୋ'ର ବିବାହ କରିବା ପାଇଁ ଅଭିଭାବକମାନେ ନିଷ୍ପତ୍ତି କଲେ । ଆମମାନଙ୍କର ଏଥିରେ ଇଚ୍ଛାଥିଲା କିମ୍ବା ତାହା ବୁଝିବା-ହିରେ ଥାଉଁ ଆମର ମଙ୍ଗଳ ସକାଶେ ସେମାନେ ଲେଶ ସୁଦ୍ଧା ଦୃଷ୍ଟି ଦେଇନଥିଲେ । ତାହା ସେମାନଙ୍କର ସୁବିଧା ଓ ମିତବ୍ୟୟର କଥା ।

ହିନ୍ଦୁମାନଙ୍କର ବିବାହ କିଛି ଖେଳ କୌତୁକର ବିଷୟ ନୁହେଁ । ବର ଓ କନ୍ୟା ପକ୍ଷର ଅଭିଭାବକମାନେ ବିବାହ କରାଇ ଅନେକ ସମୟରେ ସର୍ବସ୍ୱାନ୍ତ ହୋଇଥାନ୍ତି—ବୃଥାରେ ଅନେକ ସମୟ ମଧ୍ୟ ବ୍ୟୟ କରିଥାନ୍ତି । ଖଦି, ଅଳଙ୍କାର ଓ ଭୋଜି ଭାତର ତାଲିକା ଠିକଣା କରୁଁ କରୁଁ ମାସ ସଂଖ୍ୟା କଟିଥାଏ । ନାନାପ୍ରକାର ଜିନିଷ ପ୍ରସ୍ତୁତ କରି ଏକପକ୍ଷ ଅନ୍ୟ ପକ୍ଷକୁ ହଟାଇବା ସକାଶେ ଚେଷ୍ଟା କରୁଥାନ୍ତି । ସ୍ତ୍ରୀମାନଙ୍କର ସେଥିରେ କଥା ରହୁ ବା ନରହୁ ସେମାନେ ସବୁବେଳେ ରହୁଥାନ୍ତି—ରୋଗରେ ମଧ୍ୟ ପଡ଼ନ୍ତି, ଓ ପଡ଼ୋଶୀ ମାନଙ୍କର ଶାନ୍ତିଭଙ୍ଗ କରିଥାନ୍ତି, କିନ୍ତୁ ପଡୋଶୀମାନେ ସମସ୍ତ କୋଳାହଳ ନୀରବରେ ସହ୍ୟ କରିବାକୁ ପଡେ । କାରଣ ସେମାନେ ଜାଣନ୍ତି ଯେ ଏହିପରି ଦିନ ଆସିବ ନିଜେ ନିଜେ ସେମାନେ ସେପରି ବ୍ୟବହାର କରିବେ । ସୁତରାଂ ନିଜଘର ପାଖରେ ଅଇଁଠା ଖଲି ପତ୍ର ଇତ୍ୟାଦି ପଡିଲେ ସୁଦ୍ଧା ସେମାନେ ସେ ସମ୍ବନ୍ଧେ ପାଟି ଫିଟାଇ ନଥାନ୍ତି ।

ତିନିଥର ହଇରାଣ ନହୋଇ ଏକ ସମୟରେ ଆମ୍ଭ ତିନିଜଣଙ୍କର ବିବାହ ଶେଷକଲେ ଭଲ ହେବ ବୋଲି ଅଭିଭାବକମାନେ ଭାବିଲେ । ତିନିଥର ଖରଚ କରିବା ପରିବର୍ତ୍ତେ ଥରେ ଖରଚ କଲେ ମୁକ୍ତ ହସ୍ତରେ ବ୍ୟୟକରି ହେବ-ସୁତରାଂ ଏକ ପକ୍ଷରେ ମିତବ୍ୟୟ ଓ ଅନ୍ୟପକ୍ଷରେ ମହା-ସମାରୋହରେ କାର୍ଯ୍ୟଟା ଶେଷ ହେବ ବୋଲି ସେମାନଙ୍କର ଭାବନା । ମୋ'ର ପିତା ଓ ପିତୃବ୍ୟ ବୃଦ୍ଧ । ଆମ୍ଭ ତିନିଜଣଙ୍କର ବିବାହ ଭାର ତାଙ୍କ ଉପରେ ନିର୍ଭର ଥିଲା । ସେମାନେ ଭାବିଥିଲେ ଆମ୍ଭମାନଙ୍କର ବିବାହକରି-ଦେଇ ତାଙ୍କ ଜୀବନର ଉତ୍କୃଷ୍ଟ ସମୟ ଶେଷ କରିବେ । ଏସବୁ ବିଚାର କରି ଏକ ସମୟରେ ତିନିଗୋଟି ବିବାହ ଶେଷକରିବା ପାଇଁ ନିଶ୍ଚୟ କରାଗଲା ଏବଂ ତାହାର ଯୋଗାଡ଼ କରିବା ଲାଗି ମାସ ସଂଖ୍ୟା ଲାଗିଲା । ସବୁ

ଯୋଗାଡ଼ ଦେଖି କେବଳ ଭବିଷ୍ୟତ୍ ସମ୍ବନ୍ଧେ ଆମ୍ଭେମାନେ ବାଛ ନେଇ-ଥିଲୁଁ । ଭଲ ପୋଷାକ ପିନ୍ଧିବା, ବାଦ୍ୟ ବାଜଣା, ବିବାହ ପଟୁଆର ଦେଖିବା ତୃପ୍ତିକର ଭୋଜିଭାତ ଖାଇବା ଓ ଖେଳିବା ପାଇଁ ଜଣେ ଅଚିହ୍ନା ବାଳିକାକୁ ପାଇବା ଛଡ଼ା ଘଟଣାନ୍ତରେ ଆଉକିଛି ବିଶେଷତ୍ୱ ଅଛି ବୋଲି ମୁଁ ଭାବିପାରି ନଥିଲି । ଇନ୍ଦ୍ରିୟ ପରିତୃପ୍ତି ଆଶା ପରେ ଆସିଲା । ମୁଁ ଇଚ୍ଛା କଲେ ତାହାର କ୍ରମୋନ୍ନତି ସମ୍ବନ୍ଧେ ବର୍ଣ୍ଣନା କରି ପାରିଥାନ୍ତି କିନ୍ତୁ ସେ ବିଷୟ ଜାଣିବା ପାଇଁ ପାଠକମାନେ ଆତୁର ହେବା ଉଚିତ ନୁହେଁ । ମୁଁ ଯେଉଁ କେତୋଟି ଉଲ୍ଲେଖ ଯୋଗ୍ୟ ଲକ୍ଷ୍ୟାବଦ୍ଧ ବିଷୟ ପରେ ଲେଖିବା ପାଇଁ ଯାଉଛି ସେ କେବଳ ସବୁ ବାଦଦେଲେ ଆଉ ଅନ୍ୟ ଘଟଣାର ଯବନିକାପତନ କରିବା ମୋ'ର ଇଚ୍ଛା, ତଥାପି ଯେଉଁ ନିର୍ଦ୍ଦିଷ୍ଟ ଭାବ ନେଇ ଏହି ଆତ୍ମକଥା ଲେଖିବାକୁ ଯାଉଛି ତାହା ସହିତ ଏହି ବିଷୟ ଗୁଡ଼ିକର ଆଦୌ ସମ୍ପର୍କ ନାହିଁ ।

ବିବାହର ଯୋଗାଡ଼ ହେବା ଯୋଗୁଁ ଆମ୍ଭ ଦୁଇ ଭାଇଙ୍କୁ ରାଜ-କୋଟଠାରୁ ପୋରବନ୍ଦରଠାକୁ ନେଇଥିଲେ । ବିବାହ ନାଟକ ଅଭିନୟ ପୂର୍ବରୁ ଯେ କେତେଗୋଟି କୌତୁକ ବିଷୟର ସୂତ୍ରପାତ ହୋଇଥା'ନ୍ତି—ଯେପରିକି ବଟା ହଳଦି ଦେହରେ ମାଖି ହେବା ଗୋଟିଏ । କିନ୍ତୁ ସେ ସବୁ ମୁଁ ଏଠାରେ ଲେଖୁନାହିଁ ।

ହିବାନ ହେଲେହେଁ ମୋର ପିତା ଜଣେ ଶୃଙ୍କର ଏବଂ ବିଶେ-ଷତଃ ଠାକୁର ସାହେବଙ୍କ ବଡ଼ ପ୍ରୀତିପାତ୍ର । ସୁତରାଂ ଶେଷ ମୁହୂର୍ତ୍ତିଯାଏ ସେ ମୋ ପିତାଙ୍କୁ ବିଦାୟ ଦେବା ପାଇଁ ନାରାଜ । କିନ୍ତୁ ପରିଶେଷରେ ପିତାଙ୍କୁ ଯେତେବେଳେ ସେ ବିଦାୟ ଦିଅନ୍ତି ବାଛି ବାଛି ଭଲ ଗାଡ଼ି ଟିଏ ମଧ ଦେଇଥିଲେ—ସେହେତୁ ସମୁଦାୟ ବାଟ ଅତିକ୍ରମ କରିବା ପାଇଁ ସାଧା-ରଣତଃ ଯେତେ ସମୟ ଲାଗନ୍ତା ସେଥିରୁ ଦୁଇଦିନ କମ ଲାଗିଲା । କିନ୍ତୁ

କି'ଣ ହେବ ଲଲାଟର ଲେଖା ଅନ୍ୟପ୍ରକାର । ରାଜକୋଟଠାରୁ ପୋରବନ୍ଦର ୬୦ ମାଇଲ—ଶଗଡ଼ରେ ଗଲେ ପାଞ୍ଚ ଦିନର ବାଟ । ତିନି ଦିନରେ ମୋ'ର ପିତା ସମୁଦାୟ ବାଟ ଅତିକ୍ରମ କରି ଯାଇଥିଲେ ସତ, କିନ୍ତୁ ତୃତୀୟ ଦିନ ଗାଡ଼ିଟି ଲେଉଟି ଯିବାରୁ ତାଙ୍କୁ ବଡ଼ ବାଧା ହୋଇଥିଲା । ଦେହ-ଯାକରେ ପଟି ବାନ୍ଧି ସେ ଘରକୁ ଆସିଲେ । ସୁତରାଂ ବିବାହରେ ଆମ୍ଭର ଯେପରି ଅର୍ଦ୍ଧେ ଉତ୍ସାହ କମିଗଲା ତାଙ୍କର ମଧ୍ୟ ଆନନ୍ଦ ଊଣା ହୋଇଗଲା । ସେ ଯାହା ହେଉ ବିବାହ ଯୋଗ ପରିବର୍ତ୍ତିତ ହେବାର ନୁହେ—ଉତ୍ସବ କୃତ୍ୟ ଶେଷ କରିବାକୁ ହେବ । ବିବାହର ତୁଚ୍ଛ କୋଳାହଳରେ ନିମଜ୍ଜି ପିତାଙ୍କର ଶରୀର ପୀଡ଼ା ମୁଁ ଭୁଲିଯାଇଥିଲି ।

ପିତା ମାତାଙ୍କ ପ୍ରତି ମୁଁ ବଡ଼ ଅନୁରକ୍ତ । କିନ୍ତୁ ରକ୍ତ ମାଂସ ଶରୀର ଯେଉଁ ସବୁ ଆସକ୍ତିର ବଶୀଭୂତ ମୋର ସେଥିରେ ମଧ୍ୟ ଅନୁରାଗ ଥିଲା । ପିତା ମାତାଙ୍କ ସେବାରେ ଲିପ୍ତ ରହିବାକୁ ହେଲେ ସମସ୍ତ ସୁଖ ସମ୍ଭୋଗ ଉତ୍ସର୍ଗ କରିବାକୁ ହେବ—ଏକଥା ମୁ ଆହୁରି ଶିଖି ନଥିଲି ।

ଏହି ଆସକ୍ତିର ଦଣ୍ଡ ସ୍ୱରୂପ ବୋଧହୁଏ ଯେଉଁ ଗୋଟିଏ ମର୍ମନ୍ତୁଦ ଘଟଣା ହୋଇଥିଲା—ସେ ସମ୍ବନ୍ଧେ ମୁଁ ପରେ ଲେଖିବି । "ଅଭିଳାଷ ପରିହାର ନକରି ବସ୍ତୁକୁ ପରିହାର କଲେ ତାହା କ୍ଷଣସ୍ଥାୟୀ ହୁଏ, ତଥାପି ଚେଷ୍ଟା କଲେ ଫଳଲାଭ ହୋଇପାରେ"—ବୋଲି ନିଷ୍କୁଳାନନ୍ଦ କହନ୍ତି ଏବଂ ମୁଁ ଯେତେବେଳେ ଏହା ପଢ଼େ କିମ୍ବା ଶୁଣେ ମୋ'ମନରେ ସେହି ଅପ୍ରୀତିକର ଘଟଣା ହଠାତ୍ ଜାଗି ଉଠେ ଓ ମୁଁ ଲଜ୍ଜିତ ହୁଏ ।

କ୍ଷତ ଶରୀର ପ୍ରତି ଭ୍ରୂକ୍ଷେପ ନକରି ଧୈର୍ଯ୍ୟର ସହିତ ପିତା ବିବାହରେ ସମ୍ପୂର୍ଣ୍ଣଭାବେ ଯୋଗ ଦେଲେ । ଏବେ ସୁଦ୍ଧା ମୁଁ କହିପାରିବି ଯେ ସେ କେଉଁଠାରେ ବସିଥିଲେ ଓ ବିବାହର କେଉଁ କେଉଁ ବିଧିକୁ ସେ ନିର୍ବାହ କରିବାପାଇଁ ପଡ଼ିଥିଲା । ମୁଁ ସେତେବେଳେ ସ୍ୱପ୍ନରେ ସୁଦ୍ଧା ଭାବି-

ନଥିଲି ଯେ ବାଲ୍ୟାବସ୍ଥାରେ ମୋତେ ବିବାହ କରିବା ଲାଗି ମୁଁ ତାଙ୍କୁ ଦିନେ ଦୋଷୀ କରିବି । ସେ ସମୟର ସବୁ କଥା ମୋ'ପକ୍ଷେ ନ୍ୟାୟସଙ୍ଗତ, ଉଚିତ ଓ ଆନନ୍ଦ ଦାୟକ । ବିବାହ କରିପକାଇବା ସକାଶେ ମୋର ବଡ଼ ଆକାଂକ୍ଷା ମଧ୍ୟ ଥିଲା । ସେ ସମୟରେ ପିତା ଯାହା କରୁଥାନ୍ତି ସେସବୁ ସମାଲୋଚନା କରିବା ଉଚିତ ନୁହେ ବୋଲି ଭାବୁଥିଲି । ଆମ୍ଭେ ବର କନ୍ୟା ଦୁହେଁ କିପରି ବେଦି ଉପରେ ବସିଥିଲୁଁ କିପରି 'ସପ୍ତପଦୀ' ବିଧାନ ପାଳିଥିଲୁ, ପରସ୍ପର କିପରି ତୁଣ୍ଡରେ 'କଂସାର' ଦେଇଥିଲୁ ଓ ସେହିଦିନଠାରୁ ଉଭୟେ କିପରି ଏକତ୍ର ରହିବା ଆରମ୍ଭ କଲୁଁ, ସେସବୁ ଏବେ ସୁଦ୍ଧା ମୁଁ କହିପାରିବି । ଓଃ, ସେ ଯେ ପ୍ରଥମରାତ୍ର !—ଦୁଇଟି ନିରୀହ ଶିଶୁ ଅଜ୍ଞାନ-ଭାବେ ଜୀବନ-ସମୁଦ୍ରରେ ନିଜ ନିଜକୁ ନିକ୍ଷେପ କରି ଦେଇଅଛନ୍ତି ! ପ୍ରଥମ ରାତ୍ରରେ କିପରି ବ୍ୟବହାର କରିବାକୁ ହେବ ମୋର ବଡ଼ ଭାଇଙ୍କ ସ୍ତ୍ରୀ ତାହା ମୋତେ ବତାଇ ଦେଇଥିଲେ । ମୋର ସ୍ତ୍ରୀଙ୍କୁ କିଏ ଯେ ଶିଖାଇଥିଲା ମୁଁ କହିନପାରେ । ସେ ବିଷୟରେ ମୁଁ କେବେ ତାଙ୍କୁ ପଚାରିନାହିଁ କିମ୍ବା ଏବେ ସୁଦ୍ଧା ପଚାରିବା ମୋର ଇଚ୍ଛା ନୁହେ । ପାଠକେ ନିଶ୍ଚୟ ଅନୁମାନ କରିବେ ପରସ୍ପର ଦେଖାସାକ୍ଷାତ କରିବାପାଇଁ ଆମ୍ଭେମାନେ କିପରି ସଂକୋଚ ବୋଧ କରିଥିବୁଁ । ବାସ୍ତବିକ ଆମ୍ଭେ ଦୁହେଁ ବଡ଼ ଲଜ୍ଜା-ଶୀଳ ଥିଲୁଁ । କିପରି ଓ କ'ଣ ବୋଲି ଅବା ତାଙ୍କସହ ମୁଁ କଥା ହେବି ? ବ୍ୟବହାର ସମ୍ବନ୍ଧେ ଯାହା ଶିକ୍ଷା କରିଥିଲି ତାହା ମୋତେ ଆଉ ବେଶି ଦୂର ସାହାଯ୍ୟ କରିନଥିଲା । ତଥାପି ଏହିପରି ବିଷୟ ଲାଗି ଶିକ୍ଷାର ଆବଶ୍ୟକତା ମଧ୍ୟ ଆଦୌ ନଥାଏ । ପୂର୍ବ ଜୀବନର ସମସ୍ତ ଧାରଣାହିଁ ଅନୁଭୂତ ଓ ଶିକ୍ଷା—ସୁତରାଂ ଆଉ ବାଜେ ଶିକ୍ଷା ନିଷ୍ପ୍ରୟୋଜନ । କ୍ରମେ କ୍ରମେ ଆମ୍ଭେ ପରସ୍ପରକୁ ଜାଣିବା ଓ ନିଃସଙ୍କୋଚରେ କଥାବାର୍ତ୍ତା କରିବା ଆରମ୍ଭ କଲୁଁ । ଆମ୍ଭେ ଦୁହେଁ ସମବୟସ୍କ ଥିଲୁ ସତ, କିନ୍ତୁ ମୁଁ ପତି ବୋଲି ଅଧିକାର କରିବା ସକାଶେ ବେଶିଦିନ ଲାଗିନଥିଲା ।

## ମହାତ୍ମା ଗାନ୍ଧୀଙ୍କ ଆତ୍ମଚରିତ ।

## ଚତୁର୍ଥ ପରିଚ୍ଛେଦ ।

### ( ପତିର ଅଧିକାର )



ମୋର ବିବାହ ସମୟରେ ଅତିଅଳ୍ପ ଦାମରେ ଅନେକ ଛୋଟ ଛୋଟ ବହି କିଣିବାକୁ ମିଳେ । ସେଥିରେ ଦାମ୍ପତ୍ୟ ପ୍ରେମ ମିତବ୍ୟୟ, ବାଲ୍ୟବିବାହ ଇତ୍ୟାଦି ବିଷୟ ନେଇ ଲେଖା ଯାଇଥାଏ । ମୁଁ ଯେତେବେଳେ ସେଗୁଡିକ ଦେଖେ, ଆଦ୍ୟନ୍ତ ପଢ଼ିପକାଏ । ମୋର କିନ୍ତୁ ଏହିପରି ଗୋଟିଏ ଅଭ୍ୟାସ ହୋଇଥିଲା ଯେ, ଯାହା ମୋ ଦୃଷ୍ଟିରେ ଘୃଣ୍ୟ ସେସବୁ ମୁଁ ପାସୋର ଦେଉଥିଲି ଓ ଯାହା ଭଲ ତାହା ଗ୍ରହଣ କରି କାର୍ଯ୍ୟରେ ପରିଣତ କରୁଥିଲି । ପତ୍ନୀଙ୍କଠାରେ ଆଜୀବନ ବିଶ୍ୱସ୍ତ ରହିବା ପତିର କର୍ତ୍ତବ୍ୟ ବୋଲି ଏହି ଛୋଟ ବହି ଗୋଟିକରୁ ପଢ଼ିଥିଲି; ତାହା ମୋ'ସ୍ମୃତି-ପଟରେ ଅଦ୍ୟାପି ଅଙ୍କିତ ରହିଛି । ବିଶେଷତଃ ସତ୍ୟପ୍ରତି ମୋର ସ୍ୱାଭାବିକ ଅନୁରାଗ ଥାଏ । ସୁତରାଂ ତାଙ୍କୁ ମୁଁ ଅବିଶ୍ୱାସ କରେନାହିଁ । ଏବଂ ସେହି ସରଳ ବୟସରେ କୃତ୍ରିମ ବ୍ୟବହାର କରିବା ମଧ୍ୟ କାହାର ପକ୍ଷେ ଆଦୌ ସମ୍ଭବ ନୁହେ ।

ତାଙ୍କପ୍ରତି ବିଶ୍ୱସ୍ତ ରହିବାକୁ ହେବ ବୋଲି ମୁଁ ଶିକ୍ଷା କରିଥିଲି ସତ, କିନ୍ତୁ ତାର ପରିମାଣରେ ବିନମ୍ରୀ ହୋଇ ପାରିନଥିଲି । "ମୁଁ ଯଦି ମୋ'ର ସ୍ତ୍ରୀଙ୍କଠାରେ ବିଶ୍ୱସ୍ତ ରହିବା ପାଇଁ ଶପଥ କରିବା ଉଚିତ, କିନ୍ତୁ ମଧ୍ୟରେ ସେ ମଧ୍ୟ ସେହିପରି କରିବା କଥା" ବୋଲି ଭାବିବାକୁ ଲାଗିଲି । ଏହା ମୋ'ମନରେ ପକ୍ଷପାତ ଓ ପରଶ୍ରୀକାତର ଭାବ ସଞ୍ଚାର କଲା । ମୋ'ପ୍ରତି ବିଶ୍ୱସ୍ତ ରହିବା ତାଙ୍କର କର୍ତ୍ତବ୍ୟ ସତ, ମୋ'ର କିନ୍ତୁ ତାହା ଅଧିକାର ବୋଲି ମୁଁ ସହଜରେ ଦାବୀ କରିବାକୁ ଲାଗିଲି ଏବଂ ସେହି ଅଧିକାର ଯେପରି ଦୃଢ଼ୀଭୂତ ହୁଏ ସେଥିପ୍ରତି ସବୁବେଳେ ତତ୍ପର ହେବା

ଉଚିତ ମନେ କଲି । ମୁଁ ତାଙ୍କୁ ଅବିଶ୍ୱାସ କରିବା ପାଇଁ କିଛି କାରଣ ନଥିଲି ସତ, କିନ୍ତୁ ପରୀକ୍ଷାକାତରତା କୌଣସି କାରଣ ଅପେକ୍ଷା କରିନଥାଏ । ମୁଁ ସର୍ବଦା ତାଙ୍କର ସ୍ଥିତିଗତି ପ୍ରତି ଦୃଷ୍ଟି ରଖିଥାଏ । ସୁତରାଂ ମୋର ବିନାନୁମତିରେ ସେ କୁଆଡ଼େ ଯାଇ ପାରୁ ନଥିଲେ । ଏହା ଆମ୍ଭମାନଙ୍କ ମଧ୍ୟରେ ଗୁରୁତର ମନୋମାଳିନ୍ୟର ସୂତ୍ରପାତ କଲା । ବାସ୍ତବିକ ଏହି ପ୍ରତିରୋଧ ଏକ ପ୍ରକାର କାରାଦଣ୍ଡ—କସ୍ତୁରବାଈ ଏହିପରି କଥା ସହିବା ସ୍ତ୍ରୀ ନୁହନ୍ତି । ଯେତେବେଳେ ଯେଉଁଠାକୁ ଯିବା ଇଚ୍ଛାହୁଏ, ସେଠାକୁ ଯିବା ପାଇଁ ସେ ସଂକଳ୍ପ କଲେ । ମୁଁ ଯେତିକି ପ୍ରତିରୋଧ କଲି ସେ ତାହାଠାରୁ ଅଧିକ ସ୍ୱତନ୍ତ୍ରଭାବେ କାର୍ଯ୍ୟ କରିବାକୁ ବସିଲେ । ବିବାହିତ ହେଲେହେଁ ଆମ୍ଭେ ଦୁହେଁ ଶିଶୁ—ସୁତରାଂ ମନାନ୍ତର ହେଲେ ଶିଶୁପରି ପରସ୍ପର କଥାବାର୍ତ୍ତା ମଧ୍ୟ ହୋଇନଥାଉଁ । ଏବେ କିନ୍ତୁ ମୁଁ ଭାବୁଛି ମୋ'ର ପ୍ରତିରୋଧକୁ ଉପେକ୍ଷା ନକରି କସ୍ତୁରବାଈ କିଛି ଅପରାଧ କରି ନାହାନ୍ତି । ଜଣେ ସରଳା ବାଳିକା ଦେବାଳୟକୁ କିମ୍ବା ବନ୍ଧୁମାନଙ୍କ ନିକଟକୁ ଯିବାପାଇଁ ଯଦି ନିଷେଧ କରାଯାଏ, ସେ ତାହା ସହିବ କିପରି ? ଏବଂ ମୋ'ର ଯଦି ତାଙ୍କ କାର୍ଯ୍ୟରେ ବାଧା ଦେବାପାଇଁ ଅଧିକାର ଅଛି ତାଙ୍କର କ'ଣ ସେହିପରି ଅଧିକାର ନାହିଁ ? ମୁଁ ଏକଥା ଆଜିକାଲି ସମ୍ପୂର୍ଣ୍ଣ ବୁଝିପାରୁଅଛି । କିନ୍ତୁ ସେ ସମୟରେ ମୁଁପରା ପତିର ଅଧିକାର ଦାବୀ କରୁଥିଲି !

ପାଠକେ କିନ୍ତୁ ଭାବିବେ ନାହିଁ ଯେ ଆମ୍ଭର ଗାର୍ହସ୍ଥ୍ୟ ଜୀବନ କଳହପୂର୍ଣ୍ଣ ଥିଲା । କସ୍ତୁରବାଈଙ୍କ ପ୍ରତି ମୋର ଯେତେ କଟକଣା ସେସବୁ ପ୍ରେମ-ପ୍ରସୂତ ମାତ୍ର । ତାଙ୍କୁ ଜଣେ ଆଦର୍ଶ ପତ୍ନୀ ରୂପରେ ଗଢ଼ିବା ମୋ'ର ଏକାନ୍ତ ଇଚ୍ଛା । ସେ ପବିତ୍ର ଭାବେ କିପରି ଜୀବନ କଟାନ୍ତି, ମୁଁ ଯାହା ଶିଖୁଛି ତାହା ଯେପରି ଶିକ୍ଷାକରନ୍ତି ଏବଂ ତାଙ୍କ ଜୀବନ ଓ ଭାବନା ମୋ' ଜୀବନ ଓ ଭାବନା ମଧ୍ୟରେ ଯେପରି କିଛି ପ୍ରଭେଦ ନରହେ, ଯେଥିପ୍ରତି କିସ

ଷରବାନ ହେବା ମୋ'ର ଲକ୍ଷ୍ୟ । କସ୍ତୁରବାଈଙ୍କର ଏପରି ଅଭିଳାଷ ଥିଲା କିନା ମୁଁ ଜାଣେ ନାହିଁ ।

କସ୍ତୁରବାଈ କିଛି ପଢ଼ାପଢ଼ି କରିନଥିଲେ । ସ୍ୱଭାବତଃ ସେ ସରଳା, ଅଧ୍ୟବସାୟିନୀ, ସ୍ୱାତନ୍ତ୍ର୍ୟପ୍ରିୟା ଏବଂ ମୋ' ନିକଟରେ ମୌନବ୍ରତାବଲମ୍ବିନୀ । ମୂର୍ଖତାରୁ ଉଦ୍ଧାର ପାଇବା ସକାଶେ ତାଙ୍କର ଆତୁରତା ନଥିଲା ଏବଂ ମୋ'ର ପଢ଼ାପଢ଼ି ଦେଖି ତା'ଙ୍କ ମନରେ ପଢ଼ିବାଲାଗି ଉତ୍ସାହ ଜନ୍ମି ଥିଲା ବୋଲି ମୁଁ କହିନପାରେ । ମୁଁ ଭାବୁଛି ମୋ'ର ଯେତେ ପ୍ରକାର ଚେଷ୍ଟା ସେଥିରେ ମୁଁ ପକ୍ଷପାତୀ ଥିଲି—କାରଣ ମୋ'ର ସମସ୍ତ ଅନୁରାଗ ଜଣେ ସ୍ତ୍ରୀ ଉପରେ ଥିଲା ଏବଂ ବିନିମୟରେ ତାହା ଯେପରି ପାଏ ସେହି ଇଚ୍ଛା କରୁଥିଲି । କିନ୍ତୁ ବିନିମୟରେ ତାହା ନପାଇଲେହେଁ ଯେତେବେଳେ ଅନ୍ତତଃ ଗୋଟିଏ ପକ୍ଷରୁ ପ୍ରେମପୂର୍ଣ୍ଣ ବ୍ୟବହାର ହେଉଥାଏ ତେବେ ଗାର୍ହସ୍ଥ୍ୟ ଜୀବନ ଅଶାନ୍ତିମୟ ହୋଇନପାରେ ।

କସ୍ତୁରବାଈଙ୍କ ପ୍ରତି ମୁଁ ବଡ଼ ଆସକ୍ତ ଥିଲି । ସ୍କୁଲରେ ମଧ୍ୟ ତାଙ୍କୁ ଭାବୁଥାଏ ଏବଂ କେତେବେଳେ ସନ୍ଧ୍ୟା ହେବ ତାଙ୍କୁ ଯାଇ ଦେଖିବି, ଏହି ଭାବ ସବୁବେଳେ ମନରେ ଖେଳୁଥାଏ । ଅନ୍ତର ଦୁଃଖ ବଡ଼ ଅସହ୍ୟ ବୋଧ ହୁଏ । ବୃଥା କଥା କହି ତା'ଙ୍କୁ ଅନେକ ରାତିଯାଏ ମୁଁ ଶୁଆଇ ଦିଏନାହିଁ । ଏହିପରି ଉତ୍କଟ ଆସକ୍ତିର ବଳରେ ପଡ଼ି ସୁଦ୍ଧା ମୋର ଯଦି କର୍ତ୍ତବ୍ୟ ସାଧନରେ ପ୍ରବଳ ଅନୁରାଗ ନଥାନ୍ତା, ତାହାହେଲେ ହୁଏତ ମୁଁ ରୋଗ ଓ ଅକାଳ ମୃତ୍ୟୁରେ ପଡ଼ିଥାନ୍ତି କିମ୍ବା ମୋ'ର ଜୀବନ ଭାରାକ୍ରାନ୍ତ ହୋଇଥାନ୍ତା । କିନ୍ତୁ ପ୍ରତିଦିନର ନିର୍ଦ୍ଦିଷ୍ଟ କାର୍ଯ୍ୟ ମୁଁ ସବୁ ଶେଷକରି ଦେଉଥାଏ ଓ କାହାରିକୁ ମିଥ୍ୟା କହେନାହିଁ । ଏହି ଶେଷ କଥାଟି କେବଳ ମୋ'ତେ ଅନେକ ଆପଦରୁ ରକ୍ଷା କରିଥିଲା ।

ମୁଁ ପୂର୍ବରୁ କହିଛି କସ୍ତୁରବାଈ ଆଦୌ ପଢ଼ାପଢ଼ି କରିନଥିଲେ । ତାଙ୍କୁ ପଢ଼ାଇବା ସକାଶେ ମୁଁ ବଡ଼ ଇଚ୍ଛା କରିଥିଲି । କିନ୍ତୁ ମୋ'ର ଲମ୍ପଟ ପ୍ରେମ ହେତୁ ତାହା କରିବା ପାଇଁ ସମୟ ପାଉ ନଥାଏ । ବିଶେଷତଃ ତା'ଙ୍କର ଇଚ୍ଛା ବିରୋଧରେ ପଢ଼ାଇବା କଥା ଓ ତାହା ମଧ୍ୟ ରାତ୍ରିରେ,କାରଣ ଦିବସରେ ତା'ଙ୍କସହ କଥା ହେବା ଦୂରେଥାଉ ତା'ଙ୍କୁ ବୟସାଧିକ ବ୍ୟକ୍ତିଙ୍କ ଆଗରେ ଦେଖିବା ପାଇଁ ମଧ୍ୟ ମୋର କ୍ଷମତା ନଥାଏ । ସେତେବେଳେ କାଥିଆବାଡ଼ରେ ଏକପ୍ରକାର ଅଦ୍ଭୂତ, ନିରର୍ଥକ ଓ ପାଶବିକ ପରଦା ନିୟମ ଥିଲା । ଆଜି କାଲି ବୋଧହୁଏ ସେଥିରୁ ସମାନ୍ୟ କିଛି ଅଛି । ତାଙ୍କୁ ପଢ଼ାଇବା ସକାଶେ ଏହିପରି ସମୟ ଓ ସୁବିଧା ମଧ୍ୟ ପ୍ରତିକୂଳ ହୋଇଥିଲା । ସୁତରାଂ ତାଙ୍କ ଶିକ୍ଷା ସକାଶେ ସ୍ୱେ ସମୟର ପ୍ରାୟ ସମସ୍ତ ଚେଷ୍ଟାରେ ମୁଁ ବିଫଳ ମନୋରଥ ହୋଇଥିଲି । କାମପୂର୍ଣ୍ଣ ନିଦ୍ରାରୁ ଚେତନା ପାଇଲା ବେଳକୁ ମୁଁ ଲୋକସେବା କାର୍ଯ୍ୟରେ ଯୋଗ ଦେଇସାରିଲିଣି—ସେହେତୁ ଆଦୌ ବଳକା ସମୟ ମିଳିଲା ନାହିଁ । ଘରେ ଶିକ୍ଷକ ରଖି ତାଙ୍କୁ ପଢ଼ାଇବା ସୁବିଧା ମଧ୍ୟ କରି ପାରିନଥିଲି । ଏସବୁ କାରଣ ହେତୁ କସ୍ତୁରବାଈ ଆଜି କାଲି ବଡ଼ କଷ୍ଟରେ କେବଳ ସରଳ ଚିଠି ଲେଖିପାରନ୍ତି ଓ ସରଳ ଗୁଜରାଟି ଭାଷା ବୁଝି ପାରନ୍ତି । ତା'ଙ୍କପ୍ରତି ମୋ'ର ଯେଉଁ ପ୍ରେମ ଥିଲା ତାହା ଯଦି କାମପ୍ରସୂତ ନହୋଇଥାନ୍ତା, ତାହାହେଲେ ସେ ଜଣେ ଉଚ୍ଚ ଧରଣର ଶିକ୍ଷିତା ମହିଳା ହୋଇଥାନ୍ତେ ବୋଲି ମୁଁ ମୁକ୍ତ କଣ୍ଠରେ କହିପାରେ ଓ ଶିକ୍ଷାପ୍ରତି ତାଙ୍କର ଯେଉଁ ଅନାଦର ଥିଲା, ତାହା ମୁଁ ଦୂର କରିପାରିଥାନ୍ତି—କାରଣ ମୁଁ ଜାଣେ ଯେଉଁଠାରେ ପ୍ରକୃତ ପ୍ରେମ, ସେହିଠାରେ ଅକର୍ତ୍ତବ୍ୟ ବୋଲି କିଛି ନାହିଁ ।

ଲମ୍ପଟ ପ୍ରେମର ଭୟାନକ ପରିଣାମରୁ ମୋ'ତେ ଯେଉଁ ଗୋଟିଏ ଘଟଣା ରକ୍ଷା କରିଥିଲା, ସେ ସମ୍ବନ୍ଧେ ମୁଁ ପୂର୍ବେ କହିଅଛି । ସେହିପରି

ଅନ୍ୟ ଏକ ଘଟଣା ଏଠାରେ ଉଲ୍ଲେଖଯୋଗ୍ୟ । ମୁଁ ଅନେକ ଘଟଣାରୁ ବୁଝି ପାରିଛି, ଯାହାର ଉଦ୍ଦେଶ୍ୟ ଓ ଭାବନା ପବିତ୍ର, ତାକୁ ଈଶ୍ୱର ସମସ୍ତ ବିପଦରୁ ରକ୍ଷା କରିଥାନ୍ତି । ଜଣ୍ଟୁର ବାଲ୍ୟବିବାହ ପରି ହିନ୍ଦୁ ସମାଜର ଆଉ ଗୋଟିଏ ପ୍ରଥା ଅଛି । ତାହା କିନ୍ତୁ କେତେକ ଅଂଶରେ ପ୍ରଥମଟିର ଅମଙ୍ଗଳ ସବୁ ଦୂର କରିଥାଏ । ଅଭିଭାବକମାନେ ବେଶି ସମୟ ପର୍ଯ୍ୟନ୍ତ ପତି ପତ୍ନୀ ଏକତ୍ର ରହିବା ସୁବିଧା ଦେଇ ନଥାନ୍ତି । ବିବାହିତ ଜୀବନର ପ୍ରାୟ ଅଧେ ସମୟ ବାଳକାଟି ପିତା ଘରେ କଟାଇଥାଏ । ଆମର ମଧ ଏହି ଅନୁଭୂତି । ବିବାହର ପାଞ୍ଚବର୍ଷ ଭିତରେ [୧୩ ବର୍ଷ ଠାରୁ ୧୮ ବର୍ଷ ଯାଏ ] ଆମ୍ଭେ ମୋଟ ଉପରେ ତିନବର୍ଷଠାରୁ ଅଧିକାସମୟ ଏକତ୍ର ରହିନାହୁଁ । ଛ'ମାସ ପର୍ଯ୍ୟନ୍ତ ଏକାଠି ରହିବା ଶେଷ ନହେଉଣୁ ତାଙ୍କ ବାପଘରୁ ଡ଼ାକରା ଆସେ । ସେ ସମୟରେ ଏପରି ଡ଼ାକରା ସବୁ ବଡ଼ ଅପ୍ରିୟ ଲାଗେ । କିନ୍ତୁ ତାହା ଆମ୍ଭ ଦୁହିଙ୍କୁ ରକ୍ଷା କରିଥିଲା । ଅଠର ବର୍ଷ ବୟସରେ ମୁଁ ବିଲାତ ଗଲି—ତାହା ବହୁଦିନ ଲାଗି ବିଚ୍ଛେଦ ହେଲେହେଁ ବଡ଼ ସ୍ୱାସ୍ଥ୍ୟକର । ବିଲାତରୁ ଫେରି ଆମ୍ଭେ ଛଅମାସରୁ ଅଧିକ ସମୟ ଏକତ୍ର ରହିଥିବୁକିନା ସନ୍ଦେହ, କାରଣ ମୁଁ ରାଜକୋଟଠାରୁ ବୋମ୍ବାଇକୁ ବେଶି ଯିବା ଆସିବା କରୁଥାଏ । ଦକ୍ଷିଣ ଆଫ୍ରିକାରୁ ଯେତେବେଳେ ଡାକରା ଆସିଲା ମୋର ନିଦ୍ରା ଭାଙ୍ଗିଲା ।



## ପଞ୍ଚମ ପରିଚ୍ଛେଦ ।

### ( ଛାତ୍ରଜୀବନ )

ମୁଁ ପୂର୍ବରୁ କହିସାରିଛି ମୋ'ର ବିବାହ ସମୟକୁ ମୁଁ ଉଚ୍ଚ ବିଦ୍ୟାଳୟରେ ପଢ଼ୁଥିଲି । ଆମ୍ଭେ ତିନଭାଇ ଗୋଟିଏ ସ୍କୁଲରେ ପଢ଼ୁଥିଲୁ । ପ୍ରଥମ ଭାଇ ସର୍ବୋଚ୍ଚ ଶ୍ରେଣୀରେ ପଢ଼ୁଥିଲେ ଓ ମୋ'ସହିତ ଯେଉଁ

ଭାଇଙ୍କର ବିବାହ ହୋଇଥିଲା, ସେ ମୋ'ଅପେକ୍ଷା କେବଳ ଗୋଟିଏ ଶ୍ରେଣୀ ଅଧିକ ଥିଲେ । ବିବାହ ଫଳରେ ଦୁହେଁ ଗୋଟିଏ ବର୍ଷ ବୃଥାରେ କଟାଇ ଦେଇଥିଲୁଁ । ମୋ'ଭାଇଙ୍କ ପକ୍ଷେ ତାହା ନିତାନ୍ତ ଖରାପ ହୋଇଥିଲା—ସେ ଏକାବେଳକେ ପଢା ଛାଡି ଦେଇଥିଲେ । କେତେଜଣ ଯୁବକ ଯେ ତାଙ୍କର ଦଶା ଭୋଗୁ ଅଛନ୍ତି, ଭଗବାନ ଜାଣନ୍ତି । ଆଜିକାଲି ହିନ୍ଦୁ ସମାଜରେ ବିବାହ ଓ ପଢ଼ା କ'ଣ ମେଳ ଖାଇପାରେ ?

ମୁଁ କିନ୍ତୁ ପଢ଼ା ଛାଡିନଥିଲି କିମ୍ବା ଉକ୍ତ ସ୍କୁଲରେ ଜଣେ ନିର୍ବୋଧ ବୋଲି ମଧ୍ୟ ଗଣ୍ୟ ହୋଇନଥିଲି । ସବୁବେଳେ ମୁଁ ଶିକ୍ଷକ ମାନଙ୍କ ଶ୍ରଦ୍ଧାର ପାତ୍ରଥିଲି । ପ୍ରତିବର୍ଷ ପିଲାମାନଙ୍କ ଅଭିଭାବକମାନଙ୍କ ଠାକୁ ସେମାନଙ୍କର ଚରିତ୍ର ଓ ପଢ଼ା ବିଷୟ ନେଇ ସୁପାରିଶ ପତ୍ର ପଠା ଯାଇଥାଏ । ମୁଁ କେବେହେଲେ ଖରାପ ପତ୍ର ପାଇନଥିଲି । ଦ୍ୱିତୀୟ ଶ୍ରେଣୀ ପାଶ କଲାପରେ ମୁଁ ଅନେକ ପୁରସ୍କାର ମଧ୍ୟ ପାଇଥିଲି ଓ ପଞ୍ଚମ ଏବଂ ଷଷ୍ଠ ଶ୍ରେଣୀରେ ୪ ଟଙ୍କା ଓ ୬ ଟଙ୍କା ଲେଖାରେ ବୃତ୍ତି ମିଳିଥିଲା । ଏଥିପାଇଁ ମୁଁ ମୋ'ର କପାଳକୁ ଯିନା ଭଲ କହିବି କିନ୍ତୁ ଧୀଶକ୍ତିକୁ ନୁହେ । କାରଣ ସେହି ବୃତ୍ତିଗୁଡିକ ସମସ୍ତଙ୍କ ସକାଶେ ଦିଆଯାଉଥିଲା—କାଥିଆବାଡ଼ର ସୁରତ୍ ଅଞ୍ଚଳରୁ ଯେଉଁ ଛାତ୍ରମାନେ ସେଠାରେ ପଢ଼ନ୍ତି ସେମାନଙ୍କ ମଧ୍ୟରୁ ଉତ୍ତମ ଛାତ୍ର ବାଛି ବୃତ୍ତିଟି ଦିଆଯାଇଥାଏ । ସେତେବେଳେ ଚାଳିଶି କିମ୍ବା ପଚାଶେ ପିଲା ଥିବା ଶ୍ରେଣୀରେ ସୁରତର ଛାତ୍ର ସଂଖ୍ୟା ବେଶି ନୁହେ ।

ମେଧା ଶକ୍ତି ବୃଦ୍ଧି କରିବା ସକାଶେ ମୁଁ ଦୃଷ୍ଟି ଦେଇନଥାଏ । ଯେତେବେଳେ ମୁଁ ପୁରସ୍କାର କିମ୍ବା ବୃତ୍ତିପାଏ ବଡ଼ ଆଶ୍ଚର୍ଯ୍ୟ ହୁଏ । କିନ୍ତୁ ଚରିତ୍ର ପ୍ରତି ମୋ'ର ବେଶି ଦୃଷ୍ଟି । ସାମାନ୍ୟ କିଛି ଦୋଷ କଲେ ମୋ'ଆଖିରୁ ଲୁହ ଗଡ଼ିପଡ଼େ । ମୁଁ ଯଦି ଦଣ୍ଡ ପାଇବା ପାଇଁ ଶିକ୍ଷକ ମହାଶୟ ନିଶ୍ଚୟ କରନ୍ତି—ସେ ମାଡ଼ ଦେବା କୁରେଥାଉ, ଟିକିଏ

ଗଣ୍ଡଗୋଳ ହେଲେ ମୁଁ ତାହା ସହ୍ୟ କରିପାରେ ନାହିଁ । ମୋ'ର ମନେଅଛି ଥରେ ବଡ଼ କଠିନ ଦଣ୍ଡ ପାଇଥିଲି । ମୁଁ ତାହା ପାଇବା ଉଚିତ ହୋଇଥିଲା ବୋଲି ସେ ବିଷୟ ନେଇ କିଛି ଭାବୁନଥିଲି—କିନ୍ତୁ କରୁଣ ଭାବରେ କାନ୍ଦିଲି । ଘଟଣାଟି ମୁଁ ପ୍ରଥମ କିମ୍ବା ଦ୍ୱିତୀୟ ଶ୍ରେଣୀରେ ଥିବା ସମୟର କଥା । ମୁଁ ସପ୍ତମ ଶ୍ରେଣୀରେ ପଢ଼ିଲା ବେଳେ ଆଉ ଗୋଟିଏ ଘଟଣା ହୋଇଥିଲା । ଡୋରାବ୍‌ଜି ଇଡ଼ୁଲ୍‌ଜି ଜିମି ସେତେବେଳେ ପ୍ରଧାନ ଶିକ୍ଷକ ଥିଲେ । ସେ ଜଣେ ଭଲ ଶାସକ, ନିୟମ ପାଳକ ଓ ଉତ୍ତମ ଶିକ୍ଷକ । ସୁତରାଂ ଛାତ୍ର ମହଲରେ ସବୁବେଳେ ତାଙ୍କର କଥାପଡ଼େ । ଉଚ୍ଚ ଶ୍ରେଣୀର ଛାତ୍ରମାନେ କ୍ରିକେଟ ଓ କସରତରେ ଯୋଗଦେବା ସକାଶେ ସେ ବାଧ୍ୟ କରିଥିଲେ । ମୁଁ ଦୁଇଟିଯାକୁ ଭଲ ପାଉନଥିଲି ଓ କ୍ରିକେଟ୍ ଏବଂ ଫୁଟବଲ ବାଧ୍ୟତାମୂଳକ ଖେଳ ହେବାଯାଏ ମୁଁ କୌଣସି ଖେଳରେ ଯୋଗ ଦେଉ ନଥାଏ । ମୋ'ର ଲଜ୍ଜାଶୀଳତା ଏହାର କାରଣ—କିନ୍ତୁ ଏବେ ଅନୁଭବ କରୁଛି, ମୁଁ ବଡ଼ ଭୁଲ କରିଥିଲି । କସରତ ସହିତ ଶିକ୍ଷାର କିଛି ସଂପର୍କ ନାହିଁ ବୋଲି ମୋ'ର ସେତେବେଳେ ଏକ ଭ୍ରାନ୍ତ ଧାରଣା ଥିଲା । କିନ୍ତୁ ମୁଁ ଏବେ ଦେଖୁଛି ଶିକ୍ଷାନିର୍ଘଣ୍ଟରେ ମାନସିକ ଶିକ୍ଷା ପାଇଁ ଯେତିକି ସମୟ ଦିଆଯାଏ, ଶାରୀରିକ ଶିକ୍ଷାପାଇଁ ମଧ୍ୟ ସେତିକି ସମୟ ହେବା ଉଚିତ ।

ସେ ଯାହାହେଉ ମୁଁ ଖେଳରୁ ଅବ୍ୟାହତି ନେଇ ମୋ'ର କିଛି କ୍ଷତି ହୋଇଥିଲା ବୋଲି ମୁଁ କହିନପାରେ । ମୁଁ କୌଣସି ପୁସ୍ତକରେ ବାହାରର ବୁଲିବାର ଉପକାରିତା ସମ୍ବନ୍ଧେ ପଢ଼ିଥିଲି ଏବଂ ସେହି ଉପଦେଶକୁ ଅନୁକରଣ କରି ବାହାରେ ବୁଲିବା ଅଭ୍ୟାସ କରିଥିଲି । ଆଜି-କାଲି ମଧ୍ୟ ମୋ'ର ସେ ଅଭ୍ୟାସ ଅଛି । ଏହିପରି ବୁଲିବା ଯୋଗୁଁ ମୋ'ର ଦେହ ଖୁବ ମଜବୁତ ହୋଇଅଛି ।

ଧାଇ ସ୍ୱରୂପ ପିତାଙ୍କୁ ସେବା କରିବା ସକାଶେ ମୋ'ର ଏକାନ୍ତ ଅନୁରାଗ ଥିବା ଯୋଗୁଁ କସରତରେ ଯୋଗ ଦେବାପାଇଁ ମୋ'ର ଇଚ୍ଛା ହୁଏନାହିଁ । ସ୍କୁଲ କାର୍ଯ୍ୟ ଭଙ୍ଗ ହେବାକ୍ଷଣି ମୁଁ ଘରକୁ ଫେରିଆସି ତାଙ୍କ ସେବା କାର୍ଯ୍ୟରେ ଲାଗେ । ବାଧ୍ୟତାମୂଳକ ବ୍ୟାୟାମ କିନ୍ତୁ ମୋ'ର ଏହି ସେବାର ଅନ୍ତରାୟ ହୋଇଥିଲା । କସରତରୁ ଅବ୍ୟାହତି ନେଲେ ମୁଁ ପିତାଙ୍କ ସେବାରେ ନିଯୁକ୍ତ ରହିବାକୁ ସମୟ ପାଇପାରିବି—ସୁତରାଂ ମୋତେ ଅବ୍ୟାହତି ଦେବା ସକାଶେ ମିଃ ଜିମିଙ୍କୁ ପ୍ରାର୍ଥନା କରି କହିଲି, ସେ କିନ୍ତୁ ନାମଞ୍ଜୁର କଲେ । ଗୋଟିଏ ଶନିବାର ଦିନ ଆମ୍ଭର ସ୍କୁଲ କାର୍ଯ୍ୟ ଥିଲା ଓ ସନ୍ଧ୍ୟା ୪ଘଣ୍ଟା ବେଳେ ଆମ୍ଭେମାନେ ସବୁ କସରତ କରି ଯିବା କଥା । ମୋ'ର ଘଡ଼ି ନଥାଏ ଏବଂ ମେଘ ଯୋଗୁଁ ସମୟ ଜାଣି ପାରିନଥିଲି, ମୁଁ ସ୍କୁଲକୁ ଗଲାବେଳକୁ ପିଲାମାନେ ସବୁ ଫେରି ଆସିଲେଣି । ପରଦିନ ମିଃ ଜିମି ଯେତେବେଳେ ଉପସ୍ଥିତ ବହି ଦେଖିଲେ, ମୋ'ର ସେଥିରେ ଅନୁପସ୍ଥିତ ସୂଚନା ମିଳିଛି । କାରଣ ପଚାରିବାରୁ ଯାହା ଘଟିଥିଲା ମୁଁ କହିଲି—ସେ ମୋତେ କିନ୍ତୁ ବିଶ୍ୱାସ କଲେ ନାହିଁ ଓ ଓ ବୋଧହୁଏ ଅଣେ କି ଦୁଇଅଣା [ମୋ'ର ଏବେ ସ୍ମରଣ ହେଉନାହିଁ] ଜରିମାନା ଦେବାକୁ କହିଲେ । ମିଥ୍ୟା କଥନ ପାଇଁ ଦଣ୍ଡ ! ତାହା ମୋତେ ଦାରୁଣ ଯନ୍ତ୍ରଣା ଦେଲା । କିପରି ମୋ'ର ନିରପରାଧର ପରିଚୟ ଦେବି ? କୌଣସି ଉପାୟ ଦେଖି ପାରିନଥିଲି—କରୁଣ ଭାବରେ କାନ୍ଦିଲି । ବୁଝିଲି ସତ୍ୟନିଷ୍ଠ ହେବାକୁ ହେଲେ ସବୁକଥାରେ ସତର୍କ ମଧ୍ୟ ହେବାକୁ ପଡ଼ିବ । ସ୍କୁଲରେ ଅସତର୍କ ହେବା ଏହା ମୋ'ପକ୍ଷେ ପ୍ରଥମ ଓ ଶେଷ ଘଟଣା । ମୋ'ର ଅଳ୍ପ ମନେ ହେଉଛି, ପରିଶେଷରେ ଜରିମାନା ନଦେବା ସକାଶେ ଅନୁମତି ମାଗି ସଫଳ ମନୋରଥ ହୋଇଥିଲି ।

ସ୍କୁଲକାର୍ଯ୍ୟ ଶେଷ ହେବା ପରେ ମୁଁ ଘରେ ରହିବା ଦରକାର ବୋଲି ପିତା ନିଜେ ପ୍ରଧାନ ଶିକ୍ଷକଙ୍କ ଠାକୁ ଲେଖିବାରୁ ମୁଁ ଖେଳରୁ ଏକାବେଳକେ ଅବ୍ୟାହତି ପାଇଲି । ଖେଳରେ ଯୋଗ ନଦେଇ ମୋ'ର କିଛି କ୍ଷତି ହୋଇନାହିଁ ସତ, କିନ୍ତୁ ଆଉ ଗୋଟିଏ କଥାରେ ଅବହେଳା କରିଥିଲି ବୋଲି ଆଜିଯାଏ ଦୁଃଖ କରୁଛି । ସୁନ୍ଦର ଅକ୍ଷର ଲେଖିବା ଶିକ୍ଷାର ଏକ ଅଙ୍ଗ ନୁହେ ବୋଲି ମୁଁ କେଉଁଠାରୁ ଶିଖିଥିଲି, ମୋ'ର ମନେ ନାହିଁ । ମୁଁ ବିଲାତ ଯିବାଯାଏ ମୋ'ର ସେହି ଧାରଣାଥିଲା । କିନ୍ତୁ ତାପରେ ବିଶେଷତଃ ଦକ୍ଷିଣ ଆଫ୍ରିକା ଅବସ୍ଥିତି ବେଳେ ସେଠାର ଯୁବକ ଓକିଲମାନଙ୍କର ସୁନ୍ଦର ସୁନ୍ଦର ଅକ୍ଷର ଦେଖି ମୋତେ ବଡ଼ ଲଜ୍ଜା ବୋଧ ହେଲା । ଏବଂ ମୋ'ର ଅବହେଳା ଲାଗି ଅନୁତପ୍ତ ହେଲି । ଯେଉଁମାନେ ଅସୁନ୍ଦର ଅକ୍ଷର ଲେଖନ୍ତି ସେମାନଙ୍କର ଶିକ୍ଷା ଅସମ୍ପୂର୍ଣ୍ଣ ବୋଲି ବିବେଚନା କରିବା ଉଚିତ ବୋଲି ମୁଁ ବୁଝିଲି । ପରେ ମୋର ଅକ୍ଷର ଭଲକରିବା ପାଇଁ କେତେ ଚେଷ୍ଟା କଲି କିନ୍ତୁ କିଛି ଫଳ ହେଲା-ନାହିଁ—ମୋ'ର ଶୈଶବର ଅବହେଳା ଆଉ ପରିବର୍ତ୍ତନ କରିପାରିଲି-ନାହିଁ । ପ୍ରତି ବାଳକ ଓ ବାଳିକା ମୋ'ର ଦୃଷ୍ଟାନ୍ତରୁ ବୁଝି ନିଅନ୍ତୁ ଯେ, ସୁନ୍ଦର ହସ୍ତଲିପି ଶିକ୍ଷାର ନିତାନ୍ତ ଆବଶ୍ୟକ ଅଙ୍ଗ । ମୁଁ ଏବେ ଭାବୁଛି ପିଲାମାନେ ଅକ୍ଷର ଲେଖିବା ଶିଖିବା ପୂର୍ବରୁ ମାନଚିତ୍ର ଲେଖିବା ଶିକ୍ଷା କରିବା ଉଚିତ । ପକ୍ଷୀ ପ୍ରଭୃତି ନାନା ପ୍ରକାର ଜିନିଷ ଦେଖି ପିଲା ଯେପରି ତାହା ସବୁ ଜାଣିଯାଏ ସେହିପରି ଅକ୍ଷର ଦେଖି ଶିକ୍ଷା କରୁ ଏବଂ ପଦାର୍ଥର ଚିତ୍ର ଲେଖିବା ଶିକ୍ଷା କଲାପରେ ହସ୍ତଲିପି ଲେଖିବା ଶିକ୍ଷାକରୁ । ସେତେ-ବେଳେ ସେ ସୁନ୍ଦର ଓ ଗୋଟିଏ ଧରଣର ହସ୍ତଲିପି ଲେଖିପାରିବ ।

ମୋ'ସ୍କୁଲ ଜୀବନର ଆଉ ଦୁଇଟି ସ୍ମୃତି ଏଠାରେ ଉଲ୍ଲେଖ ଯୋଗ୍ୟ । ବିବାହ ଲାଗି ମୋର ଗୋଟିଏ ବର୍ଷ ବୃଥାରେ କଟିଥିଲା କିନ୍ତୁ ଶିକ୍ଷକ

ମହାଶୟ ମୋତେ ଉପର କ୍ଲାସକୁ ନେଇ ବର୍ଷଟା ବୃଥା କରାଇ ନଥିଲେ । ଏପରି ସୁଯୋଗ ସାଧାରଣତଃ କେବଳ ପରିଶ୍ରମୀ ଛାତ୍ରମାନଙ୍କୁ ଦିଆ ଯାଇଥାଏ । ସୁତରାଂ ତୃତୀୟ ଶ୍ରେଣୀରେ ମୁଁ ଛଅ ମାସ ପାଇଁ କେବଳ ଥିଲି ଏବଂ ଗ୍ରୀଷ୍ମାବକାଶରେ ଯେଉଁ ପରୀକ୍ଷା ହେଲା ସେତେବେଳେ ମୋତେ ଚତୁର୍ଥ ଶ୍ରେଣୀକୁ ନେଇଥିଲେ । ଚତୁର୍ଥ ଶ୍ରେଣୀଠାରୁ ଅନେକ ବିଷୟ ଇଂରେଜ ଭାଷାରେ ପଢ଼ାଗଲା । ମୋତେ ସମୁଦ୍ରରେ ପଶିଲା ପରି ଲାଗିଲା, ଯାମିତି ଗୋଟିଏ ନୂଆଁ ପାଠ ଯୋଗୁଁ ସେଥିରେ ମୁଁ ବଡ଼ ଦୁର୍ବଳ ଥିଲି ଏବଂ ଇଂରେଜୀରେ ପଢ଼ା ହେଉଥିବା ଯୋଗୁଁ ତାହା କଠିନତର ହୋଇ ପଡ଼ିଲା । ଶିକ୍ଷକ ମହାଶୟ ବିଷୟଟି ଭଲ ପଢ଼ାନ୍ତି ସତ, କିନ୍ତୁ ମୁଁ କିଛି ବୁଝିପାରେ ନାହିଁ, ଅନେକ ସମୟରେ ହତୋତ୍ସାହ ହୋଇ ତୃତୀୟ ଶ୍ରେଣୀକୁ ପୁନରପି ପଳାଇବା ପାଇଁ ଭାବନା କରୁଥାଏ । ଦୁଇବର୍ଷର ପାଠ ଗୋଟିଏ ବର୍ଷରେ ଶେଷ କରିବା ଚେଷ୍ଟା କେବଳ ବାମନ ହୋଇ ଚନ୍ଦ୍ରଙ୍କୁ ଧରିବା ଚେଷ୍ଟା ବୋଲି ମୁଁ ଭାବୁଥିଲି । କିନ୍ତୁ ତଦ୍ଦ୍ୱାରା ମୋ'ର କେବଳ ଯେ ଅପମାନ ହେବ ତାହାନୁହେଁ, ଶିକ୍ଷକ ମହାଶୟ ଯେ ମୋ'ର ପରିଶ୍ରମ ଦେଖି ମୋତେ ଉପରକୁ ଉଠାଇ ଅଛନ୍ତି ସେମଧ୍ୟ ଅପମାନିତ ହେବେ— ଏହି ଭୟରେ ମୁଁ ଆଉ ତୃତୀୟ ଶ୍ରେଣୀକୁ ଯିବା ଇଚ୍ଛା କଲିନାହିଁ । ସେ ଯାହାହେଉ ଅତି କଷ୍ଟରେ ମୁଁ ୟୁକ୍ଲିଡ଼ଙ୍କ ତ୍ରୟୋଦଶ ନିୟମ ପର୍ଯ୍ୟନ୍ତ ପଢ଼ିପାରିଥିଲି—ବିଷୟଟି କପର ନିତାନ୍ତ ସରଳ ତାହା ମୋତେ ହଠାତ୍ ଜଣାଗଲା । ଯେଉଁ ବିଷୟରେ ଜଣକର ସାଧାରଣ ଭାବନା ଶକ୍ତି କେବଳ ଦରକାର ହୁଏ, ତାହା ଶିଖିବା ପାଇଁ କଷ୍ଟ ହୁଏନାହିଁ । ସେହି ଦିନଠାରୁ ଯାମିତି ମୋ'ପକ୍ଷେ ସହଜ ଓ ଚିତ୍ତାକର୍ଷକ ହେଲା ।

ଯାମିତି ଅପେକ୍ଷା ସଂସ୍କୃତ ବେଶି ନଥାଏ କିନ୍ତୁ ସଂସ୍କୃତରେ ସବୁ ଘୋଷିବାକୁ ହେବ ବୋଲି ମୁଁ ଭାବିଥିଲି । ଏହା ମଧ୍ୟ ଚତୁର୍ଥ

ଶ୍ରେଣୀରୁ ପଢ଼ାଗଲା । ମୁଁ ଯେତେବେଳେ ଷଷ୍ଠ ଶ୍ରେଣୀକୁ ଯାଏ ସଂସ୍କୃତ ପଢ଼ା ଛାଡ଼ିଦେଲି । କିନ୍ତୁ ପଣ୍ଡିତ ମହାଶୟ ସହଜରେ ଛାଡ଼ିବା ବ୍ୟକ୍ତି ନୁହନ୍ତି । ଏବଂ କୁଆଡେଁ ବାହୁଡ଼ି କଥା ପିଲାଙ୍କ ମସ୍ତିଷ୍କରେ ପୂରାଇବା ତାଙ୍କର ଯେପରି ଅଭିଳାଷ ବୋଲି ମୁଁ ଭାବିଲି । ସେତେବେଳେ ସଂସ୍କୃତ ଓ ପାରସୀ ପଣ୍ଡିତଙ୍କ ମଧ୍ୟରେ ମନୋମାଳିନ୍ୟ ହୋଇଥାଏ । ପାରସ୍ୟ ପଣ୍ଡିତ ବଡ଼ ଧୀର, ପିଲାମାନଙ୍କୁ ଭଲ ଦେଖନ୍ତି ଏବଂ ପାରସୀ ଭାଷା ବଡ଼ ସରଳ ବୋଲି ପିଲାଙ୍କ ମହଲରେ କଥାବାର୍ତ୍ତା ଲାଗେ । ପାରସୀ ଭାଷାର ସରଳତା ମୋତେ ଭୁଲାଇଥିଲା--ଏବଂ ଦିନେ ମୁଁ ଯାଇ ପାରସ୍ୟ ପଣ୍ଡିତଙ୍କ କ୍ଲାସରେ ବସିଲି । ସଂସ୍କୃତ ପଣ୍ଡିତଙ୍କୁ ତାହା ବଡ଼ ବାଧିଲା । ସେ ଦିନେ ମୋତେ ତାଙ୍କ ନିକଟକୁ ଡାକି କହିଲେ, "ତୁମର ଜନ୍ମ ଜଣେ ପରମାର୍ଥ ପିତାଙ୍କ-ଠାରୁ, ଏହା କପରି ପାସୋରିବ ? ତୁମ ଧର୍ମର ଭାଷା କ'ଣ ଶିଖିବ ନାହିଁ ? ତୁମର ମନ୍ଦ କଷ୍ଟ ବୁଝିବାପାଇଁ ଥାଏ, ମୋନିକଟକୁ ଆସୁନାହିଁ କାହିଁକି ? ଶକ୍ତି ଅନୁସାରେ ତୁମମାନଙ୍କୁ ସଂସ୍କୃତ ପଢ଼ାଇବା ମୋ'ର ଇଚ୍ଛା । ତୁମେମାନେ ପଢ଼ି ପଢ଼ି ଦେଖିବ ସଂସ୍କୃତରେ ଅନେକ ଚିତ୍ତାକର୍ଷକ ବିଷୟ ଅଛି । ଧୈର୍ଯ୍ୟଚ୍ୟୁତ ହେବା ଉଚିତ ନୁହେ । ଆସ ସଂସ୍କୃତ କ୍ଲାସରେ ପୁନରପି ବସ",—ଏହା ଶୁଣି ମୁଁ ବଡ଼ ଲଜ୍ଜିତ ହେଲି । ମୋ'ପ୍ରତି ତାହାଙ୍କର ଯେ ସ୍ନେହ ତାକୁ ମୁଁ ଅମାନ୍ୟ କରିପାରିଲି ନାହିଁ, କୃଷ୍ଣଚନ୍ଦ୍ର ପାଣ୍ଡ୍ୟଙ୍କଠାରେ ମୁଁ କୃତଜ୍ଞ । ମୁଁ ସେହି ସମୟରେ ଯେଉଁ ସାମାନ୍ୟ କିଛି ସଂସ୍କୃତ ଶିଖିଥିଲି, ତାହା ଯଦି କରି ନଥାନ୍ତି ଆମ୍ଭର ଧର୍ମ ସମ୍ବନ୍ଧ କୌଣସି ପୁସ୍ତକରେ ମୋ'ର ଆଦୌ ଆଦର ରହିନଥାନ୍ତା । ବିଶେଷ ଭାବେ ସଂସ୍କୃତ ପଢ଼ିପାରିଲି ନାହିଁ ବୋଲି ମୁଁ ଅନୁତାପ କରୁଛି । ସଂସ୍କୃତରେ ଉତ୍ତମ ଶିକ୍ଷା ପାଇବା ଉଚିତ ।

ମୁଁ ଭାବୁଛି ଭାରତରେ ଉଚ୍ଚଶିକ୍ଷା ମଧ୍ୟରେ ମାତୃଭାଷାକୁ ବାଦ୍

ହେଲେ, ହିନ୍ଦି, ପାରସ୍ୟ, ସଂସ୍କୃତ ଆରବି ଓ ଇଂରେଜି ଭାଷା ମଧ୍ୟ ରହିବା ଉଚିତ । ଏହା ଗୋଟିଏ ଲମ୍ବା ତାଲିକା ବୋଲି କେହି ଭୟ କରିବା ଉଚିତ ନୁହେ । ଆମ୍ଭର ଶିକ୍ଷା ଯଦି ବିଧିବଦ୍ଧ ହୋଇଥାନ୍ତା, ଓ ଆମ୍ଭର ଛାତ୍ରମାନେ ଯଦି ବୈଦେଶିକ ଭାଷା ସାହାଯ୍ୟରେ ଶିକ୍ଷା ଗ୍ରହଣ କରୁ ନଥାନ୍ତେ, ତାହାହେଲେ ମୋ'ର ବିଶ୍ୱାସ ଏହି ସବୁ ବିଷୟ ଗୁଡ଼ିକ ଶିକ୍ଷା କରିବା ପାଇଁ କଷ୍ଟ ହୁଅନ୍ତା ନାହିଁ— ଆମୋଦର କଥା ହୁଅନ୍ତା । ଗୋଟିଏ ଭାଷାରେ ବିଧିବଦ୍ଧ ଭାବେ ଶିକ୍ଷା ପାଇଲେ ଆଉ ଅନ୍ୟାନ୍ୟ ଭାଷା ଶିକ୍ଷା କରିବା ପାଇଁ ବଡ଼ ସହଜ ବୋଧହୁଏ ।

ବାସ୍ତବିକ କହିବାକୁ ଗଲେ ହିନ୍ଦି, ଗୁଜରାଟୀ ଓ ସଂସ୍କୃତ ଗୋଟିଏ ଧରଣର ଭାଷା, ପାରସ୍ୟ ଓ ଆରବ ମଧ୍ୟ ଅନ୍ୟ ଏକ ରକମର । ପାରସ୍ୟ ଓ ସଂସ୍କୃତ, ଆରବ ଓ ହିବ୍ରୁ ଭାଷା ଠାରୁ ଭିନ୍ନ ହେଲେହେଁ ପାରସ୍ୟ ଓ ଆରବ ଭାଷା ମଧ୍ୟରେ ବେଶି ସାମଞ୍ଜସ୍ୟ ଅଛି, କାରଣ ସେମାନଙ୍କର ଉତ୍ପତ୍ତି ସ୍ଥଳ ଏକ—ଇସ୍‌ଲାମର ଉତ୍ପତ୍ତି ସଙ୍ଗେ ସଂପୃକ୍ତ । ଉର୍ଦ୍ଦୁ ଏକ ସ୍ୱତନ୍ତ୍ର ଭାଷା ବୋଲି ମୁଁ ଭାବୁନାହିଁ, କାରଣ ତା'ର ବ୍ୟାକରଣ ହିନ୍ଦି ବ୍ୟାକରଣ ସଦୃଶ୍ୟ ଓ ଭାଷା କେବଳ ଆରବ ଓ ପାରସ୍ୟ । ଯଦି କେହି ଭଲ ଉର୍ଦ୍ଦୁ ଭାଷା ଶିଖିବା ପାଇଁ ଇଚ୍ଛା କରନ୍ତି ତାହାହେଲେ ସେ ପ୍ରଥମେ ପାରସ୍ୟ ଓ ଆରବ ଶିଖିବାକୁ ହୁଏ ଓ ଗୁଜରାଟୀ, ହିନ୍ଦି, ବଙ୍ଗାଳି କିମ୍ବା ମରହଟି ଶିଖିବାକୁ ହେଲେ ପ୍ରଥମେ ସଂସ୍କୃତ ଶିଖିବାକୁ ହୋଇଥାଏ ।

## ଷଷ୍ଠ ପରିଚ୍ଛେଦ ।

( ଶୋକାନ୍ତ ନାଟକ )

ମୁଁ ପୂର୍ବେ କହିଅଛି ଉଚ୍ଚ ବିଦ୍ୟାଳୟରେ ମୋ'ର ଅଳ୍ପ ଅନ୍ତରଙ୍ଗ ବନ୍ଧୁ ଥିଲେ । ସେମାନଙ୍କ ସଂଖ୍ୟା କେବଳ ଦୁଇଟି ମାତ୍ର ।

ସେଥିମଧ୍ୟରୁ ଜଣଙ୍କର ବନ୍ଧୁତା ବେଶି ଦିନ ରହିନଥିଲା; ତଥାପି ମୁଁ ଉକ୍ତ ବନ୍ଧୁଙ୍କୁ ଛାଡ଼ି ନଥିଲି । ମୁଁ ଅନ୍ୟ ଜଣଙ୍କ ସହିତ ବନ୍ଧୁତା ରଖିଲି ବୋଲି ସେ ମୋ'ର ସ୍ନେହ ପରିହାର କରିଥିଲେ । ଏହି ବନ୍ଧୁତା ଲାଗି ମୋ ଜୀବନରେ ଏକ ଶୋକପୂର୍ଣ୍ଣ ନାଟକର ଅଭିନୟ ଦେଖା ଯାଇଛି ବୋଲି ମୁଁ ମନେକରେ । ସଂସ୍କାରକ ଭାବ ପ୍ରଣୋଦିତ ହୋଇ ମୁଁ ତାଙ୍କ ସହିତ ବନ୍ଧୁତା ସ୍ଥାପନ କରିଥିଲି । ସେ ପ୍ରଥମେ ମୋ ବଡ଼ ଭାଇଙ୍କର ବନ୍ଧୁ ଓ ସହାଧ୍ୟାୟୀ ଥିଲେ । ମୁଁ ତାଙ୍କର ସର୍ବପ୍ରକାର ଦୁର୍ବଳତା ଜାଣି ଥିଲେହେଁ ତାଙ୍କୁ ଜଣେ ବିଶ୍ୱାସୀ ବନ୍ଧୁ ବୋଲି ମନେ କରିଥିଲି । ମୁଁ ଅସତ୍ ସଙ୍ଗ କରୁଛି ବୋଲି ମୋ'ର ମାଆ, ଜ୍ୟେଷ୍ଠ ଭାଇ ଓ ସ୍ତ୍ରୀ ମୋତେ କେତେ ସତର୍କ କରାଇଥିଲେ । ପତିତ୍ୱ ଗର୍ବରେ ମତ୍ତହୋଇ ପତ୍ନୀଙ୍କ କଥା ଶୁଣିବା ପାଇଁ ମୁଁ ଇଚ୍ଛା କରିନଥିଲି । ମାଆଙ୍କ କଥା ଏଡିବା ମୋ'ପକ୍ଷେ ଅସମ୍ଭବ ଓ ଜ୍ୟେଷ୍ଠଭାଇଙ୍କ କଥା ଶୁଣିବା ପାଇଁ ବାଧ୍ୟଥିଲି ସତ, କିନ୍ତୁ ସେମାନଙ୍କ ସହି ଯୁକ୍ତିତର୍କ କରି କହିଲି—"ତାଙ୍କଠାରେ ଯେଉଁ ଦୁର୍ବଳତା ଅଛି ବୋଲି ତୁମେମାନେ କହୁଛ ମୁଁ ତାହା ଜାଣିଛି; କିନ୍ତୁ ତାଙ୍କର ଭଲ ଗୁଣ ସମ୍ବନ୍ଧେ ତୁମେମାନେ କିଛି ଜାଣିନାହିଁ । ତାଙ୍କୁ ସଂସ୍କାର କରିବା ମୋ'ର ବନ୍ଧୁତାର ଉଦ୍ଦେଶ୍ୟ । ସୁତରାଂ ସେ ମୋତେ ବିପଥଗାମୀ କରାଇ ପାରିବେ-ନାହିଁ । ମୁଁ ଜାଣେ ସେ ଯଦି ତାଙ୍କର ବ୍ୟବହାର ସବୁ ସଂସ୍କାର କରନ୍ତି, ସେ ଜଣେ ଉତ୍ତମ ଲୋକ ବୋଲି ବିବେଚିତ ହେବେ । ମୋ'ଲାଗି ତୁମେମାନେ ଯେପରି ଅଧୀର ନହୁଅ ସେଥିପାଇଁ ମୁଁ ପ୍ରାର୍ଥନା କରେ" । ଏହା ସେମାନଙ୍କୁ ତୃପ୍ତିକର ହେଲା କିନା ମୁଁ କହିନପାରେ; କିନ୍ତୁ ମୋ'ର ଏହି କୈଫିୟତ ସେମାନେ ଗ୍ରହଣ କଲେ ଓ ମୁଁ ଯାହା କଲେହେଁ କିଛି କହିଲେ ନାହିଁ ।

ସେହି ଦିନଠାରୁ ଦେଖିଲି ମୁଁ ତାଙ୍କୁ ଭୁଲ ଭାବରେ କଳନା କରିଛି । ଜଣେ ସଂସ୍କାରକ ସମୁଦ୍ର ଗର୍ଭରେ ପ୍ରବେଶ କରିବା ଉଚିତ ନୁହେ । ଯାହାକୁ

ସଂସ୍କାର କରିବାକୁ ସେ ଯାଏ, ତାହା ସହିତ ଅନ୍ତରଙ୍ଗ ବନ୍ଧୁତା ସ୍ଥାପନ କରିବା ଅନୁଚିତ । ଦୁଇ ଆତ୍ମାର ସାମ୍ୟରେହିଁ ପ୍ରକୃତ ବନ୍ଧୁତା—ତାହା କିନ୍ତୁ ଜଗତରେ ବିରଳ । ସମସ୍ୱଭାବ ମଧ୍ୟରେ କେବଳ ପ୍ରକୃତ ଓ ବହୁ-ଦିନବ୍ୟାପୀ ବନ୍ଧୁତା ରହିପାରେ କିନ୍ତୁ ବନ୍ଧୁମାନେ ବିନମୟରେ ନିଜ ନିଜ ସ୍ୱଭାବର କିଛି ଅଂଶ ଦେଇଥାନ୍ତି । ସୁତରାଂ ଯେଉଁଠାରେ ବନ୍ଧୁତା ସେଠାରେ ସଂସ୍କାରର ସୁବିଧା ଅତିଅଳ୍ପ । ମୁଁ ଭାବୁଛି ସବୁ ପ୍ରକାର ବନ୍ଧୁତା ପରିହାର କରିବା ଉଚିତ, କାରଣ ମନୁଷ୍ୟ ସହଜରେ ସତ୍ କଥା ପରି-ତ୍ୟାଗ କରି ଅସତ୍ କଥା ଗ୍ରହଣ କରିଥାଏ । ଏବଂ ଯେ ଭଗବାନଙ୍କୁ ପାଇବା ପାଇଁ ଇଚ୍ଛା କରେ, ସେ ହୁଏତ ଏକାକୀ ରହିବାକୁ ହେବ, ନତୁବା ସମଗ୍ର ଜଗତକୁ ବନ୍ଧୁରୂପେ ଗ୍ରହଣ କରିବାକୁ ହେବ । ମୋ'ର ଏହା ଭୁଲ ହୋଇପାରେ କିନ୍ତୁ ମୁଁ ଜଣଙ୍କୁ ଅନ୍ତରଙ୍ଗ ବନ୍ଧୁ ସ୍ୱରୂପ ପାଇବା ପାଇଁ ଚେଷ୍ଟାକରି ବିଫଳ ମନୋରଥ ହୋଇଥିଲି ।

ମୁଁ ଏହି ବନ୍ଧୁଙ୍କ ସଂସ୍ରବରେ ଆସିଲା ବେଳକୁ "ସଂସ୍କାର ଆନ୍ଦୋଳନ" ତରଙ୍ଗରେ ରାଜକୋଟ ଗୋଟାଯାକ ଭାସି ଯାଉ ଥିଲା । ସେ ମୋତେ କହିଲେ ଯେ ଆମର ଶିକ୍ଷକମାନଙ୍କ ମଧ୍ୟରୁ ଅନେକେ ଗୋପନରେ ମାଂସ ଭକ୍ଷଣ ଓ ସୁରାପାନ କରୁଅଛନ୍ତି । ରାଜକୋଟର ଆହୁରି ଅନେକ ନାମଜାଦା ଲୋକ ସେହି ଶ୍ରେଣୀଭୁକ୍ତ ହୋଇସାରି ଅଛନ୍ତି । ଉଚ୍ଚ ବିଦ୍ୟାଳୟର କେତେ ଛାତ୍ର ମଧ୍ୟ ସେଥିରେ ଯୋଗଦେଇ ସାରି ଲେଣି । ଏହା ଶୁଣି ମୁଁ ବଡ଼ ଆଶ୍ଚର୍ଯ୍ୟାନ୍ୱିତ ଓ ଦୁଃଖିତ ହେଲି । ମୁଁ ଏସବୁର କାରଣ ଯେତେବେଳେ ତାଙ୍କୁ ପଚାରିଲେ ସେ କହିଲେ ଯେ, "ମାଂସ ନଖାଇବାରୁ ଆମ୍ଭେମାନେ ବଡ ଦୁର୍ବଳ ହୋଇ ପଡ଼ିଅଛେ । ଇଂରେଜ-ମାନେ ଆମ୍ଭମାନଙ୍କୁ ଶାସନ କରୁଅଛନ୍ତି କେବଳ ସେମାନେ ମାଂସଭୋଜୀ ବୋଲି । ତୁମ୍ଭେ ଜାଣ ମୁଁ କିପରି ମଜବୁତ୍ ଓ କିପରି ଶୀଘ୍ର ଧାଇଁପାରେ,

ତାହାର କାରଣ ହେଉଛି ମୋ'ର ମାଂସ ଭୋଜନ । ମାଂସଭୋଜକମାନଙ୍କର ଫୋଟା ଘଉଡ଼ ହୁଏନାହିଁ । ଯଦି ଅକସ୍ମାତ୍ କେବେହୁଏ ତାହା ଅତଶୀଘ୍ର ଭଲ ହୋଇଯାଏ । ଆମ୍ଭର ଶିକ୍ଷକମାନେ ଓ ଅନ୍ୟାନ୍ୟ ନାମଜାଦା ଲୋକମାନେ ଯେ ମାଂସ ଭକ୍ଷଣ କରନ୍ତି, ସେମାନେ କଛି ଅତଭୁର ନୁହନ୍ତି । ତାହାର ଉପକାରତା ସେମାନେ ବୁଝି ପାର ଅଛନ୍ତି । ତୁମ୍ଭେ ମଧ୍ୟ ସେମାନଙ୍କ ପରି ମାଂସ ଖାଇବାକୁ ହେବ । ସେଥିଲାଗି ଚେଷ୍ଟା କରବା ପାଇଁ ବୋଲ କହୁଛନାହିଁ । ଦେଖିବ ତାହା କପରି ତୁମ୍ଭଙ୍କୁ ହୃଷ୍ଟପୁଷ୍ଟ କରିବ ।" ଏସବୁ ଯୁକ୍ତି ଗୋଟିଏ ଥର ମୋତେ କୁହାଯାଇ ନଥିଲା । ମୋତେ ତାଙ୍କ ଶ୍ରେଣୀଭୁକ୍ତ କରବା ପାଇଁ ମୋ'ର ବନ୍ଧୁ ଯେ କେତେ ଯୁକ୍ତିତର୍କ କରୁଥିଲେ ଏହା ସେ ସବୁର ସାରାଂଶ ମାତ୍ର । ମୋ'ବଡ଼ ଭାଇ ତାଙ୍କ କଥାରେ ଭୁଲି ଯାଇଥିଲେ । ସୁତରାଂ ବନ୍ଧୁଙ୍କ କଥାକୁ ସେ ସମର୍ଥନ କଲେ । ବାସ୍ତବକ ମୁଁ ମୋ'ର ଭାଇ ଓ ବନ୍ଧୁଙ୍କ ଆଗରେ ବଡ଼ ଦୁର୍ବଳ ଦିଶୁଥିଲି । ସେ ଦୁହେଁ ମୋ' ଅପେକ୍ଷା ବଡ଼ ମଜବୁତ୍ ହୃଷ୍ଟପୁଷ୍ଟ ଓ ସାହସୀ । ଏହି ବନ୍ଧୁଙ୍କ ଅସାଧାରଣ କାର୍ଯ୍ୟ ସବୁ ମୋତେ ଯେପରି ବିମୋହିତ କରି ପକାଇଲା । ସେ ଅସାଧାରଣ ଗତିରେ ଅନେକ ଦୂର ଧାଇଁ ପାରୁଥିଲେ । ବହୁ ଉଚ୍ଚରୁ ଓ ବହୁ ଦୂର ପର୍ଯ୍ୟନ୍ତ ଡେଇଁବାରେ ସେ ବଡ଼ ଧୁରିଣ । ଯେତେ କଠିନ ଦଣ୍ଡ ପାଇଲେହେଁ ସେ ତାହା ସହ୍ୟ କରି ପାରୁଥିଲେ । ସେ ଅନେକ ସମୟରେ ତାଙ୍କର ଅସାଧାରଣ କାର୍ଯ୍ୟସବୁ ମୋ' ଆଗରେ ଦେଖାଇ ଥାନ୍ତି । ଏହା ଫଳରେ ତାଙ୍କ ପରି ହେବା ପାଇଁ ମୋ'ର ବଳବତୀ ଆକାଂକ୍ଷା ରହିଲା । ମୁଁ ଆଦୌ ଧାଇଁ କମ୍ବା ଡେଇଁ ପାରୁନଥିଲି । ମୁଁ କାହିଁକି ଏହି ବନ୍ଧୁଙ୍କ ପରି ନହେବି? ଏହା ମୋ ମନରେ ଖେଳିବାକୁ ଲାଗିଲା ।

ଆଉ ଗୋଟିଏ କଥା—ମୁଁ ବଡ଼ ଭୟାଳୁ ଥିଲି । ଚୋର ଭୂତ

ଓ ସାପର ଭୟ ମୋ'ଠାରେ ସତେ ଯେପରି ଘର କରିଥାଏ । ସୁତରାଂ ରାତ୍ରି ଘର ଭିତରୁ ପଦାକୁ ବାହାରିବା ପାଇଁ ମୋ'ର ସାହସ ହୁଏନାହିଁ । ଅନ୍ଧାର ହେଲେ ମୁଁ ଭୟରେ ଅଧୀର ହୁଏ । ଅନ୍ଧାରରେ ଶୋଇବା ମୋ'ପକ୍ଷେ ଅସମ୍ଭବ । ମୁଁ ଭାବୁଥିଲି ଯେ ଭୂତ ଗୁଡ଼ାକ ସବୁ ଗୋଟିଏ ଦିଗରୁ, ଚୋରମାନେ ଅନ୍ୟ ଦିଗରୁ ଓ ସାପ ଗୁଡ଼ାକ ତୃତୀୟ ଦିଗରୁ ଯେପରି ଆସୁଅଛନ୍ତି । ବିନା ଆଲୋକରେ ମୁଁ ଗୋଟିଏ ବଖରାରେ ଶୋଇ ପାରୁ ନଥିଲି । ନିକଟ-ଶାୟିତା ପତ୍ନୀଙ୍କୁ ମୋ'ର ଭୟ ସମ୍ବନ୍ଧେ ମୁଁ ବା କିପରି ମୁକ୍ତ କଣ୍ଠରେ କହିପାରନ୍ତି ? ମୁଁ ଜାଣିଥିଲି ମୋ'ଅପେକ୍ଷା ତାଙ୍କର ଧୈର୍ଯ୍ୟ ବେଶି ସୁତରାଂ ମୁଁ ନିଜକୁ ବଡ଼ ଲଜ୍ଜିତ ମନେ କରୁଥିଲି । ଭୂତ ଓ ସାପ ବୋଲି ତାଙ୍କର ଆଦୌ ଭୟ ନଥିଲା । ଅନ୍ଧାରରେ ସେ ସବୁଠାକୁ ଯାଇ ପାରୁଥିଲେ । ମୋ'ର ଏ ଦୁର୍ବଳତା ସମ୍ବନ୍ଧେ ଉକ୍ତ ବନ୍ଧୁ ସବୁ ଜାଣିଥିଲେ । ସେ ମୋତେ କହୁଥାନ୍ତି ଯେ ସେ ଜୀଅନ୍ତା ସାପ ହାତରେ ଧରି ପାରିବେ, ଚୋରମାନଙ୍କ ସହିତ ଲଢ଼ି ପାରିବେ ଓ ଭୂତ ପ୍ରେତରେ ତାଙ୍କର ବିଶ୍ୱାସ ନାହିଁ, ଏବଂ ଏହା ସବୁ ମାଂସ ଭକ୍ଷଣର ଫଳ ।

ଏସବୁ ଯୁକ୍ତିର ଫଳରେ ମୁଁ ହାର ମାନିଲି । ମାଂସ ଭୋଜନ ଅତି ଉତ୍ତମ, ତାହା ମୋତେ ମଜବୁତ୍ ଓ ସାହସୀ କରିବ ଓ ଯଦି ସମଗ୍ର ଦେଶ ମାଂସ ଭୋଜନ କରନ୍ତି ତାହାହେଲେ ଇଂରେଜମାନେ ପରାସ୍ତ ହେବେ, ଏହି ଭାବ ମୁଁ ମନରେ ପୋଷଣ କରିବାକୁ ଲାଗିଲି ।

ମାଂସ ଭୋଜନ କରିବା ପାଇଁ ଗୋଟିଏ ଦିନ ନିଶ୍ଚୟ କଲୁଁ । ନୂତନ ସଂସ୍କାର ଆରମ୍ଭ କରିବା ପାଇଁ କାହିଁକି ଯେ ଏକ ଦିନ ନିର୍ଦ୍ଧାରିତ ହେଲା, ତାହା ଅନେକ ବୁଝି ନପାରନ୍ତି । ଗାନ୍ଧୀ ବଂଶ ପରମାର୍ଥ ଥିଲେ । ବିଶେଷତଃ ମୋ'ର ଅଭିଭାବକମାନଙ୍କର ବୈଷ୍ଣବ ଧର୍ମରେ ବଡ଼ ବିଶ୍ୱାସ । ପ୍ରତିଦିନ ସେମାନେ 'ହାବେଲି'କୁ ଯାଉଥାନ୍ତି । ଘରବାରିର ଭିନ୍ନ

ଦେବାଳୟ ମଧ୍ୟ ଥାଏ । ଗୁଜରାଟରେ ଜୈନ ଧର୍ମର ପ୍ରାବଲ୍ୟ ମଧ୍ୟ ବେଶି । ସବୁବେଳେ ଓ ସବୁଠାରେ ଉକ୍ତ ଧର୍ମର ସଂସ୍ରବରେ ଆସିବାକୁ ହୋଇଥାଏ । ମାଂସ ଭକ୍ଷଣ ପାଇଁ ଗୁଜରାଟର ଜୈନ ଓ ବୈଷ୍ଣବ ସମ୍ପ୍ରଦାୟରେ ଯେପରି ପ୍ରତିରୋଧ ଓ ଘୃଣା, ଭାରତରେ କିମ୍ବା ଭାରତ ବାହାରେ କୌଣସିଠାରେ ସେପରି ନାହିଁ । ଏହିପରି କୌଳିକ ପ୍ରଥାରେ ମୋ'ର ଜନ୍ମ ଓ ପ୍ରତିପାଳନ ଏବଂ ମୁଁ ମୋର ପିତା ମାତାଙ୍କଠାରେ ଏକାନ୍ତ ଅନୁରକ୍ତ ଥିଲି । ମୁଁ ମାଂସ ଖାଇବା କଥା ସେମାନେ ଯେଉଁ ମୁହୂର୍ତ୍ତିରେ ଜାଣିବେ, ପ୍ରାଣ ଛାଡ଼ିଦେବେ ବୋଲି ମୁଁ ଜାଣିଥିଲି । ଜ୍ଞାତ କିମ୍ବା ଅଜ୍ଞାତ ଭାବରେ ମୁଁ ସତ୍ୟର ଦାସ ଥିଲି । ତଥାପି ମୁଁ ଯଦି ମାଂସ ଭକ୍ଷଣ କରେ ତାହାହେଲେ ପିତା ମାତାଙ୍କୁ ଠକିବାକୁ ହେବ ବୋଲି ମୁଁ ଜାଣିଥିଲି କି ନା କହି ନପାରେ । ତାହା ରସନା ପରିତୃପ୍ତିର ବିଷୟ ମଧ୍ୟ ନୁହେ । ମୁଁ ଭାବିଥିଲି ତାହା ବଡ଼ ରୁଚିକର । ମୁଁ ଯେପରି ମଜବୁତ୍ ଓ ସାହସୀ ହେବାକୁ ମନେ କରିଥିଲି ଦେଶବାସୀ ମଧ୍ୟ ସେପରି ହୁଅନ୍ତୁ ଏହା ମୋ'ର ଏକାନ୍ତ ଇଚ୍ଛାଥିଲା । ତାହାହେଲେ ଇଂରେଜମାନଙ୍କୁ ପରାସ୍ତ କରି ଭାରତକୁ ପର ହସ୍ତରୁ ମୁକ୍ତ କରିଦେବ ବୋଲି ମୋ'ର ଅଭିଳାଷ । 'ସ୍ୱରାଜ' ବୋଲିବା ଶବ୍ଦଟି ମୁଁ ଶୁଣି ନଥିଲି । ସଂସ୍କାରର ଉନ୍ମାଦ ମୋତେ ଅନ୍ଧ କରି ପକାଇ ଥିଲା । ମୁଁ ନିଜକୁ ସମ୍ପୂର୍ଣ୍ଣରୂପେ ପରୋର ପକାଇଥିଲି ।



## ସପ୍ତମ ପରିଚ୍ଛେଦ ।

( ଶୋକାନ୍ତ ନାଟକ )

ମାଂସ ଖାଇବା ଦିନ ଆସିଲା । ମୋ'ର ସେ ଦିନର ଅବସ୍ଥା ସମ୍ପୂର୍ଣ୍ଣରୂପେ ବର୍ଣ୍ଣନା କରିବା କଠିନ । ଏକ ଆଡ଼େ ସଂସ୍କାର ଲାଗି ଏକାନ୍ତ

ଅନୁରାଗ ଓ ଜୀବନରେ ଅଦ୍ଭୁତ ପରିବର୍ତ୍ତନର ନୂତନତ୍ୱ; ପକ୍ଷାନ୍ତରେ ମାଂସ ଖାଇବା ପାଇଁ ହେଲେ ଚୋରପରି ଲୁଚାଇ ଖାଇବାକୁ ହେବ । ଦୁଇ କଥା ମଧ୍ୟରୁ କିଏ ମୋତେ କବଳିତ କରିଥିଲା, ମୁଁ କହି ନପାରେ । ନଦୀ କୂଳରେ ଗୋଟିଏ ନିର୍ଜନ ସ୍ଥାନ ଦେଖି ଆମ୍ଭେ ଦୁହେଁ ସେଠାକୁ ଗଲୁ । ମୋ'ର ଜୀବନରେ ପ୍ରଥମେ ସେଠାରେ ମୁଁ ମାଂସ ଦେଖିଲି । ରୁଟି ମଧ୍ୟ କିଣା ଯାଇଥିଲା । ଦୁଇ ପଦାର୍ଥରୁ ଗୋଟିଏ ହେଲେ ମୋତେ ରୁଚି-କର ହେଲାନାହିଁ । ମାଂସ ସବୁ ଚମଡ଼ା ପରି କଠିନ ହୋଇଥିଲା । ମୁଁ ତାହା ଆଦୌ ଖାଇ ପାରିଲି ନାହିଁ । ମୁଁ ଅସୁସ୍ଥ ଥିଲି ବୋଲି ମଧ୍ୟ ଖାଇ ନଥିଲି ।

ମୋ'ର ସେଦିନ ରାତିର ଅବସ୍ଥା କହିଲେ ନସରେ । ନିଦ ଲାଗିଲା ନାହିଁ—ନାନା ପ୍ରକାର ସ୍ୱପ୍ନ ଦେଖିଲି । ବେଳେ ବେଳେ ଲାଗୁ-ଥାଏ ସତେ ଯେପରି ଜୀଅନ୍ତା ଛେଳି ଗୋଟାଏ ମୋ ପେଟ ଭିତରେ ରହି କରୁଣ ଭାବରେ ରଡ଼ୁଛି । ପରକ୍ଷଣରେ ହଠାତ୍ ଚମକି ଉଠେ ମାଂସ ଭକ୍ଷଣ କର୍ତ୍ତବ୍ୟ ମନେ କରି ଉଲ୍ଲସିତ ହେଉଥାଏ । ମୋ'ର ବନ୍ଧୁ ମୋତେ କିନ୍ତୁ ସହଜରେ ଛାଡ଼ିବା ବ୍ୟକ୍ତି ନୁହନ୍ତି । ସେ ସୁନ୍ଦର ଭାବେ ନାନା ପ୍ରକାର ମାଂସ ତରକାରୀ କରିବାକୁ ଲାଗିଲେ । ଏଥର ମାଂସ ରାନ୍ଧିବା ପାଇଁ ନଦୀ କୂଳର ନିର୍ଜନ ସ୍ଥାନ ଦରକାର ପଡ଼ି ନଥିଲା । ରନ୍ଧାଘର, ଚୌକି, ମେଜ ଇତ୍ୟାଦି ଥାଇ ରାଜାଙ୍କର ଗୋଟିଏ ଘର ଥାଏ । ମୋ'ର ବନ୍ଧୁ ଚାକର-ମାନଙ୍କୁ ନିଜ ହାତର କରି ରାନ୍ଧିବା ଲାଗି ସେହି ଘରଟି ଠିକଣା କରିଥିଲେ । ଏହି ପ୍ରଲୋଭନ ବିଫଳ ହୋଇ ନଥିଲା । ରୁଟି ପ୍ରତି ମୋ'ର ଯେ ଘୃଣା ଥିଲା ତାହା ଆଉ ରହିଲା ନାହିଁ । ଛେଳିମାନଙ୍କଠାରେ ମୋ'ର ଯେ ଦୟା, ତାହା ବିଦୂରିତ ହେଲା । ମାଂସ ତରକାରୀ ତଥା ମାଂସ ବଡ଼ ରୁଚିକର ବୋଧ ହେଲା । ଏହିପରି ବର୍ଷେ କାଳ କଟି ଗଲାଣି—ଇତି ମଧ୍ୟରେ

ଛିଅଁଗୋଟି ମାଂସ ଭୋଜ ହୋଇସାରିଛି । କିନ୍ତୁ ରାଜାଙ୍କ ଘରଟି ସବୁବେଳେ ମିଳେ ନାହିଁ । ପ୍ରତିଦିନ ବ୍ୟୟସାପେକ୍ଷ ମାଂସ ତରକାରି କରିବା କଠିନ ହୋଇପଡ଼େ । ଏହାପରି ସଂସ୍କାର ସଙ୍କାଶେ ପଇସାପତ୍ର ଦେବା ପାଇଁ ମୋ'ଠାରେ ଧନ ନଥାଏ । ସୁତରାଂ ମୋ'ର ବନ୍ଧୁ କୌଣସି ଠାରୁ ସବୁବେଳେ ପଇସା ଆଣିଥାନ୍ତି । ସେ କେଉଁଠାରୁ ଧନ ପାଉଥାନ୍ତି ମୁଁ ଆଦୌ ଜାଣି ନଥାଏ । ମୋତେ ମାଂସ ଖୁଆଇବା ପାଇଁ ବୋଧହୁଏ ସେ ଜିଦ୍ କରିଥିଲେ—ସୁତରାଂ ଯେ କୌଣସି ଭାବରେ ସେ ପଇସା ଆଣିଥାନ୍ତି । ହୁଏତ ଅନେକ ସମୟରେ ତାଙ୍କ ପକ୍ଷେ ମଧ କଷ୍ଟ ହୋଇଥାଏ । ସେହେତୁ ଏସବୁ ଭୋଜ ଅଳ୍ପ ପରିମାଣରେ ଓ ବହୁ ଦିନରେ ଥରେ ହୁଏ ।

ଯେଉଁଦିନ ମୁଁ ଏହି ଭୋଜରେ ମାତିଥାଏ ଘରେ ଆଉ ଖାଏ ନାହିଁ । ମାଆ ସବୁବେଳେ ମୋତେ ଖାଇବାକୁ ଡ଼ାକନ୍ତି ଓ ମୁଁ ଅମଙ୍ଗ ହେଲେ ତା'ର କାରଣ ପଚାରନ୍ତି । "ମୋତେ ଆଜ ଭୋକ କରୁନାହିଁ—ଜୀର୍ଣ୍ଣ ହେବାରେ କିଛି ବ୍ୟତିକ୍ରମ ଘଟିଛି" ବୋଲି ମୁଁ ତାଙ୍କୁ କହି ଦେଇଥାଏ । କିନ୍ତୁ ମୁଁ ବଡ଼ ଦୁଃଖରେ ଏହି ବାହାନା ସବୁ ଦେଖାଇ ଥାଏ । ମୁଁ ଜାଣିଥିଲି ମିଥ୍ୟା କହୁଛି ବୋଲି ଓ ତାହା ପୁଣି ମାଆଙ୍କ ଆଗରେ ! ମୋ'ର ମାଆ ବାପା ଯଦି ମୁଁ ମାଂସ ଖାଇବା କଥା ଜାଣନ୍ତି, ସେମାନେ ପ୍ରାଣ ଛାଡ଼ି ଦେବେ ବୋଲି ମଧ ଜାଣିଥିଲି । ଏସବୁ ଅନୁଭୂତି ମୋ'ର ମର୍ମକୁ କ୍ଷତ ବିକ୍ଷତ କରୁଥିଲା । ମାଂସ ଖାଇବା ନିତାନ୍ତ ଦରକାର ଓ ଦେଶରେ ଖାଦ୍ୟ ସଂସ୍କାର ଆନ୍ଦୋଳନ କରିବା ମଧ ଆବଶ୍ୟକ ବୋଲି ମୁଁ ଅନୁଭବ କଲି । ମାଂସ ଭୋଜନରୁ ବିରତ ହେବା ଅପେକ୍ଷା ପିତାମାତାଙ୍କୁ ମିଥ୍ୟା କହି ଠକିବା ବଡ଼ ଗର୍ହିତ ବୋଲି ଭାବିଲି । ସେହେତୁ ସେମାନେ ଜୀବିତାବସ୍ଥାରେ ଥିବାଯାଏ ମାଂସ ଭକ୍ଷଣ କରିବା ପାଇଁ ଭାବିବା ମଧ

ଉଚିତ ନୁହେଁ ବୋଲି ମନେକଲି । ସେମାନଙ୍କ ମରଣାନ୍ତେ ମୁଁ ସ୍ୱତନ୍ତ୍ର-ଭାବରେ ଓ ନିର୍ଭୟରେ ମାଂସ ଖାଇବି, କିନ୍ତୁ ସେ ସମୟରେ ସେଥିରୁ ବିରତ ହେବି ବୋଲି ପ୍ରତିଜ୍ଞା କରି ମୋ'ର ବନ୍ଧୁଙ୍କୁ ତାହା କହିଦେଲି । ସେହିଦିନ ଠାରୁ ଆଉ ମାଂସ ଖାଇଲି ନାହିଁ । ପିତା ମାତା ଜାଣିନଥିଲେ ଯେ ତାଙ୍କର ଦୁଇଟି ପୁଅ ମାଂସ ଖାଇ ସାରି ଅଛନ୍ତି ।

ପିତା ମାତାଙ୍କୁ ମିଥ୍ୟା ନକହିବା ପବିତ୍ର ଭାବ ମନରେ ପୋଷଣ କରି ମାଂସ ଭକ୍ଷଣରୁ ବିରତ ହେଲି ସତ, କିନ୍ତୁ ମୋ'ର ବନ୍ଧୁଙ୍କ ସଙ୍ଗ ପରିତ୍ୟାଗ କରିପାରିଲି ନାହିଁ । ସଂସ୍କାର ପାଇଁ ମୋ'ର ଯେ ଅନୁରାଗ ତାହା ମୋ'ର ପତନର କାରଣ ବୋଲି ମଧ୍ୟ ମୁଁ ଜାଣି ପାରି ନଥିଲି ।

ଉକ୍ତ ବନ୍ଧୁଙ୍କ ସଂଶ୍ରବ ମୋତେ ମୋ'ର ପତ୍ନୀଙ୍କଠାରେ ମଧ୍ୟ ଅବିଶ୍ୱସ୍ତ କରିଥାନ୍ତା । କିନ୍ତୁ ମୁଁ ସେଥିରୁ ରକ୍ଷା ପାଇଥିଲି । ମୋତେ ଦିନେ ସେ ଏକ ବେଶ୍ୟା ଘରକୁ ନେଇଥିଲେ । ଆବଶ୍ୟକୀୟ ବିଷୟ ସବୁ କହି ମୋତେ ସେ ଘର ଭିତରକୁ ପଠାଇଲେ । ଏ ସମ୍ବନ୍ଧେ ପୂର୍ବରୁ ସେ ସବୁ ଠିକଣା କରିଥିଲେ । ପଇସା ମଧ୍ୟ ଦେଇ ସାରିଥିଲେ । ମୁଁ ପାପର ଗର୍ଭରେ ପଡ଼ିବାକୁ ଯାଉଥିଲି, କିନ୍ତୁ ଭଗବାନ ତାଙ୍କ ଅପାର କରୁଣା ମହିମାରେ ମୋତେ ରକ୍ଷା କରିଥିଲେ । ଏହି ପାପ ଗହ୍ୱର ଭିତରେ ମୁଁ ଅନ୍ଧ ଓ ନିର୍ବୋଧ ହୋଇଗଲି । ଉକ୍ତ ବେଶ୍ୟାର ଶେଯ ଉପରେ ଯାଇ ବସିଲି—କିନ୍ତୁ ମୋ'ର ପାଟି ଫିଟିଲା ନାହିଁ । ସେହେତୁ ସେ ଆଉ ବେଶି ସମୟ ଅପେକ୍ଷା କରି ନପାରି, ନାନା ଭର୍ତ୍ସନା ଦେଇ ଦ୍ୱାର ଦେଖାଇ ଘଉଡ଼ି ଦେଲା । ମୁଁ ସେତେବେଳେ ଭାବିଲି ମୋ'ର ମନୁଷ୍ୟତ୍ୱ ଉପରେ ସତେ ଯେପରି ପଦାଘାତ ହେଲା, ଲଜ୍ଜାରେ ମୁଣ୍ଡ ତଳକୁ ପୋତି ହୋଇଗଲା । ଭଗବାନ ମୋତେ ସେଥିରୁ ରକ୍ଷା କରିଅଛନ୍ତି ବୋଲି, ସେ ଦିନଠାରୁ ମୁଁ ତାହାଙ୍କୁ କିନ୍ତୁ ଧନ୍ୟବାଦ ଦେଉଅଛି ।

ଏହିପରି ଆହୁରି ଗୃହଗୋଟି ଘଟଣା ମୋ'ଜୀବନରେ ଘଟିଥିବା କଥା ମୋ'ର ମନେଅଛି, ଏବଂ ସେ ସବୁରୁ ମୁଁ ଯେ ରକ୍ଷା ପାଇଛି ତାହା ମୋ'ରଚେଷ୍ଟାରୁ ନୁହେଁ, କିନ୍ତୁ ମୋ'ର ଭାଗ୍ୟବଶରୁ । ନୈତିକ ଭାବରେ ଦେଖିବାକୁ ଗଲେ ଏସବୁ ଘଟଣା ନୈତିକ ଜୀବନର ସ୍ଖଳନ ବୋଲି ବିବେଚିତ ହେବ । କାରଣ ଯଦି ମନରେ ନାରକୀୟ ଭାବ ଆସିଛି ସେହିଭାବ କାର୍ଯ୍ୟରେ ପରିଣତ ନହେଲେହେଁ ତାହା ଅବଶ୍ୟ ଏକ ସ୍ଖଳନ । ତଥାପି ସାଧାରଣ ଲୋକଙ୍କ ମତାନୁସାରେ କହିବାକୁ ଗଲେ ଯେଉଁମାନେ ପ୍ରକୃତ ପାପ ଗର୍ଭରେ ପଡ଼ି ନାହାନ୍ତି, ତଥା ପାପ ଭାବଙ୍କୁ କାର୍ଯ୍ୟରେ ପରିଣତ କରି-ନାହାନ୍ତି ସେମାନେ ପାପରୁ ରକ୍ଷା ପାଇଛନ୍ତି ବୋଲି କୁହାଯାଇପାରେ । ମୁଁ ଏହି ଭାବରେ କେବଳ ରକ୍ଷା ପାଇଥିଲି । ଏହିପରି ଅନେକ କାର୍ଯ୍ୟ ଅଛି ସେ ସବୁରୁ ଭଗବାନ କେବଳ ରକ୍ଷା କରିଥାନ୍ତି । ମନୁଷ୍ୟ ଯେତେବେଳେ ପ୍ରକୃତ ଜ୍ଞାନ ଚକ୍ଷୁରେ ଦେଖେ ଯେ ଭଗବାନ ତାକୁ ରକ୍ଷା କରିଅଛନ୍ତି, ସେ ତାହାଙ୍କୁ ଧନ୍ୟବାଦ ଦିଏ । ଆମ୍ଭେମାନେ ଜାଣୁ ମନୁଷ୍ୟ ଅନେକ ସମୟରେ ପ୍ରଲୋଭନର ବଶବର୍ତ୍ତୀ ହୋଇ ପଡ଼େ । ସେ ସବୁର ଦୂରରେ ରହିବା ଚେଷ୍ଟା ବିଫଳ ହୋଇଯାଏ । କିନ୍ତୁ ଭାଗ୍ୟ ଭଲ ଥିଲେ ସେଥିରୁ ସେ ରକ୍ଷା ପାଇଥାଏ । ଏସବୁ କିପରି ଘଟୁଛି ମନୁଷ୍ୟ କେତେ ଦୂର ନିର୍ମୁକ୍ତ—ଓ କେତେ ଦୂର ସେ ଘଟଣାର ଦାସ, ମନ ସ୍ୱତନ୍ତ୍ର ଭାବରେ କିପରି ଖେଳା-ଈକରେ ଓ କେତେବେଳେ ଭାଗ୍ୟ ରଙ୍ଗ-ମଞ୍ଚରେ ଦେଖାଦିଏ ଏସବୁ ବଡ଼ ରହସ୍ୟ—ଓ ଏହା ସବୁବେଳେ ରହସ୍ୟ ଭାବେ ରହିଥିବ । ଏ ସବୁ ଏଠାରେ କାହିଁକି ?

ଏତେ ଘଟଣା ସତ୍ତ୍ୱେ ମୋ'ର ବନ୍ଧୁଙ୍କର ନାରକୀୟ ସଂସ୍ରବ ଛାଡ଼ିବା ପାଇଁ ମୋ'ର ଆଖି ଫିଟିଲା ନାହିଁ । ସୁତରାଂ ମୋ'ପାଇଁ ଆହୁରି କେତେ ଅରୁଚିକର ଘଟଣା ଗଚ୍ଛିତ ଥିଲା । ସେ ଯାହାହେଉ, ମୁଁ ନିଜ

ଆଖିରେ ତାଙ୍କର ସ୍ଖଳନ ଦେଖି ମୋର ଭୁଲ ପରେ ବୁଝିଲି । କିନ୍ତୁ କ୍ରମାନୁସୃତେଭ ଲେଖିବାକୁ ଯାଉଛି, ସେସବୁ ପରେ ଲେଖିବି ।

ଠିକ୍ ସେହି ସମୟର ଆଉ ଗୋଟିଏ ଘଟଣା କିନ୍ତୁ ଏଠାରେ କହିବି । ମୋ'ସ୍ତ୍ରୀଙ୍କ ସହିତ ମୋ'ର ଯେତେ ମନୋମାଳିନ୍ୟ ହୁଏ ସେ ସବୁର ଅନେକ କାରଣ ମଧ୍ୟରୁ ଏହି ବନ୍ଧୁତା ଗୋଟିଏ । ମୁଁ ଜଣେ ବଡ଼ ଅନୁରକ୍ତ କିନ୍ତୁ ସନ୍ଦେହଚିତ୍ତ ପତି ଥିଲି । ସ୍ତ୍ରୀଙ୍କ ପ୍ରତି ମୋ'ର ଯେ ସନ୍ଦେହ ଥାଏ, ସେହି ସନ୍ଦେହ-ଅଗ୍ନିରେ ଏହି ବନ୍ଧୁ ଯେପରି ତେଲ ଢାଳିବାକୁ ଲାଗିଲେ । ତାଙ୍କର କଥା ସବୁ ମୁଁ ଅବିଶ୍ୱାସ କରିପାରୁନଥିଲି ଓ ତାଙ୍କର ପ୍ରରୋଚନାରେ ପଡ଼ି ମୁଁ ମୋ'ର ସ୍ତ୍ରୀଙ୍କୁ କେତେ ଯେ କଷ୍ଟ ଦେଇଛି, ସେସବୁ କଦର୍ଥନା ମୁଁ ପାସୋରି ପାରିବିନାହିଁ । ଜଣେ ହିନ୍ଦୁ ପତ୍ନୀ କେବଳ ଏହିପରି କଠିଣା ସହ୍ୟ କରିପାରେ । ସେହେତୁ ମୁଁ ସ୍ତ୍ରୀ ସମାଜକୁ ସହନଶୀଳର ଅବତାର ବୋଲି ଭାବନା କରେ । ଯଦି ଗୋଟିଏ ଚାକରକୁ ଭୁଲରେ ସନ୍ଦେହ କରାଯାଏ, ସେ କାର୍ଯ୍ୟ ଛାଡ଼ି ବାହାରି ଯାଇପାରେ, ପୁତ୍ର ମଧ୍ୟ ପିତାଙ୍କ ଘର ଛାଡ଼ି ଦେଇପାରେ, ବନ୍ଧୁ ସ୍ନେହ ପରିହାର କରିପାରେ; ପତ୍ନୀ ଯଦି ପତିଙ୍କୁ ସନ୍ଦେହ କରେ ସେ କିଛି କହିନପାରି ନୀରବ ରହେ; କିନ୍ତୁ ପତି ଯଦି ପତ୍ନୀକୁ ସନ୍ଦେହ କରେ ତାର କଥା ସରିଲା । ସେ କେଉଁଠାକୁ ଯିବ ? ଜଣେ ହିନ୍ଦୁ ସ୍ତ୍ରୀ ଅଦାଲତରେ ଯାଇ ଛାଡ଼ପତ୍ର ପାଇଁ ଦାବି କରିନପାରେ । ଆଇନରେ ତାହାପାଇଁ କିଛି ପ୍ରତିକାର ନାହିଁ । ମୁଁ ଯେ ମୋ'ର ସ୍ତ୍ରୀଙ୍କୁ କେତେଦୂର ନୈରାଶ୍ୟ ଓ ଆଶାଶୂନ୍ୟ ଅବସ୍ଥାରେ ପକାଇଥିଲି, ତାହା ମୁଁ ପାସୋରି ନପାରେ କିମ୍ବା ନିଜକୁ ନିଜେ କ୍ଷମା ଦେଇନପାରେ । ମୁଁ ଯେତେବେଳେ 'ଅହିଂସା'ର ମହାତ୍ମ୍ୟ ଜାଣିଲି, ସେତେବେଳେ ସନ୍ଦେହ ରୂପକ ଦୂଷିତ ଘା'ର ମୂଳୋତ୍ପାଟନ ହେଲା— ବ୍ରହ୍ମଚର୍ଯ୍ୟର ମହାତ୍ମ୍ୟ ମଧ୍ୟ ବୁଝିପାରିଲି । ପତ୍ନୀ ପତିର ଦାସୀ ନୁହେ—କିନ୍ତୁ ତାହାର ସଙ୍ଗିନୀ,

ସାହାଯ୍ୟକାରିଣୀ, ସୁଖ ଦୁଃଖ ଭାଗିନୀ ଓ ପତି ପର ନିଜେ ନିଜେ ବାଟ କାଢ଼ିବାରେ ନିର୍ମୁକ୍ତା ବୋଲି ଅନୁଭବ କଲି । ମୁଁ ଯେତେବେଳେ ସେ ସମୟର ସନ୍ଦେହ ପୂର୍ଣ୍ଣ ଅନ୍ଧକାରମୟ ଦିନର କଥା ମନେ କରେ, ମୋ'ର ଦୁର୍ବୁଦ୍ଧି ଯୋଗୁଁ ନିଜ ପ୍ରତି ଘୃଣା ଆସେ । ମୋ'ର ବନ୍ଧୁଙ୍କ ପ୍ରତି ମୋ'ର ଯେ ଅନ୍ଧ ଅନୁରାଗ ଥିଲା, ସେଥିଲାଗି ଦୁଃଖ କରେ ।



## ଅଷ୍ଟମ ପରିଚ୍ଛେଦ ।

( ଚୌର୍ଯ୍ୟ ଓ ପ୍ରାୟଶ୍ଚିତ୍ତ )



ମାଂସ ଖାଇବା ସମୟର ଓ ତତ୍ ପୂର୍ବର ଅଉ କେତେକ ସ୍ଖଳନ ସମ୍ବନ୍ଧେ ଏଠାରେ କହିବି । ଠିକ ମୋ'ର ବିବାହ ବେଳେ କିମ୍ବା ତା'ପୂର୍ବରୁ ସେ ସବୁ ଘଟିଛି ।

ମୁଁ ଓ ମୋର ଜଣେ ବନ୍ଧୁ ଧୂମ୍ରପାନ କରିବାରେ ବଡ଼ ଆସକ୍ତ ହେଲୁଁ । ଧୂମ୍ରପାନରେ ଯେ କିଛି ଗୁଣ ଥିଲା କିମ୍ବା ସିଗାରେଟ ଧୂଆଁ ବାସନାରେ ଆମ୍ଭେମାନେ ଯେ ବିମୁଗ୍ଧ ହୋଇଥିଲୁ, ତାହା ନୁହେ । ଭୁଣ୍ଡିରୁ ପ୍ରଚୁର ପରିମାଣରେ ଧୂଆଁ ଛାଡ଼ିବାରେ ଏକ ପ୍ରକାର ଆନନ୍ଦ ଅଛି ବୋଲି ଆମ୍ଭେମାନେ ଭାବିଥିଲୁ । ମୋ'ର ପିତୃବ୍ୟଙ୍କର ଧୂମ୍ରପାନ ଅଭ୍ୟାସ ଥାଏ ଓ ଆମ୍ଭେମାନେ ଯେତେବେଳେ ତାଙ୍କର ଧୂମ୍ରପାନ ଦେଖୁଁ, ତାଙ୍କୁ ଅନୁକରଣ କରିବା ପାଇଁ ଭାବିଥାଉଁ । ମାତ୍ର ଆମ୍ଭଠାରେ ପଇସା ନଥାଏ । ସୁତରାଂ ପିତୃବ୍ୟ ଯେଉଁ ଖଣ୍ଡିଆ ସିଗାରେଟ ଫିଙ୍ଗି ଦେଉଥାନ୍ତି, ସେ ସବୁ ଗୋଟାଇବା ଆରମ୍ଭ କଲୁଁ ।

ତଥାପି ସେ ବିଡ଼ି ଗୁଡ଼ିକ ସବୁବେଳେ ମିଳ ନଥାଏ କିମ୍ବା ସେଥିରୁ ବେଶି ଧୂଆଁ ବାହାରେ ନାହିଁ । ସୁତରାଂ ଗୃହକରମାନଙ୍କର ପକେଟରୁ ପଇସା ଚୋରିକରି ସେଥିରେ ଦେଶି ସିଗାରେଟ କିଣିବା ଆରମ୍ଭ କଲୁ । କିନ୍ତୁ ତାହା ଲୁଚାଇ ରଖିବାକୁ ବଡ଼ ଅସୁବିଧା ହୋଇଥିଲା । ବୟୋଧିକ ବ୍ୟକ୍ତିଙ୍କ ଆଗରେ ସିଗାରେଟ ଖାଇ ପାରୁନଥିଲୁ । କେତେଦିନ ଯାଏ ଏହି ଚୋରି ପଇସା ସାହାଯ୍ୟରେ ଚଳାଇ ନେଲୁ । କୌଣସି ଏକ ଗଛର କାଣ୍ଡ ଗୁଣ୍ଡ କରି ଖାଇଲେ ଧୂଆଁ ବାହାରେ ବୋଲି ଇତିମଧ୍ୟରେ ଶୁଣି ତାହା ମଧ୍ୟ ଖାଇଥିଲୁଁ ।

କିନ୍ତୁ ଏତିକରେ ଆମ୍ଭେ ତୃପ୍ତ ହୋଇନଥିଲୁ । ସ୍ୱାତନ୍ତ୍ର୍ୟର ଅଭାବ ବଡ଼ ଯନ୍ତ୍ରଣା ଦେବାକୁ ଲାଗିଲା । ବୟୋଧିକ ବ୍ୟକ୍ତିମାନଙ୍କ ବିନାନୁମତିରେ ଆମ୍ଭେମାନେ କିଛି କରିପାରୁନଥିଲୁ ବୋଲି ବଡ଼ ଅସହ୍ୟ ବୋଧହେଲା । ପରିଶେଷରେ ବିରକ୍ତ ହୋଇ ଆତ୍ମହତ୍ୟା କରିବାପାଇଁ ନିଶ୍ଚୟ କଲୁଁ ।

ମାତ୍ର କିପରି ତାହା କରିବୁ ? କେଉଁଠାରୁ ବିଷ ଆଣିବୁ ? ଆମ୍ଭେ ଶୁଣିଥିଲୁ ଧୁତୁରା ମଞ୍ଜି ବଡ଼ ବିଷାକ୍ତ । ସେହି କ୍ଷଣି ବଣକୁ ଯାଇ ତାହା ଖୋଜି ଆଣିଲୁଁ । ସନ୍ଧ୍ୟା ସମୟଟି ଆତ୍ମହତ୍ୟା ଲାଗି ଶୁଭବେଳା ବୋଲି ମନେ କଲୁଁ ଓ 'କେଦାରଜୀ' ମନ୍ଦିରକୁ ଗଲୁଁ—ଦେବାଳୟ ଦୀପରେ ଘିଅ ପକାଇଲୁଁ, ଦର୍ଶନ କରି ସାରି ଗୋଟିଏ ନିର୍ଜ୍ଜନ ସ୍ଥାନକୁ ଗଲୁ । କିନ୍ତୁ ଆମ୍ଭର ସାହସ ହେଲା ନାହିଁ । ଯଦି ହଠାତ୍ ଆମ୍ଭର ପ୍ରାଣ ନଯାଏ ତେବେ ? ନିଜର ପ୍ରାଣ ନିଜ ହାତରେ ନେଇ ଲାଭ କଣ ? ସ୍ୱାତନ୍ତ୍ର୍ୟ ଅଭାବ-ଦୁଃଖ ସହ୍ୟ ନକରିବୁ କାହିଁକି ?—ଏସବୁ ପ୍ରଶ୍ନ ମନରେ ଜାଗରିତ ହେଲା । ସେ ଯାହା ହେଉ ଦୁଇ ଚାରିଗୋଟି ମଞ୍ଜି କିନ୍ତୁ ଖାଇଦେଲୁ । ଆଉ ଅଧିକ ଖାଇବା ପାଇଁ ସାହସ ହେଲାନାହିଁ, ଦୁଇଜଣଯାକୁ ମରଣଭୟ ଲାଗିଲା ।

'ବୈଦ୍ୟନାଥ' ମନ୍ଦିରକୁ ଯାଇ ସେଠାରେ ଆତ୍ମହତ୍ୟା କରିବା ଭାବ କଦୃଢ଼ କରିବା ପାଇଁ ନିଶ୍ଚୟ କଲୁଁ ।

ମୁଁ ବୁଝିଲି ଆତ୍ମହତ୍ୟା କରିବା ପାଇଁ ଯେପରି ସହଜରେ ଭାବ ହୁଏ, କାର୍ଯ୍ୟରେ ସେପରି କରିହୁଏ ନାହିଁ । ସୁତରାଂ ଯଦି କେହି ଆତ୍ମହତ୍ୟା କରିବା ପାଇଁ ଭୟ ଦେଖାଏ, ମୁଁ ଡ଼ରେନାହିଁ ।

ଆତ୍ମହତ୍ୟା ଘଟଣା ଯୋଗୁଁ ଆମ୍ଭେମାନେ ଖଣ୍ଡିଆ ସିଗାରେଟ ଧୂଆଁ ଖାଇବାରୁ ବିରତ ହେଲୁ ଓ ଧୂମ ପାନ ପାଇଁ ଚାକରମାନଙ୍କଠାରୁ ଯେ ପଇସା ଚୋରାଉ ଥାଉ, ତାହା ମଧ୍ୟ ଛାଡ଼ିଦେଲୁଁ ।

ବୟସବୃଦ୍ଧି ସଙ୍ଗେ ସଙ୍ଗେ ଧୂମପାନ କରିବା ପାଇଁ ମୋ'ର ଆଉ ଇଚ୍ଛା ହୋଇନାହିଁ । ଧୂମପାନ କରିବା ଅଭ୍ୟାସଟା ଅସିଦ୍ଧ, କୁତ୍ସିତ ଓ ଆପଦଜନକ ବୋଲି ମୁଁ ଭାବିଅଛି । ଧୂମପାନପାଇଁ ସମଗ୍ର ଜଗତରେ କାହିଁକି ଯେ ଏତେ ଅନୁରାଗ ଜନ୍ମିଅଛି, ତାହା ମୁଁ ଅନେକ ଚେଷ୍ଟାକରି ବୁଝିପାରି ନାହିଁ । ଗାଡ଼ିରେ ଗଲାବେଳେ ଯେଉଁଠାରେ ଧୂମପାନ କରିବାଲୋକ ବସିଥାନ୍ତି ମୁଁ ସେଠାରେ ବସିପାରେ ନାହିଁ—ମୋତେ ରୁଦ୍ଧ ଲାଗେ ।

ଆଉ କିଛିଦିନ ପରେ ମୁଁ ଯେଉଁ ଚୋରି କାର୍ଯ୍ୟ କରିଥିଲି ତାହା ଏହା ଅପେକ୍ଷା ଗୁରୁତର । ମୋ'ର ଦ୍ୱାଦଶ କିମ୍ବା ତ୍ରୟୋଦଶ ବର୍ଷ ବୟସରେ ମୁଁ ଏହି ଚୋରି କାର୍ଯ୍ୟ କରିଥିଲି । ଅନ୍ୟଟି ମୋ'ର ପନ୍ଦର ବର୍ଷ ସମୟରେ ହୋଇଥିଲା । ମୋ'ର ମାଂସଖିଆ ଭାଇଙ୍କର ଗୋଟିଏ ଅଳଙ୍କାରରୁ ସୁନା ଖଣ୍ଡିଏ ଚୋରାଇବା ମୋ'ର ଦ୍ୱିତୀୟ ଚୋରି କାର୍ଯ୍ୟ । ଏହି ଭାଇ ୨୫ଟଙ୍କା ପର୍ଯ୍ୟନ୍ତ ଋଣ କରି ସାରିଥିଲେ । ସାଦା ସୁନାର ଗୋଟିଏ ବାଜୁବନ୍ଦ ତାଙ୍କ ଡ଼େଣାରେ ଥାଏ । ସେଥିରୁ ଖଣ୍ଡେ ସୁନା ବାହାର କରିବା

କିଛି କଷ୍ଟ ନୁହେ । ତାହା ଚୋରାଇ ବଳକାରୁ ଋଣ ପରିଶୋଧ କରିଗଲୁଁ ଏହା କିନ୍ତୁ ମୁଁ ସହ୍ୟ କରି ପାରୁନଥିଲି । ନିଶ୍ଚୟ କଲି ଆଉ କେବେ ଚୋରାଇବି ନାହିଁ ଓ ପିତାଙ୍କ ଆଗରେ ଦୋଷ ସ୍ୱୀକାର କରିବି । କିନ୍ତୁ ତାଙ୍କୁ କହିବା ପାଇଁ ସାହସ ହେଲା ନାହିଁ । ପିତା ଯେ ମୋତେ ମାଡ଼ ଦେବେ, ଏ ଭୟ ଅବଶ୍ୟ ମୋ'ର ନଥିଲା; ନା, ସେ କେବେହେଲେ ଆମ୍ଭମାନଙ୍କୁ ମାଡ଼ ଦେବା ମୋ'ର ମନେ ହୁଏ ନାହିଁ । ତାଙ୍କୁ ଯେ ମୁଁ ବଡ଼ ଯନ୍ତ୍ରଣା ଦେବି, ସେହି ଭାବ କେବଳ ମୋତେ ଭୟ ଦେଉ ଥାଏ । କିନ୍ତୁ ସାହସ ବାନ୍ଧି କହିବାକୁ ହେବ ଓ ମୁକ୍ତ କଣ୍ଠରେ ଦୋଷ ସ୍ୱୀକାର ବିନା ପ୍ରକୃତ ପ୍ରାୟଶ୍ଚିତ ହୋଇ ନପାରେ ବୋଲି ମୁଁ ଅନୁଭବ କଲି ।

ଗୋଟିଏ ଦୋଷ ସ୍ୱୀକାର ପତ୍ର ଲେଖି ପିତାଙ୍କୁ କ୍ଷମା ପ୍ରାର୍ଥନା କରିବି ବୋଲି ନିଶ୍ଚୟ କଲି । ଖଣ୍ଡିଏ ପତ୍ରରେ ତାହା ଲେଖି ତାଙ୍କ ହାତରେ ନେଇ ଦେଲି । ସେଥିରେ ମୋ'ର ଦୋଷ ଯେ କେବଳ ସ୍ୱୀକାର କରିଥିଲି, ତାହା ନୁହେ । ମୋ'ର ଦୋଷ ଲାଗି ଉପଯୁକ୍ତ ଦଣ୍ଡ ଦେବାପାଇଁ ମଧ୍ୟ ଲେଖିଥିଲି ଓ ସେ ନିଜକୁ ଯେପରି କଷ୍ଟ ନଦିଅନ୍ତି ସେଥିଲାଗି ପ୍ରାର୍ଥନା କରିଥିଲି । ମୁଁ ଆଉ ଭବିଷ୍ୟତରେ ଚୋରାଇବି ନାହିଁ ବୋଲି ମଧ୍ୟ ପ୍ରତିଜ୍ଞା କରିଥିଲି ।

ପିତାଙ୍କୁ ପତ୍ରଟି ଦେଲାବେଳେ ମୋ'ର ଦେହ ଥରୁଥାଏ । ବ୍ରଣରେ ପୀଡ଼ିତ ହୋଇ ସେ ଶଯ୍ୟାଗତ ଥିଲେ । ଖଣ୍ଡିଏ କାଠ ପଟା ତାଙ୍କର ଶେଯରୂପେ ବ୍ୟବହୃତ ହେଉଥିଲା । ପତ୍ରଖଣ୍ଡି ଦେଇ ମୁଁ ତାଙ୍କ ସମ୍ମୁଖରେ ବସିଲି ।

ସେ ପତ୍ର ଖଣ୍ଡି ପଢ଼ିଲେ—ଆଖିରୁ ଲୁହଧାର ଗଡ଼ି କାଗଜ ଖଣ୍ଡି ତିନ୍ତିଗଲା—ଆଖି ବୁଜି କିଛିକ୍ଷଣ ଯାଏ ସେ କଣ ଭାବି ଭାବି ପତ୍ର ଖଣ୍ଡି

ଚିରି ଦେଲେ । ପତ୍ରଟି ପଢିବା ପାଇଁ ସେ ଶେଯରୁ ଉଠିଥିଲେ, ପୁନରପି ଶୋଇ ପଡ଼ିଲେ; ମୁଁ ମଧ୍ୟ କାନ୍ଦିଲି । ପିତାଙ୍କର ଯନ୍ତ୍ରଣା ଭୋଗ ମୁଁ ଦେଖି ପାରିଲି । ମୁଁ ଯଦି ଚିତ୍ରକର ହୋଇଥାନ୍ତି, ତାହାହେଲେ ଏବେ ସମଗ୍ର ଦୃଶ୍ୟର ଗୋଟିଏ ଚିତ୍ର ଅଙ୍କନ କରିପାରିଥାନ୍ତି । ମୋ ମନରେ ଆଜିଯାଏ ସେ ସବୁ ଅକ୍ଷୁନ୍ନ ରହିଛି ।

ପିତାଙ୍କର ସେହି ଲୋତକ ଧାର ମୋ'ର ପାପ ସବୁ ଭସାଇ ଦେଇଥିଲା । ଯେଉଁମାନେ ଏହିପରି ପ୍ରେମ ଅନୁଭବ କରି ଅଛନ୍ତି ସେମାନେ କେବଳ ବୁଝିପାରିବେ—ଏହା କପରି ପ୍ରେମ । ଶାସ୍ତ୍ରରେ ଅଛି, 'ପ୍ରେମ ଶର ଯାହାଠାରେ ବାଜିଛି, ସେ କେବଳ ତାହାର ଶକ୍ତି ବୁଝିପାରେ' ।

ଏହା ମୋ'ପକ୍ଷେ ଅହିଂସାର ଶିକ୍ଷା । ସେତେବେଳେ ମୁଁ ପିତାଙ୍କର ସେହି ଲୋତକ ଧାରରେ କେବଳ ପ୍ରେମ ଦେଖିଥିଲି । ଏବେ କିନ୍ତୁ ଅନୁଭବ କରୁଛି ତାହା ଅହିଂସା ମାତ୍ର । ଏହି ଅହିଂସା ଯେତେବେଳେ ସାର୍ବଜନୀନ ହୁଏ, ସ୍ପର୍ଶ ମାତ୍ରେ ସବୁପ୍ରକାର ବସ୍ତୁ ଭିନ୍ନ ରୂପ ଧାରଣ କରେ । ତାର ଶକ୍ତି ଓ ସମୟର ପରିମାଣ ଓ ପରିସୀମା ନାହିଁ ।

ଏହିପରି ଅଲୌକିକ କ୍ଷମା ଦାନ ମୋ'ର ପିତାଙ୍କର ସ୍ୱାଭାବିକ ଗୁଣ ନୁହେ । ମୁଁ ଭାବି ଥିଲି ସେ କ୍ରୁଦ୍ଧ ହେବେ, କଟୁକଥା କହିବେ ଓ ନିଜେ ମୁଣ୍ଡ କଚାଡ଼ିବେ । ସେ କିନ୍ତୁ ଅସାଧାରଣ ଭାବେ ନୀରବ ରହିଲେ ଏବଂ ମୋ'ର ବିଶ୍ୱାସ, ତାହା କେବଳ ମୋ'ର ଅକପଟ ଏବଂ ନିର୍ମୁକ୍ତ ଦୋଷ ସ୍ୱୀକାର ଲାଗି । ଦୋଷ ଶୁଣିବା ପାଇଁ ଯେଉଁମାନଙ୍କର ଅଧିକାର ଅଛି, ସେମାନଙ୍କ ଆଗରେ ଦୋଷ ନକରିବା ପାଇଁ ମୁକ୍ତକଣ୍ଠରେ ଯେଉଁ ସ୍ୱୀକାର କରାଯାଏ, ତାହା ହେଉଛି ପବିତ୍ର ଓ ପ୍ରକୃତ ଅନୁତାପ । ମୁଁ ଭାବୁଛି ମୋ'ର ଦୋଷ ସ୍ୱୀକାର କେବଳ ମୋତେ ପିତାଙ୍କ ଦୃଷ୍ଟିରେ

ନିରପରାଧ ବୋଲି ବିବେଚନା କରାଇଥିଲି ଓ ମୋ'ପ୍ରତି ତାଙ୍କର ଯେ ପ୍ରେମ ଓ ସ୍ନେହ, ତାହା ଅକଳନ ଭାବରେ ବଢ଼ାଇଥିଲି ।



# ନବମ ପରିଚ୍ଛେଦ ।

( ପିତାଙ୍କ ମୃତ୍ୟୁ ଓ ମୋ'ର ଦ୍ୱିଗୁଣ ଅପମାନ )

—:*: + :*:—

ମୁଁ ଯେଉଁ ସମୟ ନେଇ କହୁଛି ସେତେବେଳକୁ ମୋ'ର ବୟସ ଷୋହଳ ବର୍ଷ । ମୋ'ର ପିତା ବ୍ରଣରେ ପୀଡ଼ିତ ହୋଇଥିବା ଯୋଗୁଁ ଶଯ୍ୟାଗତ ଥିଲେ ବୋଲି ମୁଁ ପୂର୍ବରୁ କହି ସାରିଛି । ମୋ'ର ମାଆ, ଘରର ଜଣେ ବୁଢ଼ାଚାକର ଓ ମୁଁ ତାଙ୍କର ପ୍ରଧାନ ସେବକ ଥିଲୁଁ । ଘାଆରେ ପଟି ବାନ୍ଧିବା, ଔଷଧ ଦେବା ଓ ଘରେ ଯଦି ଔଷଧ ତିଆରି କରିବାକୁ ହୁଏ ସେସବୁ ଯୋଗାଡ଼ କରିବା ମୋ'ର ସେବା ମଧ୍ୟରେ ପ୍ରଧାନ— ସ୍ଥୂଳରେ କହିବାକୁ ଗଲେ ମୁଁ ଜଣେ ଧାଈର କାମ କରୁଥିଲି । ପ୍ରତିରାତି ମୁଁ ତାଙ୍କର ଗୋଡ଼ ଘଷୁଥାଏ । ସେ ମୋତେ ମନାକଲେ କିମ୍ବା ଗାଢ ନିଦ୍ରାରେ ଶୋଇପଡ଼ିଲେ ମୁଁ ସେଥିରୁ ବିରତ ହୁଏ; ଏପରି ସେବାକରି ମୁଁ ଆନନ୍ଦ ଲଭୁଥିଲି । କେବେହେଲେ ଏହିପରି ସେବାରେ ମୁଁ ଅବହେଳା କରିଛି ବୋଲି ମୋ'ର ମନେ ହେଉନାହିଁ । ଦୈନିକ କାର୍ଯ୍ୟ ପରେ ଆଉ ଯାହା ସମୟ ମୋତେ ମିଳେ ତାହା ସ୍କୁଲକୁ ଯିବାରେ ଓ ପିତାଙ୍କ ସେବାରେ ମୁଁ ବାଣ୍ଟି ଦେଇଥାଏ । କେବଳ ସେ ଆରୋଗ୍ୟ ଥିଲାବେଳେ କିମ୍ବା ଅନୁମତି ଦେଲେ ମୁଁ ସନ୍ଧ୍ୟାବେଳେ ଟିକିଏ ବୁଲିଯାଏ ।

ଠିକ୍ ଏହି ସମୟରେ ମୋ'ର ସ୍ତ୍ରୀ ଗର୍ଭବତୀ ଥିଲେ—ମୁଁ ଏବେ ଭାବୁଛି ମୋ'ପକ୍ଷେ ଏହା ଦ୍ୱିଗୁଣ ଲଜ୍ଜାର କଥା । ପ୍ରଥମ କଥା, ମୁଁ ଛାତ୍ର ହୋଇ ସୁଦ୍ଧା କାମର ଗତିରୋଧ କରିପାରି ନଥିଲି ଏବଂ ଦ୍ୱିତୀୟତଃ ପଢ଼ା ଯେ ମୋ'ର କର୍ତ୍ତବ୍ୟ ଓ ତଦ୍‌ପେକ୍ଷା ପିତାଙ୍କ ସେବା ଯେ ଗୁରୁତର କର୍ତ୍ତବ୍ୟ, ଏକଥା ମୁଁ ଉତ୍ତମ ଭାବେ ଜାଣି ଥିଲେହେଁ ଐନ୍ଦ୍ରିକ ସୁଖ ଆଗରେ ଏ ସବୁ କର୍ତ୍ତବ୍ୟ ଜ୍ଞାନ ଭୁଲି ଯାଇଥିଲି । ପ୍ରତି ଦିନ ରାତି ମୁଁ ଯେତେବେଳେ ପିତାଙ୍କର ଗୋଡ଼ ଘଷୁଥାଏ ମୋ'ର ମନ ଶୋଇବା ଘରକୁ ଦୌଡ଼ିବାକୁ ଲାଗେ । ଏବଂ ସ୍ତ୍ରୀ ସହବାସ ଅଭିଲାଷ ଧର୍ମ, ଆୟୁର୍ବେଦ ଓ ବିବେକ ବିରୁଦ୍ଧ କଥା ହେଲେହେଁ ତାହା ମୋ ମନରେ ଖେଳୁଥାଏ । ପିତାଙ୍କ ସେବାରୁ ଅବ୍ୟାହତି ପାଇଲେ ମୁଁ ଆନନ୍ଦିତ ହୁଏ ଏବଂ ତାଙ୍କୁ ପ୍ରଣାମ କରି ଶୋଇବା ଘରକୁ ସିଧା ଚାଲିଯାଏ ।

ପିତା ଦିନୁ ଦିନ ଦୁର୍ବଳ ହୋଇ ପଡ଼ୁଥିଲେ । ଆୟୁର୍ବେଦୀୟ ବୈଦ୍ୟମାନେ ସମସ୍ତ ପ୍ରକାର ଔଷଧ ଚେଷ୍ଟା କରି ସାରିଲେଣି । ଜଣେ ଇଂରେଜ ଡ଼ାକ୍ତର ମଧ୍ୟ ହାତ ମାରିଲେଣି । ପରିଶେଷରେ କାଟିବା କେବଳ ଏକମାତ୍ର ପ୍ରତିକାର ବୋଲି ସେ ପରାମର୍ଶ ଦେଇଥିଲେ । କିନ୍ତୁ ଘରର ଡ଼ାକ୍ତର ତାହା ନାମଞ୍ଜୁର କଲେ । ବୃଦ୍ଧ ବୟସରେ ଘାଆ କାଟିବା ସେ ଉଚିତ ମନେ କରି ନଥିଲେ । ବୈଦ୍ୟଙ୍କ ନାମଜାଦା ଓ ଶକ୍ତିଶାଳୀ— ସୁତରାଂ ତାଙ୍କର କଥା ରହିଲା । କାଟିବା କଥା ବନ୍ଦ ହେଲା ଏବଂ ଘାଆପାଇଁ ଯେଉଁ ସବୁ ଔଷଧ କିଣା ଯାଇଥିଲା ତହିଁରୁ କିଛି ଫଳ ହେଲାନାହିଁ । ବୈଦ୍ୟ ଯଦି କାଟିବା ପାଇଁ ଅନୁମତି ଦେଇଥାନ୍ତେ ତାହା-ହେଲେ ଘାଆଟି ଶୁଖି ଯାଇଥାନ୍ତା; ତାହା ମଧ୍ୟ ବୋମ୍ବାଇର ଜଣେ ନାମଜାଦା ଡ଼ାକ୍ତରଙ୍କ ଦ୍ୱାରା ହେବାର କଥା ଥିଲା । କିନ୍ତୁ ଈଶ୍ୱରଙ୍କ ଇଚ୍ଛା ଅନ୍ୟ ପ୍ରକାର ; ମରଣ ଯେତେବେଳେ ଅନିବାର୍ଯ୍ୟ, ପ୍ରକୃତ

ପ୍ରତିକାର କଥା ଭାବୁଛି କିଏ ? ଘାଅ କଟାଇବା ଲାଗି ଯେଉଁ ସରଞ୍ଜାମ ବୋମ୍ବାଇ ଯାଇଥିଲି ସେସବୁ ଧରି ପିତା ଫେରି ଆସିଲେ । ଆଉ ବେଶିଦିନ ଜୀବିତ ରହିବା ଆଶା ସେ ଛାଡ଼ି ଦେଇଥିଲେ । ଦିନୁଁଦିନ ଦୁର୍ବଳ ହୋଇଗଲେ । ସୁତରାଂ ଆବଶ୍ୟକୀୟ କାର୍ଯ୍ୟ ସବୁ ଶେଯ ଉପରେ କରିବାପାଇଁ ଆମ୍ଭେମାନେ ତାଙ୍କୁ କହିଲୁ କିନ୍ତୁ ଶେଷ ମୁହୂର୍ତ୍ତିଯାଏ ତାହା କରିବା ପାଇଁ ସେ ଅମଙ୍ଗ ହୋଇଥିଲେ ଓ କଷ୍ଟ ହେଲେହେଁ ଶଯ୍ୟା ଛାଡ଼ିବାକୁ ଧରି ବସୁଥିଲେ । ବାହ୍ୟ ନିର୍ମଳତା ସମ୍ବନ୍ଧେ ବୈଷ୍ଣବ ମାନଙ୍କର ନିୟମ ବଡ଼ କଠିନ । ଏପରି ପରିଚ୍ଛନ୍ନତା କିନ୍ତୁ ପାଶ୍ଚାତ୍ୟ ଔଷଧ ବିଜ୍ଞାନରୁ ଆମ୍ଭେମାନେ ଜାଣୁ । ଗାଧୋଇବାଠାରୁ ଆରମ୍ଭ କରି ସବୁ କାର୍ଯ୍ୟ ପ୍ରଚ୍ଛନ୍ନ ଭାବେ ଓ ରୋଗୀକୁ ଅସୁବିଧା ନଦେଇ ଶଯ୍ୟା ଉପରେ ଶେଷ କରିବାକୁ ହୁଏ । କିନ୍ତୁ ଶେଯଟି ପ୍ରଚ୍ଛନ୍ନ ଥାଏ । ଏହିପରି ପ୍ରକ୍ରିୟତାକୁ ମୁଁ ବୈଷ୍ଣବ ଧର୍ମର ପ୍ରଚ୍ଛନ୍ନତା ସଙ୍ଗେ ସମାନ ବିବେଚନା କରିପାରେ । କିନ୍ତୁ ସମସ୍ତ କାର୍ଯ୍ୟ ଶେଷ କରିବା ପାଇଁ ଶଯ୍ୟା ତ୍ୟାଗ କରିବା ସକାଶେ ପିତା ଯେ ଧରି ବସୁଥିଲେ ତାହା ଦେଖି ମୁଁ ବଡ଼ ବିସ୍ମିତ ହେଉଥିଲି ।

ଭୟାନକ ରାତି ଆସିଲା । ମୋ'ର ପିତୃବ୍ୟ ସେତେବେଳେ ରାଜକୋଟରେ ଥିଲେ । ପିତାଙ୍କର ଅବସ୍ଥା ନିତାନ୍ତ ଖରାପ ହୋଇ ଯାଉଛି ଶୁଣି ସେ ରାଜକୋଟରୁ ଆସି ଥିବା କଥା ମୋ'ର ଅଳ୍ପ ମନେ ହେଉଛି । ଦୁଇଭାଇ ପରସ୍ପର ବଡ଼ ଭଲ ପାଉଥିଲେ । ପିତୃବ୍ୟ ଦିନଯାକ ପିତାଙ୍କ ଶେଯ ପାଖରେ ବସିଥାନ୍ତି ଓ ଆମକୁ ଘଉଡ଼ି ଦେଇ ସେ ତାଙ୍କ ପାଖରେ ଶୋଇବା ପାଇଁ ଧରି ବସୁଥାନ୍ତି । କେହିହେଲେ ଜାଣି ନଥିଲେ ଯେ ସେ ରାତିରେ ଆମର କପାଳ ଫାଟିବ । କିନ୍ତୁ ଉକ୍ତ ଭୟରୁ ରକ୍ଷା ପାଇବା କଥା ନୁହେ । ସାଢ଼େ ୧୦ କିମ୍ବା ୧୧ ଘଣ୍ଟା ସମୟ—ମୁଁ ପିତାଙ୍କ ଗୋଡ଼ ଘଷୁଥିଲି । ପିତୃବ୍ୟ ନିଜେ ଘଷିବାପାଇଁ କହିଲେ । ମୁଁ

ବଡ଼ ଆନନ୍ଦିତ ହୋଇ ଶୋଇବା ଘରକୁ ଚାଲିଗଲି । ନିଶ୍ଚୟ ଅବଳା (ମୋ'ର ସ୍ତ୍ରୀ) ଗାଢ଼ ନିଦ୍ରା ଯାଇଥିଲା । କିନ୍ତୁ ମୁଁ ଯେତେବେଳେ ସେଠାକୁ ଗଲିଣି ସେ ବା ଶୋଇବ କିପରି ? ମୁଁ ତାକୁ ଉଠାଇ ଦେଲି । କିନ୍ତୁ ୫ । ୭ ମିନିଟ ପରେ ଚାକର ଆସି କବାଟକୁ ମାରିଲା । ମୁଁ ଚମକି ପଡ଼ିଲି 'ଉଠ ଉଠ ବାପାଙ୍କ ଅବସ୍ଥା ଅତି ଖରାପ' ବୋଲି ସେ ଯେତେ-ବେଳେ କହିଲା ମୁଁ ବୁଝିନେଲି 'ଅତିଖରାପ'ର ଅର୍ଥ କଅଣ । ଶେଯ ଉପରୁ ଡେଇଁ ପଡ଼ି ତାକୁ ପଚାରିଲି "କଅଣ ହେଲା ଶୀଘ୍ର କହ," "ପିତା ଆଉ ନାହାନ୍ତି" ବୋଲି ଉତ୍ତର ମିଳିଲା ।

ତେବେ ସବୁ ଶେଷ ! ମୁଁ କେବଳ କର କଚାଡ଼ିବାକୁ ଲାଗିଲି । ବଡ଼ ଲଜ୍ଜିତ ଓ ମର୍ମାହତ ହେଲି । ପିତାଙ୍କର ବଖରାକୁ ଧାଇଁ ଯାଇ ଦେଖିଲି ସେ ଆଉ ଜୀବନରେ ନାହାନ୍ତି । ପାଶବିକ ଆସକ୍ତି ଯେବେ ଯଦି ମୁଁ ଅନ୍ଧ ହୋଇ ନଥାନ୍ତି ତେବେ ଶେଷ ମୁହୂର୍ତ୍ତରେ ପିତାଙ୍କ ନିକଟରୁ ଅନ୍ତର ହେବା ଯୋଗୁଁ ଯେଉଁ ବେଦନା ଅନୁଭବ କରିଥିଲି ସେଥିରୁ ରକ୍ଷା ପାଇ ଥାନ୍ତି । ମୁଁ ତାଙ୍କୁ ଘସୁଥାନ୍ତି ସେ ମୋ ହାତରେ ପ୍ରାଣ ଛାଡ଼ିଥାନ୍ତେ । କିନ୍ତୁ ସେ ସୁଯୋଗ ଓ ସମ୍ମାନ ପିତୃବ୍ୟ କେବଳ ପାଇଲେ । ବଡ଼ ଭାଇ ପ୍ରତି ସେ ଏତେଦୂର ଅନୁରକ୍ତ ଥାନ୍ତି ଯେ, ଶେଷ ସେବା କରିବାରେ ତାଙ୍କର ଅଧିକାର ରହିଲା । ଶେଷ ଅବସ୍ଥା ସମ୍ବନ୍ଧେ ପିତା ପୂର୍ବରୁ ଜାଣିପାରି କାଗଜ କଲମ ମଗାଇ ଲେଖିଥିଲେ ଯେ "ଶେଷ କ୍ରିୟା ପାଇଁ ଯତ୍ନ କର ।" ବାଜବନ୍ଧ ହାତରୁ କାଢି ଦେଇଥିଲେ । ସୁନା ଶିକୁଳିରେ ଗୁନ୍ଥା ଯାଇ-ଥିବା ତୁଳସୀ ମାଳାଟି ପାଖରେ ଥୋଇ ଦେଇଥିଲେ । କିଛି କ୍ଷଣପରେ ତାଙ୍କର ପ୍ରାଣ ବାୟୁ ଉଡ଼ି ଯାଇଥିଲା । ମୁଁ ଯେ ପୂର୍ବେ ମୋ'ର ଅପମାନର କଥା କହୁଥିଲି, ତାହା ଆଉ କିଛି ନୁହେ, ମୋ'ର ଐନ୍ଦ୍ରିକ ସୁଖାଭିଳାଷ ମାତ୍ର । ଯେତେବେଳେ ମୁଁ ପିତାଙ୍କୁ ସେବା କରିବା କଥା, ସେହି ଗୁରୁତର

ଓ ସଙ୍କଟାପନ୍ନ ସମୟରେ ମୋ'ର ଯେ କାମର ଉଦ୍ରେକ ହୋଇଥିଲା ତାହା କେବଳ ଅପମାନ ଛଡ଼ା ଆଉ କିଛି ନୁହେ । ମୁଁ ସେହି କଳଙ୍କ ମୋଚନ କରି ନପାରେ । ପିତା ମାତାଙ୍କ ପ୍ରତି ମୋ'ର ପ୍ରଗାଢ଼ ଅନୁରାଗ ଥାଏ ଓ ସେମାନଙ୍କ ଲାଗି ମୁଁ ଆତ୍ମୋତ୍ସର୍ଗ ମଧ୍ୟ କରିପାରେ ବୋଲି ଜାଣିଥିଲେହେଁ ମନ ଯେ କାମର କବଳରେ ପଡ଼ିଥିଲା, ସେହି ସ୍ଖଳନ କ୍ଷମଣୀୟ ନୁହେ । ସୁତରାଂ ମୁଁ ସବୁବେଳେ ନିଜକୁ ଜଣେ ( ବିଶ୍ୱସ୍ତ ହେଲେହେଁ ) କାମୁକପତି ବୋଲି ବିବେଚନା କରୁଅଛି । କାମ ଚକ୍ଷୁରୁ ରକ୍ଷା ପାଇବା ପାଇଁ ମତେ ବହୁଦିନ ଲାଗିଥିଲା । କାମର ଗତିରୋଧ କରିବା ପୂର୍ବରୁ ମୁଁ ଅନେକ ଯନ୍ତ୍ରଣା ଓ ପରୀକ୍ଷା ଭେଦ କରିଥିଲି ।

ଏହି ପରିଚ୍ଛେଦଟି ଶେଷ କରିବା ପୂର୍ବରୁ ଆଉ ପଦେ ଅଧେ କୁହାଯାଇ ପାରେ । ମୋ'ର ଯେ ଗୋଟିଏ ଝିଅ ଜନ୍ମ ହୋଇଥିଲା ସେ କେବଳ ୩ । ୪ ଦିନ ଜୀଇଁଥିଲା । ତା'ଠାରୁ ଆଉ କିଛି ଅଧିକ ଆଶା ମଧ୍ୟ କରିବା କଥା ନୁହେ । ମୋ'ର ଏହି ଦୃଷ୍ଟାନ୍ତ ଦେଖି ସବୁ ଅଭିଭାବକ ଓ ଦମ୍ପତି ସତର୍କ ହେବା ଉଚିତ ।



## ଦଶମ ପରିଚ୍ଛେଦ ।

( ଧର୍ମର କ୍ଷୀଣାଭାଷ )



ଛଅ କିମ୍ବା ସାତ ବର୍ଷ ବୟସଠାରୁ ଷୋଡ଼ଶ ବର୍ଷ ଯାଏ ମୁଁ ପଢ଼ୁଥିଲି । ବିନା କଷ୍ଟରେ ଶିକ୍ଷକମାନେ ମୋତେ ଯାହା ଶିକ୍ଷା ଦେଇପାରି ଥାନ୍ତେ, ତାହା ମୁଁ ସେମାନଙ୍କଠାରୁ ପାଇପାରି ନଥିଲି—ଏହା ମୁକ୍ତ କଣ୍ଠରେ ମୁଁ ସ୍ୱୀକାର କରୁଛି । ତଥାପି ପାଖ ପଡ଼ଶାରେ ମୁଁ ଯାହା ଦେଖେ

ସେଥିରୁ କିଛି କିଛି ବାଛି ମୁଁ ନଜର କରଥିଲି । ଆତ୍ମଜ୍ଞାନ କେବଳ ପ୍ରକୃତ ଧର୍ମ । ଧର୍ମ ପଦକୁ ମୁଁ ପ୍ରକୃତ ଅର୍ଥରେ ବ୍ୟବହାର କରୁଛି ।

ବୈଷ୍ଣବ ଧର୍ମରେ ମୁଁ ଜନ୍ମ ହୋଇଥିବା ଯୋଗୁଁ ମୋତେ ବେଶି ସମୟ 'ହାବେଲି'କୁ ଯିବାକୁ ପଡ଼େ । କିନ୍ତୁ ମୁଁ ସେଥିରେ ତୃପ୍ତ ହୋଇ ନଥାଏ, ତାହାର ଚାକଚକ୍ୟ ଦେଖି ମୋତେ ଅଡୁଆ ବୋଧହୁଏ ଏବଂ ମୁଁ ଯେତେବେଳେ ଶୁଣିଲି ଯେ ସେଠାରେ ଅନେକ ଅନୀତି କରାଯାଉଅଛି ସେଥିରେ ମୋ'ର ସମୁଦାୟ ଅନୁରାଗ ଛାଡ଼ିଗଲା । 'ହାବେଲି'ରୁ ମୁଁ କିଛି ଲାଭ ପାଇଲିନାହିଁ ।

କିନ୍ତୁ ସେଠାରୁ ମୁଁ ଯାହା ପାଇପାରି ନଥିଲି ମୋ'ର ଧାଈ ତାହା ଶିଖାଇ ଦେଇଥିଲା । ଆମ୍ଭ ଘରର ସେ ଜଣେ ପୁରୁଣା ଚାକରାଣୀ । ମୋ'ପ୍ରତି ତାହାର ଯେଉଁ ସ୍ନେହ ତାହା ମୁଁ ପାସୋରି ନପାରେ । ମୁଁ ପୂର୍ବେ କହିଛି, ପ୍ରେତ ପିଶାଚ ବୋଲି ମୋ ମନରେ ଗୋଟାଏ ଦକ ଥାଏ । ରମ୍ଭା ( ମୋର ଧାଈର ନାଆଁ ) ଏହି ଭୟର ପ୍ରତିକାର ସ୍ୱରୂପ ରାମନାମ ଜପିବାପାଇଁ କହିଲା । ତାହାର ପ୍ରତିକାର ଉପାୟ ଅପେକ୍ଷା ତାହାଠାରେ ମୋ'ର ବଡ଼ ବିଶ୍ୱାସ । ସୁତରାଂ ଭୂତ ପ୍ରେତ ଭୟରୁ ରକ୍ଷା ପାଇବା ପାଇଁ ମୁଁ ସେହି କୋମଳ ବୟସରୁ ରାମନାମ ଜପିବା ଆରମ୍ଭ କଲି । ଏହା ଅବଶ୍ୟ ଅଳ୍ପ ଦିନ ସକାଶେ କରିଥିଲି—କିନ୍ତୁ ବାଲ୍ୟାବସ୍ଥାରେ ଯେଉଁ ବୀଜ ପଡ଼ିଥିଲା ତାହା ବୃଥା ଯିବାର ନୁହେ । ରମ୍ଭା ମୋତେ ଧର୍ମର କ୍ଷୀଣ ଆଭାସ ଦେଇଥିବା ଯୋଗୁଁ ରାମନାମ ଆଜି ମୋ'ପକ୍ଷେ ଏକ ଅଭ୍ରାନ୍ତ ପ୍ରତିକାର ହୋଇ ରହିଅଛି ।

ଠିକ୍ ଏହି ସମୟରେ ମୋ'ର ଜଣେ ରାମାୟଣ ଭକ୍ତ ଜ୍ଞାତି ଭାଇ 'ରାମରକ୍ଷା' ଶିଖିବା ପାଇଁ ଠିକଣା କଲେ । ଆମ୍ଭେ ଦୁହେଁ ତାହା ମୁଖସ୍ଥ

କରି ଗାଯୋଇଲ୍ଲା ପରେ ପାରାୟଣ କରିବା ସହାରେ ନିୟମ ଥିଲା । ପୋରବନ୍ଦରରେ ଥିବା ସମୟଗୁଡ଼ିକ ଏହି ଅଭ୍ୟାସ ଥିଲା କିନ୍ତୁ ରାଜକୋଟରେ ଯେତେବେଳେ ପହଞ୍ଚିଲୁ 'ରାମରକ୍ଷା' ପାରାୟଣରେ ବ୍ୟତିକ୍ରମ ଘଟିଲା । ବିଶେଷ କଥା, ଆମ୍ଭର ସେଥିରେ ବେଶି ବିଶ୍ୱାସ ମଧ୍ୟ ନଥିଲା । ଏକ ପକ୍ଷରେ ସେହି ଭାଇଙ୍କ ପ୍ରତି ଭକ୍ତି ଓ ଅନ୍ୟ ପକ୍ଷରେ 'ରାମରକ୍ଷା' ବହିଟି ବିଶୁଦ୍ଧ ଭାବେ ଉଚ୍ଚାରଣ କରି ପଢ଼ି ପାରୁଛି ବୋଲି ମୋ ମନରେ ଯେ ଗର୍ବ ଆସେ ସେଥିଲାଗି ମୁଁ ତାହା ପାରାୟଣ କରୁଥିଲି ।

ପିତାଙ୍କ ନିକଟରେ ମୁଁ ଯେଉଁ ରାମାୟଣ ଶୁଣୁଥିଲି ତଦ୍ୱାରା ମୋ'ର ବେଶି ଉପକାର ହୋଇଅଛି । ଅସୁସ୍ଥ ଥିଲାବେଳେ ମୋ'ର ପିତା ପୋର୍-ବନ୍ଦରଠାରେ କେତେ ଦିନ ପାଇଁ ଥିଲେ । ସେଠାରେ ପ୍ରତିଦିନ ସେ ରାମାୟଣ ଶୁଣୁଥାନ୍ତି । ବିଲେଶ୍ୱର ବାସୀ ଲଧା ମହାରାଜ ପିତାଙ୍କ ନିକଟରେ ରାମାୟଣ ପଢ଼ୁଥିଲେ । ସେ ଜଣେ ପ୍ରଧାନ ରାମଭକ୍ତ । ଲୋକମୁଖରୁ ଶୁଣା ଯାଉଥିଲା ଯେ ବିନା ଔଷଧରେ ସେ ତାଙ୍କର କୁଷ୍ଠ ରୋଗ ଭଲ କରିଥିଲେ । ଯେଉଁ ସ୍ଥାନରେ କୁଷ୍ଠ ରୋଗର ଚିହ୍ନ ଦେଖା ଯାଉଥିଲା ସେଠାରେ ବିଲେଶ୍ୱର ମହାଦେବଙ୍କ ଅଙ୍ଗଛଡ଼ା ବେଲପତ୍ରୀ ବାନ୍ଧି ବୋଲିବା ଯୋଗୁଁ ଓ ରାମାୟଣ ପାରାୟଣ ହେତୁ ତାହା ଭଲ ହୋଇ ଯାଇଥିଲା । ତାଙ୍କର ବିଶ୍ୱାସ କେବଳ ତାଙ୍କୁ ରୋଗମୁକ୍ତ କରିଥିଲା ବୋଲି ଲୋକେ କହୁଥାନ୍ତି । ଏହା ସତ୍ୟ ହୋଇପାରେ କିମ୍ବା ନହୋଇ ପାରେ କିନ୍ତୁ ଆମ୍ଭେମାନେ କଥାଟା ବିଶ୍ୱାସ କଲୁଁ, ଏବଂ ମହାରାଜ ଯେତେବେଳେ ରାମାୟଣ ପଢ଼ା ଆରମ୍ଭ କଲେ ସେ କୁଷ୍ଠ ରୋଗରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ-ଥିଲେ । ତାଙ୍କର ସ୍ୱର ବଡ଼ କର୍ଣ୍ଣପ୍ରୀୟ । ସେ ସମୟକୁ ବୋଧହୁଏ ମୋ'ର ବୟସ ତେର ବର୍ଷ କିନ୍ତୁ ତାଙ୍କର ପଢ଼ାଶୁଣି ମୁଁ ବିମୁଗ୍ଧ ହୋଇଥିବା ମୋ'ର ସମ୍ପୂର୍ଣ୍ଣ ମନେଅଛି । ରାମାୟଣ ପ୍ରତି ମୋ'ର ଯେ ପ୍ରଗାଢ଼ ଅନୁରାଗ, ଏହି

ରାମାୟଣ ଶ୍ରବଣ ତାହାର ଉତ୍ତ କହିଲେ ଚଳେ । ତୁଳସୀଦାସ ରାମାୟଣ କେବଳ ସମସ୍ତ ଧର୍ମ ସାହିତ୍ୟରେ ଏକମାତ୍ର ଭଲ ପୁସ୍ତକ ବୋଲି ମୁଁ ଭାବନା କରେ ।

କିଛିଦିନ ପରେ ଆମ୍ଭେ ରାଜକୋଟ ଆସିଲୁଁ । ସେଠାରେ ରାମାୟଣ ପଢ଼ା ହେଉ ନଥିଲା—କିନ୍ତୁ ପ୍ରତି ଏକାଦଶୀ ଦିନ ଭାଗବତ ପଢା ହେଉଥାଏ । ଦିନେ ଦିନେ ମୁଁ ସେ ପଢ଼ାରେ ଯୋଗଦିଏ କିନ୍ତୁ ତଦ୍ୱାରା ମୋ'ର ଉତ୍ସାହ ଜନ୍ମି ନଥିଲା । ମୁଁ ଏବେ ଦେଖୁଛି ଭାଗବତ ଏପରି ଗୋଟିଏ ପୁସ୍ତକ ଯାହାକି ଧର୍ମରେ ଅନୁରାଗ ଜନ୍ମାଇ ପାରେ । ଗୁଜରାଟ ଭାଷା ଲିଖିତ ଭାଗବତ ମୁଁ ପ୍ରଗାଢ଼ ଅନୁରାଗର ସହିତ ପଢିଥିଲି । କିନ୍ତୁ ମୋ'ର ୨୧ଦିନିଆଁ ଉପବାସ ସମୟରେ ମୁଁ ଯେତେବେଳେ ପଣ୍ଡିତ ମଦନ ମୋହନ ମାଲବ୍ୟଙ୍କଠାରୁ ଭାଗବତର କିଛି ଅଂଶ ଶୁଣିଲି ମନେ ହେଲା ଯେ ମୋ'ର ବାଲ୍ୟାବସ୍ଥାରେ ତାଙ୍କପରି ଜଣେ ଭକ୍ତ ଠାରୁ ତାହା ଶୁଣିଥିଲେ ଭାଗବତ ପ୍ରତି ମୋ'ର ଶିଶୁ ବୟସରେ ସ୍ପୃହା ଅନୁରାଗ ଜନ୍ମି ଥାନ୍ତା । ସେହି ସମୟରେ ଯେଉଁ ଧାରଣା ହୁଏ ତାହା ଜୀବନର ସ୍ୱଭାବରେ ଲାଗି ରହେ । ସେହି ସମୟରେ ଭଲ ଭଲ ବହି ପଢ଼ିବା ଯେ ମୋ' ଭାଗ୍ୟରେ ଘଟି ନଥିଲା ସେଥିଲାଗି ମୁଁ ସବୁବେଳେ ଅନୁତପ୍ତ ।

ସେ ଯାହାହେଉ ମୁଁ ରାଜକୋଟରେ ଥିଲାବେଳେ ହିନ୍ଦୁ ଧର୍ମର ଅନ୍ୟାନ୍ୟ ବିଭାଗ ଓ ଅନ୍ୟଧର୍ମ ପ୍ରତି ସମଭାବରେ ଦେଖିବା ପାଇଁ ଶିକ୍ଷା କରିଥିଲି । କାରଣ ମୋ'ର ପିତା ମାତା 'ହାବେଲି'କୁ ଯିବା ସଙ୍ଗେ ସଙ୍ଗେ ଶିବ ଓ ରାମ ମନ୍ଦିରକୁ ମଧ ଯାଉଥାନ୍ତି ଓ ଆମ୍ଭମାନଙ୍କୁ ସେଠାକୁ ଯିବା ପାଇଁ କହନ୍ତି କିମ୍ବା ସଙ୍ଗରେ ନିଅନ୍ତି । ଜୈନ ଧର୍ମାବଲମ୍ବୀ ମହନ୍ତ-ମାନେ ମଧ ମୋ'ର ପିତାଙ୍କଠାକୁ ଅନେକଥର ଆସୁଥାନ୍ତି ଓ ଆମ୍ଭଘରେ

ଖାଇବା ପାଇଁ କୁଣ୍ଠା ବୋଧ କରନ୍ତି ନାହିଁ । ଧର୍ମ ସମ୍ବନ୍ଧୀୟ ଓ ସାଧାରଣ ବିଷୟ ନେଇ ସେମାନେ ମୋ ପିତାଙ୍କ ସହିତ କଥାବାର୍ତ୍ତା ହେଉଥାନ୍ତି ।

ଏହା ଛଡ଼ା ପିତାଙ୍କର ପାର୍ଶି ଓ ମୁସଲମାନ ବନ୍ଧୁ ମଧ୍ୟ ଅନେକ ଥାଆନ୍ତି । ସେମାନେ ନିଜ ନିଜର ଧର୍ମ ସମ୍ବନ୍ଧେ ତାଙ୍କୁ କହୁଥାନ୍ତି । ବଡ଼ ଆଦରର ସହିତ ସେ ସେମାନଙ୍କର କଥା ଶୁଣନ୍ତି । ମୁଁ ପିତାଙ୍କର ସେବା କରୁଥାଏ ବୋଲି ଏହି ସବୁ କଥାରେ ଯୋଗ ଦେବାପାଇଁ ମୋ'ର ସୁବିଧା ହୋଇ-ଥାଏ । ଏସବୁ ଲାଗି ମୋ'ଠାରେ ସବୁ ଧର୍ମ ପ୍ରତି ସମାନ ଭାବର ଉଦ୍ରେକ ହେଲା ।

ସେତେବେଳେ ମୁଁ ଖ୍ରୀଷ୍ଟ ଧର୍ମକୁ କେବଳ ବାଦ ଦେଇଥିଲି । କାରଣ ମୋ'ର ସେଥି ପ୍ରତି ଘୃଣା ଥାଏ । ସେ ସମୟରେ ଖ୍ରୀଷ୍ଟଧର୍ମ ପ୍ରଚାରକମାନେ ସ୍କୁଲ ନିକଟରେ ଛିଡ଼ା ହୋଇ ହିନ୍ଦୁମାନଙ୍କୁ ଓ ହିନ୍ଦୁ ଦେବତାମାନଙ୍କୁ ଗାଳି ଦେଉଥାନ୍ତି, ଏହା ମୁଁ ସହ୍ୟ କରିପାରେ ନାହିଁ । ଥରେ କେବଳ ମୁଁ ତାହା ଶୁଣିବା ପାଇଁ ସେଠାରେ ଛିଡ଼ା ହୋଇଥିଲି । କିନ୍ତୁ ସେହିଥର ଛଡ଼ା ଆଉ କେବେ ସେଠାକୁ ଯିବା ସକାଶେ ମୋ'ର ମନ ବଳିନଥିଲା । ଠିକ ସେତେବେଳେ ମୁଁ ଶୁଣିଲି ଯେ ଜଣେ ନାମ-ଜାଦା ହିନ୍ଦୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିଅଛନ୍ତି । ଲୋକେ କହୁଥିଲେ ଯେ, ତାଙ୍କର ଯେତେବେଳେ ଉତ୍ତବନ ହୁଏ ତାଙ୍କୁ ଗୋମାଂସ ଭକ୍ଷଣ ଓ ସୁରା-ପାନ କରିବା ପାଇଁ ପଡ଼ିଥିଲା ଓ ପୋଷାକ ସବୁ ପରିବର୍ତ୍ତନ କରି ସେ ଦିନଠାରୁ ୟୁରୋପିଅନ ପୋଷାକ ପିନ୍ଧିବାକୁ ହୋଇଥିଲା । ମୁଁ ଭାବିଲି ଯେଉଁ ଧର୍ମ ମାଂସ ଭକ୍ଷଣ ଓ ସୁରାପାନ କରିବା ପାଇଁ ଓ ପୋଷାକ ପରିବର୍ତ୍ତନ କରିବା ପାଇଁ ବାଧ୍ୟ କରେ ତାହା ବାସ୍ତବରେ ଧର୍ମ ପଦବାଚ୍ୟ ନୁହେ । ଆହୁରି ମୁଁ ଶୁଣିଲି ଉକ୍ତ ହିନ୍ଦୁ ଜଣକ ଉତ୍ତବନ ପରେ ତାଙ୍କ

ପୂର୍ବ ପୁରୁଷଙ୍କ ଧର୍ମ, ବ୍ୟବହାର ଓ ଦେଶ ପର୍ଯ୍ୟନ୍ତକୁ ମଧ ନିନ୍ଦା କରିବା ଆରମ୍ଭ କରି ସାରିଲେଣି । ଏସବୁ ହେତୁ ଖ୍ରୀଷ୍ଟଧର୍ମ ପ୍ରତି ମୋ'ର ଘୃଣା ଥାଏ ।

ମୁଁ ଯେ ସମସ୍ତ ଧର୍ମ ପ୍ରତି ସମାନ ଦେଖିବା ଶିଖିଥିଲି, ଏଥିରୁ ଅନୁମାନ କରି ଯାଇନପାରେ ଯେ ଭଗବାନଙ୍କଠାରେ ମୋ'ର ଏକାନ୍ତ ବିଶ୍ୱାସ ଥିଲା । ଏହି ସମୟରେ ମୁଁ ପିତାଙ୍କ ପୁସ୍ତକାଳୟରୁ ମନୁସ୍ମୃତି ପଢିଲି । ସୃଷ୍ଟି ଆଦି ସେହିପରି ଅନେକ କଥାର ଇତିହାସ ପଢି ମୁଁ କିଛି ବୁଝି ପାରୁନଥିଲି । ପଶ୍ଚାତ୍ତରେ ତାହା ପଢ଼ି ମୁଁ ନାସ୍ତିକ ଧର୍ମ ଆଡ଼କୁ ଢଳିଲି । ମୋ'ର ଜଣେ ଜ୍ଞାତି ଭାଇ [ ଅଦ୍ୟାପି ଜୀବିତ ] ଥିଲେ । ତାଙ୍କର ମେଧା ପ୍ରତି ମୋ'ର ବେଶି ସମ୍ମାନ ଥାଏ । ଧର୍ମ ସମ୍ବନ୍ଧେ ମୋ'ର ସନ୍ଦେହ ମୋଚନ କରିବା ପାଇଁ ମୁଁ ତା'ଙ୍କଠାକୁ ଗଲି, କିନ୍ତୁ ସେ ତାହା ସମାଧାନ କରି "ତୁମେ ଯେତେବେଳେ ବୟୋବୃଦ୍ଧ ହେବ ନିଜେ ନିଜେ ଏସବୁ ସନ୍ଦେହ ଦୂର କରି ପାରିବ । ତୁମର ଏହି ସମୟରେ ଏପରି ପ୍ରଶ୍ନ ଉଠାଇବା ଉଚିତ ନୁହେଁ"—ଏହି ଉତ୍ତର ଦେଇ ମୋତେ ସେ ଘଉଡ଼ି ଦେଲେ । ମୁଁ ନୀରବ ରହିଲି କିନ୍ତୁ ସନ୍ତୁଷ୍ଟ ହେଲିନାହିଁ । ମନୁସ୍ମୃତିରେ ଖାଦ୍ୟ ପ୍ରଭୃତି ବିଷୟ ନେଇ ମୁଁ ଯାହା ପଢିଥିଲି ସେ ସବୁ ଆମ ଦୈନିକ ବ୍ୟବହାର ବିରୋଧ ପରି ମୋତେ ବୋଧ ହେଲା ।

ଉକ୍ତ ଜ୍ଞାତି ଭାଇଙ୍କଠାରୁ ବୁଝି ଏହି ସନ୍ଦେହ ଦୂର କରିବା ପାଇଁ ମଧ ଚେଷ୍ଟା କଲି କିନ୍ତୁ ପୂର୍ବପରି ସେ ଉତ୍ତର ଦେଇଥିଲେ । ମୁଁ ସ୍ଥିର କଲି ଯେ ବେଶି ପଢ଼ାପଢି କରି ମୋର ମେଧା ଶକ୍ତି ପରିପକ୍ୱ ହେଲାପରେ ଏସବୁ ବିଷୟ ବୁଝିବା ଚେଷ୍ଟା କରିବି । ମନୁସ୍ମୃତି ମାଂସ ଭୋଜନର ଯେ ପକ୍ଷପାତୀ ଏହି କଥା ମଧ୍ୟ ବୁଝିଲି ଏବଂ ମଶା ଓ ଛାରପୋକ ମାରିବା ନୀତି ବିରୁଦ୍ଧ

କଥା ନୁହେ ବୋଲି ମଧ୍ୟ ମୋ ମନରେ ଧାରଣା ହେଲା । ସେ ସମୟରେ ଖରପୋକ ପ୍ରଭୃତିଙ୍କୁ ମାରିବା କର୍ତ୍ତବ୍ୟ ବିବେଚନା କରି ସେମାନଙ୍କର ପ୍ରାଣନେବା ମୋର ମନେ ଅଛି ।

କିନ୍ତୁ ନୈତିକ ଜୀବନ ସବୁ କଥାର ଭିତ୍ତି ଏବଂ ସତ୍ୟ ଯେ ତାହାର ସାରାଂଶମାତ୍ର ଏହା ମୋର ହୃଦୟ ପଟରେ ଯେପରି ଅଙ୍କିତ ରହିଗଲା । ସତ୍ୟ କେବଳ ବାସ୍ତବ ରାଜ୍ୟର ବସ୍ତୁ ବୋଲି ବିବେଚନା କଲି । ଦିନୁଁ ଦିନ ଏହି ଭାବନା ବଢ଼ିବାକୁ ଲାଗିଲା ଏବଂ ମୁଁ ଯେଉଁ ଭାବରେ ସତ୍ୟର ଅର୍ଥ ବୁଝିଛି ତାହା କ୍ରମେ କ୍ରମେ ପରିବର୍ତ୍ତିତ ହେଉଅଛି ।

ଏହା ଛଡ଼ା ନୀତି ଗର୍ଭିକ ଏକ ଗୁଜରାଟି ପଦ୍ୟ ମଧ୍ୟ ମୋର ମନକୁ ବିମୁଗ୍ଧ କରି ପକାଇଥିଲା । ଅପକାରୀର ଉପକାର କରିବା ଉପଦେଶ ସେଥିରୁ ଶିଖିଲି ଓ ତାହା ମୋର ପଥ ଦର୍ଶକ ନୀତି ହେଲା ।



## ଏକାଦଶ ପରିଚ୍ଛେଦ ।

### ( ବିଲାତ ଯାତ୍ରାର ଯୋଗାଡ଼ )



୧୮୮୭ ସାଲରେ ମୁଁ ମେଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି । ଅହମଦାବାଦ ଓ ବୋମ୍ବାଇ ଏହି ଦୁଇ କେନ୍ଦ୍ରରେ ଉକ୍ତ ପରୀକ୍ଷା ହେଉଥାଏ ଓ କାଥିଆବାଡ଼ ଲୋକ ସାଧାରଣଙ୍କର ଦରିଦ୍ର ଅବସ୍ଥା ଯୋଗୁଁ ସେଠାର ଛାତ୍ରମାନେ ପାଖ ଓ ସ୍ୱଳ୍ପ ବ୍ୟୟ ସାପେକ୍ଷ କେନ୍ଦ୍ର ବାଛୁଥିଲେ । ଆମ୍ଭଘରର ସେହିପରି ଦରିଦ୍ର ଅବସ୍ଥା ଯୋଗୁଁ ସମସ୍ତେ ଯେଉଁ କେନ୍ଦ୍ରକୁ ଯାଉଥିଲେ ମୁଁ ମଧ୍ୟ ତାହା ବାଛିନେଲି । ରାଜକୋଟ ଠାରୁ ଅହମଦାବାଦକୁ ଯିବା ମୋର ଏହା ପ୍ରଥମ ଥର ଏବଂ ତାହା ମଧ୍ୟ ଏକାକୀ ।

ମେଟ୍ରିକ୍ୟୁଲେସନ ପାଶ କଲାପରେ ମୁଁ କଲେଜରେ ପଢ଼ିବାକୁ ହେବ ବୋଲି ମୋର ଅଭିଭାବକମାନେ ଇଚ୍ଛା କରୁଥିଲେ । ଭାବନଗର ଓ ବୋମ୍ବାଇ ଏହି ଦୁଇ ସ୍ଥାନରେ କେବଳ ଦୁଇଟି କଲେଜ ଥିଲା ଓ ପ୍ରଥମଟିରେ ପଢ଼ିଲେ ଅଳ୍ପ ଖରଚ ଲାଗିବ ଜାଣି ସେଠାର ଶାମଲ ଦାସ କଲେଜରେ ଭରତି ହେବା ପାଇଁ ମୁଁ ସ୍ଥିର କଲି । ସେଠାକୁ ଗଲି, ମୋତେ ସମୁଦ୍ରରେ ପଡ଼ିଲା ପରି ଲାଗିଲା । ସବୁ ବିଷୟ ବଡ଼ କଠିନ ହେଲା । ମୁଁ କିଛି ବୁଝି ପାରିଲି ନାହିଁ । କିନ୍ତୁ ତାହା ଅଧ୍ୟାପକମାନଙ୍କର ଦୋଷ ନୁହେ । ସେ କଲେଜର ଅଧ୍ୟାପକମାନେ ଉଚ୍ଚଧରଣର ବୋଲି ସମ୍ମାନ ପାଉଥିଲେ । ମୁଁ କେବଳ ଅପରିପକ୍ୱ ଥିଲି । ପ୍ରଥମ ଛଅ ମାସ ଶେଷ ହେଲାକ୍ଷଣି ମୁଁ ଛୁଟିରେ ଘରକୁ ଫେରିଲି ।

ମାବ୍‌ଜୀଦେବ୍ ଜଣେ ଚତୁର ଓ ଶିକ୍ଷିତ ବ୍ରାହ୍ମଣ । ସେ ଆମ୍ଭ ଘରର ଜଣେ ପୁରୁଣା ବନ୍ଧୁ ଓ ଉପଦେଶକ । ମୋର ପିତାଙ୍କ ମୃତ୍ୟୁପରେ ସୁଦ୍ଧା ସେ ଆମ୍ଭଘର ସହିତ ସଂପର୍କ ରଖିଥିଲେ । ସେ ମୋର ଛୁଟି ସମୟରେ ଆମ୍ଭଘର ଠାକୁ ବୁଲିବାକୁ ଆସିଥିଲେ । ମାଆ ଓ ବଡ଼ ଭାଇଙ୍କ ସହିତ କଥାବାର୍ତ୍ତା ହେଲାବେଳେ ମୋର ପଢ଼ା ସମ୍ବନ୍ଧେ ସେ ପଚାରିଲେ । ମୁଁ ଶାମଲଦାସ କଲେଜରେ ପଢ଼ୁଥିବା ଜାଣି ସେ କହିଲେ; "ସମୟର କେତେ ପରିବର୍ତ୍ତନ ଦେଖା ଗଲାଣି । ପ୍ରକୃତ ଶିକ୍ଷା ବିନା ତୁମ୍ଭମାନଙ୍କ ମଧ୍ୟରୁ କେହିହେଲେ ପିତାଙ୍କର ଗାଦିରେ ବସିବା ଆଶା କରିନପାର । ଏବେ ଏପିଲାଟି ପାଠ ପଢ଼ାରେ ଲାଗିଛି, ତୁମ୍ଭେ ସମସ୍ତେ ଦେଖିବାକୁ ହେବ ସେ ଯେପରି ପିତାଙ୍କ ଗାଦି ପୂର୍ଣ୍ଣ କରେ । ବି, ଏ, ଉପାଧି ପାଇବା ପାଇଁ ତାକୁ ଆଉ ଚାରି ପାଞ୍ଚ ବର୍ଷ ଲାଗିବ; ତଦ୍ଦ୍ୱାରା ସେ ଷାଠିଏ ଟଙ୍କାର ଗୋଟିଏ କାର୍ଯ୍ୟ ମାତ୍ର ପାଇବ କିନ୍ତୁ ଦିୱାନ ଗାଦିରେ ବସିବା ପାଇଁ ଅନୁପଯୁକ୍ତ ହେବ । ଯଦି ଆମ୍ଭ ପିଲାପରି, ଆଇନ ପଢ଼ିବାକୁ ସେ ଯାଏ, ତାହାହେଲେ ଆହୁରି ଅଧିକ

ସମସ୍ତ ଲାଗିବ—ସେ ସମସ୍ତଙ୍କୁ ପଲ ପଲ ଓକିଲ ହବାର କାର୍ଯ୍ୟ ପାଇଁ ଲାଳାୟିତ ହେବେ । ମୋର ଇଚ୍ଛା ତୁମେ ଯେପରି ତାଙ୍କୁ ଶୀଘ୍ର ବିଲାତ ପଠାନ୍ତୁ । ଆମର କେବଳରାମ କହେ ଯେ ବାରିଷ୍ଟର ହେବା ବଡ଼ ସହଜ । ତିନ ବର୍ଷ ପରେ ସେ ଫେରି ଆସିବ । ଚାରି କମ୍ବା ପାଞ୍ଚ ହଜାର ଟଙ୍କାରୁ ଅଧିକ ଖରଚ ମଧ୍ୟ ଲାଗିବ ନାହିଁ । ସେ ଯେ ବାରିଷ୍ଟର ବିଲାତରୁ ଏବେ ଫେରିଛନ୍ତି ତାଙ୍କ କଥା ଭାବନ୍ତ—କି ସୁନ୍ଦର ସେ ଅଛନ୍ତି । ମୋହନ ଦାସଙ୍କୁ ଏହି ବର୍ଷ ଏକା ବିଲାତ ପଠାଇବା ଉଚିତ ବୋଲି ମୁଁ କହେ । କେବଳ-ରାମର ବିଲାତରେ ଅନେକ ବନ୍ଧୁ—ସେମାନଙ୍କୁ ସେ ପରିଚୟ ପତ୍ର ଦେବ, ମୋହନ ଦାସ ସେଠାରେ ସୁଖରେ କାଳ କଟାଇବ ।"

ଯୋଷୀଜୀ [ମବ୍‌ଜୀ ଦେବଙ୍କୁ ଆମ୍ଭେମାନେ ଯୋଷୀପରି ଡ଼ାକୁଁ ] ମୋ ଆଡ଼କୁ ଫେରି ପଚାରିଲେ; "ଏଠାରେ ନପଢ଼ି ବିଲାତରେ ପଢ଼ିବା କ'ଣ ତୁମର ଇଚ୍ଛାନୁହେ ?" ମୋ ପକ୍ଷେ ଏହାଠାରୁ ବଳି ଆଉ ବେଶି କିଛି ପ୍ରୀତିକର କଥା ନଥିଲା । ପ୍ରସ୍ତାବଟି ଶୁଣି ଆନନ୍ଦରେ ମୁଁ ନାଚି ଉଠିଲି ଏବଂ ଯେତେ ଶୀଘ୍ର ବିଲାତ ଯାଏ ସେତେ ଭଲ ବୋଲି କହିଲି । କିନ୍ତୁ ପରୀକ୍ଷାରେ ଶୀଘ୍ର ଶୀଘ୍ର ପାଶ କରିବା କିଛି ସହଜ କଥା ନୁହେ ଭାବି ମୁଁ ପ୍ରଶ୍ନକଲି "ଡ଼ାକ୍ତରୀ ପଢ଼ିବା ପାଇଁ କ'ଣ ମୁଁ ଯାଇ ନପାରେ ?"

ଭାଇ ହଠାତ୍ ଉଠି ବାଧାଦେଇ କହିଲେ, "ପିତା କେବେହେଲେ ତାହା ସୁଖ ପାଉନଥିଲେ । ଅମ୍ଭେ ବୈଷ୍ଣବ ଧର୍ମାବଲମ୍ବୀ । ମଡ଼ା କାଟିବା ସଙ୍ଗେ ଆମର କିଛି ସମ୍ପର୍କ ରଖିବାକୁ ହେବ ନାହିଁ ବୋଲି ସେ ଯେ କହୁଥାନ୍ତି, ତୋତେ କେବଳ ଲକ୍ଷ କରିଥାନ୍ତି । ତୋତେ ଓକିଲାତି ପଢ଼ାଇବା ସକାଶେ ପିତାଙ୍କର ଇଚ୍ଛାଥିଲା" ।

ଯୋଷୀ—"ଗାନ୍ଧୀଜୀଙ୍କ [ମୋରପିତା] ପରି ମୁଁ ଡ଼ାକ୍ତରୀ କାର୍ଯ୍ୟରେ

ବିରୋଧୀ ନୁହେ, ତାହା ମଧ୍ୟ ଆମର ଶାସ୍ତ୍ର ବିରୋଧ ନୁହେ । ଡାକ୍ତରୀ ଉପାଧି ପାଇ ତୁମେ ଦିବାନ ହୋଇ ପାରିବନାହିଁ ଏବଂ ମୋର ଇଚ୍ଛା ତୁମେ ଦିବାନ କିମ୍ବା ସୁବିଧା ହେଲେ ତଦପେକ୍ଷା ଅଧିକ କିଛି କାର୍ଯ୍ୟରେ ରହନ୍ତ । ସେହି ଭାବରେ କେବଳ ତୁମେ ତୁମର ବହୁ କୁଟୁମ୍ବକୁ ପରି-ପୋଷଣ କରିପାରିବ । ପଲକ ମାତ୍ରେ ସମସ୍ତର ପରିବର୍ତ୍ତନ ଦେଖାଯାଉଅଛି ଓ ଦିନୁଁ ଦିନ ସବୁ କଠିନ ହୋଇ ପଡ଼ୁଅଛି । ସୁତରାଂ ଜଣେ ବାରିଷ୍ଟର ହୋଇଯିବା ବଡ଼ ଚତୁର ଲୋକର କଥା” । ମୋ’ ମାଆଙ୍କ ଆଡ଼କୁ ଚାହିଁ ସେ କହିଲେ; “ତେବେ ମୁଁ ଯାଉଛି । ମୁଁ ଯାହା କହିଲି ତାହା ଭଲରୂପେ ଭାବ । ମୁଁ ଯେତେବେଳେ ଆଉଥରେ ଆସେ, ବିଲାତ ଯିବା ଆୟୋଜନ ସଂମ୍ବନ୍ଧେ ଯେପରି ଶୁଣେ । ମୁଁ ଯଦି କୌଣସି ମତେ ସାହାଯ୍ୟ କରିପାରେ ତାହା ହେଲେ ମୋତେ କହିବା ପାଇଁ କଦାପି ଭୁଲିବ ନାହିଁ” ।

ଯୋଶୀଜି ବାହାରିଗଲେ । ମୁଁ ଆକାଶରେ କନକଗଡ଼ ବାନ୍ଧିବାକୁ ଆରମ୍ଭ କଲି । ମୋତେ ବିଲାତ ପଠାଇବା ପାଇଁ ପଇସା କାହୁଁ ଆସିବ ? ଓ ମୋପରି ଜଣେ ତରୁଣ ବୟସ୍କ ଯୁବକ ଏକାକୀ ବିଲାତରେ ରହି ଚରିତ୍ର ନିଷ୍କଳଙ୍କ ଭାବେ ରକ୍ଷିପାରେ କି ନା—ଏହି ସବୁ ଭାବ ଯେନ ମୋର ବଡ଼ଭାଇ ଅନେକ ଚିନ୍ତା କରିବାକୁ ଲାଗିଲେ ।

ମାଆ ନିତାନ୍ତ ବ୍ୟଥିତା ହେଲେ । ମୋଠାରୁ ଅନ୍ତର ହୋଇ ରହି-ବାକୁ ହେବ ବୋଲି ପ୍ରସ୍ତାବଟାକୁ ସେ ସୁଖ ପାଇଲେ ନାହିଁ । ଏବଂ କାଳ ବିଳମ୍ବ କରିବା ଉଦ୍ଦେଶ୍ୟରେ ମୋତେ କହିଲେ; “ପିତୃବ୍ୟ ଏବେ ଘରର ଅଭିଭାବକ । ପ୍ରଥମେ ତାଙ୍କ ସହିତ ପରାମର୍ଶ କରିବାକୁ ହେବ—ସେ ଯଦି ସ୍ୱୀକାର କରନ୍ତି ତାହା ହେଲେ ସେ ବିଷୟ ବିଚାର କରିବା” ।

ବଡ଼ ଭାଇଙ୍କର କିନ୍ତୁ ଆଉ ଗୋଟିଏ ଭାବ ଥିଲା; ଏବଂ ଦିନେ ସେ ତାହା ଫିଟାଇ କହିଲେ ଯେ ପୋରବନ୍ଦର ରାଜକାର୍ଯ୍ୟରେ ଆମର ସାଧାରଣତଃ ଅଧିକାର ଅଛି । ମିଃ ଲେଲି ହେଉଛନ୍ତି ଶାସକ । ଆମର ପରିବାର ପ୍ରତି ତାଙ୍କର ବେଶି ସମ୍ମାନ ଓ ପିତୃବ୍ୟଙ୍କୁ ସେ ବଡ଼ ଭଲ ମଣନ୍ତି । ବିଲାତରେ ତୋର ପଢ଼ା ସକାଶେ ରାଜାଙ୍କଠାରୁ କିଛି ସାହାଯ୍ୟ ପାଇଁ ସେ ସୁପାରିଶ କରିବା ସମ୍ପୂର୍ଣ୍ଣ ସମ୍ଭବ" । ଏ ସବୁ ମୋତେ ଯୁକ୍ତିପୂର୍ଣ୍ଣ ବୋଧହେଲା । ପୋରବନ୍ଦର ଯିବା ପାଇଁ ଠିକଣା କଲି । ସେ ସମୟରେ ରେଲପଥ ନଥିଲା । ବଳଦ ଗାଡ଼ିରେ ଗଲେ ପାଞ୍ଚ ଦିନର ବାଟ । ପୂର୍ବେ ମୁଁ କହି ସାରିଛି ଯେ ମୁଁ ଜଣେ ଭୟାଳୁ । କିନ୍ତୁ ବିଲାତ ଯିବା ଅଭିଳାଷ ମୋ ମନରେ ଏପରି ମାଡ଼ିବସିଥିଲା ଯେ ସେ ଅଭିଳାଷ ଆଗରେ ମୋର ଦୁର୍ବଳତା ଭୁଆଡେ ଲୁଚିଗଲା । ଧୋରାଜ ପର୍ଯ୍ୟନ୍ତ ଗୋଟିଏ ଶଗଡ଼ରେ ଗଲି ଏବଂ ସେଠାରୁ ଦିନେ ଆଗରୁ ପୋରବନ୍ଦରରେ ପହଞ୍ଚିବା ପାଇଁ ଗୋଟିଏ ଓଟ ଭଡ଼ା କଲି । ଏହା ହେଉଛି ଓଟ ଉପରେ ବସିବା ମୋର ପ୍ରଥମ ଥର ।

ପୋରବନ୍ଦରରେ ପହଞ୍ଚି ପିତୃବ୍ୟଙ୍କୁ ସବୁ ବିଷୟ କହିଲି । ସେ କିଛି କ୍ଷଣ ଭାବି କହିଲେ; "ନିଜ ଧର୍ମର ବିରୋଧ ଆଚରଣ ନକରି ଜଣେ ବିଲାତରେ ରହିପାରେ କି ନା ମୁଁ ସେ ସମ୍ବନ୍ଧେ ଠିକ୍ ଜାଣିନାହିଁ । ମୁଁ ଯାହା ସବୁ ଶୁଣିଛି ମୋର କିନ୍ତୁ ସନ୍ଦେହ ହୁଏ । ମୁଁ ଯେତେବେଳେ ଏହି ବଡ଼ ବଡ଼ ବାରିଷ୍ଟରମାନଙ୍କୁ ଭେଟେ, ତାଙ୍କର ଜୀବନ ଓ ୟୁରୋପିଅନ-ମାନଙ୍କ ଜୀବନ ମଧ୍ୟରେ କିଛି ପ୍ରଭେଦ ଦେଖେ ନାହିଁ; ଖାଦ୍ୟ ସମ୍ବନ୍ଧେ ତାଙ୍କର ଭାବନା ନାହିଁ । କେତେବେଳେ ହେଲେ ସେମାନଙ୍କ ତୁଣ୍ଡରୁ ସିଗାରେଟ ଶୂନ୍ୟ ନୁହେ । ଲଜ୍ଜା ଛାଡ଼ି ଇଂରେଜମାନଙ୍କ ପରି ସେମାନେ ପିନ୍ଧନ୍ତି । ଆମଘରର କୌଳିକ ପ୍ରଥା ଅନୁସାରେ ସେ ସବୁ ଚଳିବ ନାହିଁ । କିନ୍ତୁ ତୋର ପଥ ଅବରୋଧ କରିବାକୁ ମୁଁ ଚାହେଁ ନାହିଁ । ମୁଁ ନିକଟରେ ତୀର୍ଥ

କରିବାକୁ ଯାଉଛି— ବିଦେଶରେ ଆଉ ବୋଧହୁଏ ବଞ୍ଚିବ ନାହିଁ । ମରଣର ପ୍ରାକ୍କାଳରେ ତୋତେ ବିଲାତ ଯିବାକୁ, ସମୁଦ୍ରପାର ହେବାକୁ କିପରି ଅନୁମତି ଦେବି ? ତଥାପି ମୁଁ ତୋର ଅନ୍ତରାୟ ହେବି ନାହିଁ । ତୋ ମାଆଙ୍କର ଅନୁମତି ନିତାନ୍ତ ଦରକାର । ସେ ଯଦି ତୋତେ ଅନୁମତି ଦିଅନ୍ତି, ତାହାହେଲେ ଶୁଭରେ ଯାତ୍ରାକର । ତାଙ୍କୁ କହି ମୁଁ କିଛି ଅନ୍ତରାୟ ହେବିନାହିଁ, ମୋର ଆଶୀର୍ବାଦ ପାଇ ତୁ ଯିବୁ" ।

ମୁଁ—"ଏହାଠାରୁ ବଳି ଅଧିକ କିଛି ମୁଁ ଆପଣଙ୍କଠାରୁ ଆଶା କରି ପାରି ନଥାନ୍ତି" । ଏଥର ମାଆଙ୍କୁ ବୁଝାଇବା ଚେଷ୍ଟା କରିବି । କିନ୍ତୁ ଲେଲିଙ୍କଠାକୁ ମୋତେ ସୁପାରିଶ ପତ୍ର ଖଣ୍ଡେ ଆପଣ କ'ଣ ଦେବେ ନାହିଁ ?"

ପିତୃବ୍ୟ—"ତାହା ମୁଁ କିପରି କରିବି ? କିନ୍ତୁ ସାହେବ ଜଣେ ଉତ୍ତମ ଲୋକ । ତୁ କିପରି ମୋ ସହିତ ସମ୍ପୃକ୍ତ ତାହା ତାଙ୍କୁ କହି ଖଣ୍ଡେ-ଚିଠି ମାଗେ । ସେ ନିଶ୍ଚୟ ତୋତେ କିଛି କାର୍ଯ୍ୟ ଦେବେ ଓ ବେଶି ସାହାଯ୍ୟ କରିବେ ।

ପିତୃବ୍ୟ ଯେ କାହିଁକି ସୁପାରିଶ ପତ୍ରଖଣ୍ଡେ ଦେଲେ ନାହିଁ ମୁଁ କହି-ନପାରେ । ମୁଁ ବିଲାତ ଯିବା କଥା ଧର୍ମ ବିରୋଧ କାର୍ଯ୍ୟ ବୋଲି ସେ ବୋଧହୁଏ ଭାବିଥିଲେ—ସୁତରାଂ ସେହି କାର୍ଯ୍ୟରେ ସ୍ପଷ୍ଟଭାବେ ସମ୍ପୃକ୍ତ ରହିବା ପାଇଁ ସେ ହୁଏତ ଦୋଳାୟମାନ ହେବା କଥା ମୋର ଅଳ୍ପ ମନେହୁଏ ।

ମିଃ ଲେଲିଙ୍କଠାକୁ ଲେଖିଲି—ତାଙ୍କ ବଙ୍ଗଳାକୁ ଆସିବା ପାଇଁ ମୋତେ ସେ କହିଲେ । ସିଡି ଉପରକୁ ଯାଉଥିଲେ, ମୋତେ ସେ ଦେଖିଲେ ଓ ସଂକ୍ଷିପ୍ତ ଭାବରେ କହିଲେ, "ପ୍ରଥମେ ବି, ଏ, ପାଶ୍‌କର

ତାପରେ ମୋ ସହିତ ଦେଖା କରିବ । ତୁମକୁ ଏବେ କୌଣସି ସାହାଯ୍ୟ ଦିଆ ଯାଇ ନପାରେ” । ସାହେବଙ୍କ ସହିତ ଦେଖା କରିବା ପାଇଁ ମୁଁ ଅନେକ ଆୟୋଜନ କରିଥିଲି । କେତୋଟି ବାକ୍ୟ ସୁନ୍ଦର ଭାବେ ଶିଖି-ଥିଲି—ଏବଂ କୃତାଞ୍ଜଳି ପୁଟରେ ଓ ନତ ମସ୍ତକରେ ତାଙ୍କୁ ପ୍ରଣାମ କରିଥିଲି । କିନ୍ତୁ ଏସବୁ କଣ ବୃଥା !

ଏଥର ମୋ'ର ସ୍ତ୍ରୀଙ୍କ ଅଳଙ୍କାର ଆଡ଼କୁ ଦୃଷ୍ଟି ଗଲା । ବଡ଼ ଭାଇଙ୍କଠାରେ ମୋର ଅଟଳ ବିଶ୍ୱାସ ଥାଏ; ମୋର ଦୋଷ ଦେଖିଲେ ସେ କ୍ଷମା କରୁଥାନ୍ତି ଓ ମୋତେ ସେ ତାଙ୍କ ନିଜ ପୁତ୍ର ପରି ଦେଖୁଥାନ୍ତି । ତାଙ୍କ କଥା ମୁଁ ଭାବିବାକୁ ଲାଗିଲି ।

ପୋରବନ୍ଦରଠାରୁ ରାଜକୋଟକୁ ଫେରି ଘରେ ସମସ୍ତଙ୍କୁ ସବୁ ବିଷୟ କହିଲି । ଯୋଷୀଜୀଙ୍କ ସହିତ ପରାମର୍ଶ କରିବାରୁ ଯଦି ଆବଶ୍ୟକ ହୁଏ ଋଣ ମଧ୍ୟ କରାଯାଇପାରେ ବୋଲି ସେ କହିଲେ । ମୋ'ର ସ୍ତ୍ରୀଙ୍କର ଅଳଙ୍କାର ବିକି ଦେଇ ଅନ୍ତତଃ ଦୁଇ କିମ୍ବା ତିନି ହଜାର ଟଙ୍କା ରଖିବା ପାଇଁ ଠିକ୍ କଲି । ସେ ଯାହାହେଉ ଭାଇ ଯେ କୌଣସି ଭାବରେ ହେଲେ ପଇସାର ଯୋଗାଡ଼ କରିବା ପାଇଁ ସ୍ୱୀକାର କଲେ ।

ମାଆ କିନ୍ତୁ ଅଦ୍ୟାପି ଅନିଚ୍ଛୁକା । ଇତି ମଧ୍ୟରେ ସେ ବିଲାତ ଜୀବନ ସମ୍ବନ୍ଧେ ନାନା୨ ଅନେକ ଲୋକଙ୍କଠାରୁ ବୁଝିବା ଆରମ୍ଭ କରି ସାରିଲେଣି । କିଏ ଜଣେ ତାଙ୍କୁ କହିଲା ବିଲାତରେ ଅନେକ ଯୁବକ ଖରାପ ହୋଇ ଯାଉଅଛନ୍ତି । ଅନ୍ୟ କିଏ କହିଲା ସେମାନେ ମାଂସ ଖାଆନ୍ତି ଓ ଅନ୍ୟ କାହାଠାରୁ ଶୁଣିଲେ ଯେ ମଦ ନ ପିଇ ସେଠାରେ କେହି ରହି-ନାହାନ୍ତି । "ଏ ସବୁ ବିଷୟ କଣ ?" ବୋଲି ମୋତେ ପଚାରିଲେ । ମୁଁ କହିଲି "ମୋତେ କ'ଣ ବିଶ୍ୱାସ କରିବୁନାହିଁ ? ମୁଁ ତୁମକୁ ମିଥ୍ୟା

କରୁନାହିଁ । ମୁଁ ଶପଥ କରୁଛି ଏସବୁ ଜିନିଷ ମୁଁ ସ୍ପର୍ଶ କରିବି ନାହିଁ । ଏପରି ଯଦି ଭୟ ଥାଆନ୍ତା ତାହାହେଲେ ଯୋଷୀଜି କ'ଣ ମୋତେ ବିଲାତ ଯିବା-ପାଇଁ ଅନୁମତି ଦିଅନ୍ତେ ?" ।

ମାଆ—"ମୁଁ ତୋତେ ବିଶ୍ୱାସ କରୁଛି କିନ୍ତୁ ବିଦେଶରେ ତୋଠାରେ ମୋର କିପରି ବିଶ୍ୱାସ ରହିବ? ମୋ'ର ଜ୍ଞାନଶୂନ୍ୟ ହେଉଅଛି—କ'ଣ କରିବି କିଛି ଜାଣିପାରୁ ନାହିଁ । ବେଚର୍ଜୀ ସ୍ୱାମୀଙ୍କୁ ଡ଼ାକି ତାଙ୍କର ପରାମର୍ଶ ନେବା" ।

ବେଚର୍ଜୀ ସ୍ୱାମୀ ପ୍ରଥମତଃ ଜଣେ 'ମୋଧ ବଣିଆ' ଥିଲେ କିନ୍ତୁ ପରେ ଜୈନ ସନ୍ୟାସୀ ହେଲେ । ଯୋଷୀଜିଙ୍କ ପରି ସେ ମଧ୍ୟ ଆମ୍ଭ ଘରର ଉପଦେଶକ । ସେ ମୋତେ ସାହାଯ୍ୟ କରି କହିଲେ; "ପିଲା ଯେପରି ମନରେ କପଟ ନଥାଇ ତିନୋଟି ପ୍ରତିଜ୍ଞା କରେ ମୁଁ ତାର ଠିକଣା କରିବି । ତାପରେ ସେ ଯିବା ସକାଶେ ଅନୁମତି ଦିଆ ଯାଇପାରେ" । ସେ ମୋତେ ଶପଥ କରାଇ କହିଲେ ଯେ ମୁଁ ସୁରା, ସ୍ତ୍ରୀ ଓ ମାଂସ ସ୍ପର୍ଶ କରିବି ନାହିଁ । ଏହା ଶେଷ ହେଲା ପରେ ମାଆ ଅନୁମତି ଦେଲେ ।

ମୋତେ ସମ୍ମାନ ଦେବା ପାଇଁ ଉଚ୍ଚ ବିଦ୍ୟାଳୟରେ ଗୋଟିଏ ବିଦାୟ-ଉତ୍ସବର ଯୋଗାଡ଼ ହୋଇଥିଲା । ରାଜକୋଟର ଜଣେ ଯୁବକ ପକ୍ଷେ ବିଲାତ ଯିବା ଅସାଧାରଣ କଥା । ଧନ୍ୟବାଦ ଦେବାପାଇଁ ମୁଁ ପଦେ ଅଧେ ମଧ୍ୟ ଲେଖିଥିଲି । କିନ୍ତୁ ତାହା ଉଚ୍ଚାରଣ କରିବା ପାଇଁ ମୋର ପାଟି ଫିଟିଲା ନାହିଁ । ମନେଅଛି ମୁଁ ଯେତେବେଳେ ତାହା ପଢିବାକୁ ଉଠିଲି ମୋର ମୁଣ୍ଡ ଘୁରିଲା— ଦେହ ଥରିବାକୁ ଲାଗିଲା ।

ବୟୋବୃଦ୍ଧ ବ୍ୟକ୍ତିଙ୍କର ଆଶୀର୍ବାଦ ନେଇ ମୁଁ ବୋମ୍ବାଇ ଗଲି । ରାଜକୋଟଠାରୁ ବୋମ୍ବାଇଠାକୁ ଏହା ମୋର ପ୍ରଥମଯାତ୍ରା । ମୋର

ଭାଇ ସାଙ୍ଗରେ ଯାଇଥିଲେ । କିନ୍ତୁ ସବୁ ସଂବାଦରେ ହୋଇଯିବା କଥା ନୁହେଁ । ବୋମ୍ବାଇରେ ଅନେକ ଅସୁବିଧା ଭୋଗିବାକୁ ପଡ଼ିଥିଲା ।



## ଦ୍ୱାଦଶ ପରିଚ୍ଛେଦ ।

( ଅଜାତିଆ )



ମାଆଙ୍କର ଅନୁମତି ଓ ଆଶୀର୍ବାଦ ନେଇ ଆନନ୍ଦରେ ମୁଁ ବୋମ୍ବାଇକୁ ବାହାରିଲି । ମାସେ ଦୁଇ ମାସର ଗୋଟିଏ ପିଲା ସହ ମୋର ସ୍ତ୍ରୀ ଘରେ ରହିଲେ । କିନ୍ତୁ ବୋମ୍ବାଇରେ ପହଞ୍ଚିଲା କ୍ଷଣି ବନ୍ଧୁମାନେ କହିଲେ ଯେ ଯୁନ ଓ ଜୁଲାଇ ମାସରେ ଭାରତ ମହାସାଗର ବଡ଼ ଭୟଙ୍କର ହୋଇଥାଏ । ଏବଂ ମୋର ଏହା ପ୍ରଥମ ଯାତ୍ରା ଯୋଗୁଁ ନଭେମ୍ବର ମାସ ପର୍ଯ୍ୟନ୍ତ ଯାତ୍ରା ବନ୍ଦ କରିବାକୁ ହେବ । ଅନ୍ୟ ଜଣଙ୍କ ଠାରୁ ମଧ୍ୟ ଶୁଣିଲି ଯେ ପବନ ଯୋଗୁଁ ଅଳ୍ପ ଦିନ ପୂର୍ବେ ଗୋଟିଏ ଜାହାଜ ବୁଡ଼ିଯାଇଛି । ଏହା ଶୁଣି ଭାଇ ବଡ଼ ଅସ୍ଥିର ହେଲେ ଏବଂ ହଠାତ୍ ମୁଁ ଜାହାଜରେ ଚଢ଼ିବା ପାଇଁ ଅନୁମତି ଦେବାକୁ ସାହସ କଲେ ନାହିଁ । ବୋମ୍ବାଇର ଜଣେ ବନ୍ଧୁଙ୍କ ପାଖରେ ମୋତେ ଛାଡ଼ିଦେଇ ସେ ତାଙ୍କ କାର୍ଯ୍ୟରେ ଯୋଗ ଦେବା ପାଇଁ ରାଜକୋଟ ବାହାରି ଆସିଲେ । ଆମ୍ଭର ଜଣେ ବାନ୍ଧବଙ୍କଠାରେ ମୋର ବାଟଖରଚ ପଇସା ସବୁ ରଖାଇ ଦେଇ ଓ ଯଦି ମୋତେ ଆଉ ଅଧିକା କିଛି ଆବଶ୍ୟକ ହୁଏ ତାହାହେଲେ ତାଙ୍କର ବନ୍ଧୁମାନେ ମୋତେ ଦେଇଥିବେ କହି ବାହାରି ଆସିଲେ । ବୋମ୍ବାଇରେ ରହିବା ସମୟଟକ ମୋର ଦିନ ସରିଲା ନାହିଁ । ଅହରହ ମୁଁ ବିଲାତ ଯିବା କଥା ସ୍ୱପ୍ନ ଦେଖିବାକୁ ଲାଗିଲି ।

ଇତି ମଧ୍ୟରେ ମୁଁ ବିଦେଶ ଯିବା ପ୍ରସ୍ତାବ ନେଇ ଆମ୍ଭ ଜାତି ଭାଇମାନଙ୍କ ମଧ୍ୟରେ କୋଲାହଳ ପଡ଼ିଗଲା । ଆଜିଯାଏ କୌଣସି "ମୋଧ ବଣିଆ" ବିଲାତ ଯାଇନାହିଁ; ମୁଁ ଯଦି ଯିବାକୁ ସାହସ କରେ ତାହାହେଲେ ଦଣ୍ଡ ଭୋଗିବାକୁ ହେବ । ସାଧାରଣ କୁଳ ସଭା ଗୋଟିଏ ବସିଲା ଓ ସେଥିରେ ଯୋଗ ଦେବାପାଇଁ ମୋତେ ଡକାଗଲା । ମୁଁ ଗଲି—କିନ୍ତୁ ହଠାତ୍ କିପରି ମୁଁ ସାହସ ବାନ୍ଧି କଥା କହିଲି ତାହା କହିନପାରେ । ଭୟର କୌଣସି କାରଣ ନଥିଲା, କିଛି ଭାବନା ନକରି ମୁଁ ସଭାରେ ଯୋଗଦେଲି । କୁଳ ବେଣ୍ଡହେଡ୍ (ସେଠ) ଆମର ଜଣେ ଦୂର ବାନ୍ଧବ, ମୋ'ର ପିତାଙ୍କ ସହ ତାଙ୍କର ଭଲ ଭାବ ଥାଏ । ସେ ମୋତେ କହିଲେ ।—

"କୁଳ ସଭାର ମତ ଅନୁସାରେ ତୁମର ବିଲାତ ଯିବା ପ୍ରସ୍ତାବ ଉଚିତ ନୁହେଁ । ବିଦେଶକୁ ଯାତ୍ରା କରିବା ଆମର ଧର୍ମ ବିରୁଦ୍ଧ କଥା । ଧର୍ମ ନଷ୍ଟ ନକରି ସେଠାରେ ରହିବା ଅସମ୍ଭବ ବୋଲି ମଧ୍ୟ ଆମ୍ଭେମାନେ ଶୁଣିଅଛୁ । ତୁମେ ୟୁରୋପିଅନମାନଙ୍କ ସହ ଭୋଜନ ଓ ସୁରାପାନ କରିବା ପାଇଁ ବାଧ୍ୟ ହେବ" ।

ଏହା ଶୁଣି ମୁଁ ପ୍ରତ୍ୟୁତ୍ତରରେ କହିଲି, "ମୁଁ ଭାବୁଛି ଯେ, ବିଲାତ ଯିବା କଦାପି ଆମର ଧର୍ମ ବିରୁଦ୍ଧ କଥା ନୁହେଁ । ମୋ'ର ବିଶେଷ ପଢ଼ା ସକାଶେ ମୁଁ ସେଠାକୁ ଯାଉଛି ଏବଂ ତୁମେମାନେ ଯେଉଁ ତିନୋଟି କଥାକୁ ଭୟ କରୁଛ ତାହାର ସୀମା ମାଡ଼ିବି ନାହିଁ ବୋଲି ମୁଁ ମୋ'ର ମାଆଙ୍କଠାରେ ମଧ୍ୟ ପ୍ରତିଜ୍ଞା କରି ଆସିଛି । ମୋ'ର ବିଶ୍ୱାସ ଏହି ପ୍ରତିଜ୍ଞା ମୋତେ ନିରାପଦ ରଖିବ" ।

ସେଠ [ପୁନର୍ବାର କହିଲେ] "କିନ୍ତୁ ଆମେମାନେ ଶୁଣୁଛୁ ଯେ ଆମର ଧର୍ମ ସେଠାରେ ନିରାପଦ ରହିବା ଅସମ୍ଭବ । ତୁମେ ଜାଣ, ତୁମ

ପିତାଙ୍କ ସହିତ ମୋ'ର କପରି ସମ୍ପର୍କ—ସୁତରାଂ ମୋ'ର ଉପଦେଶ ଶୁଣିବା ଉଚିତ" ।

ମୁଁ—"ମୁଁ ସେ ସମ୍ବନ୍ଧ କଥା ଜାଣିଛି ଓ ତୁମେ ମୋ'ର ଉପଦେଶକ ବୋଲି ସ୍ୱୀକାର କରୁଛି । କିନ୍ତୁ ମୋ'ର ଉପାୟାନ୍ତର ନାହିଁ । ବିଲାତ ଯିବା କଥା ମୁଁ କଦାପି ପରିବର୍ତ୍ତନ କରିନପାରେ । ମୋ ପିତାଙ୍କର ବନ୍ଧୁ ଓ ଉପଦେଶକ ଜଣେ ବ୍ରାହ୍ମଣ ମଧ୍ୟ ମୋ'ର ବିଲାତ ଯିବାପାଇଁ କିଛି ଆପତ୍ତି କରୁନାହାନ୍ତି ଓ ମାଆ ଆଉ ଭାଇ ମଧ୍ୟ ଅନୁମତି ଦେଇ ସାରିଲେଣି" ।

ସେଠ—"କିନ୍ତୁ କୁଳର ଆଦେଶ କଣ ତୁମେ ଅମାନ୍ୟ କରିବ?"

ମୁଁ—"ମୁଁ ବାସ୍ତବିକ ନିରୁପାୟ । ମୁଁ ଭାବୁଛି ଜାତି ଏସମ୍ବନ୍ଧେ କିଛି କହିବା ଉଚିତ ନୁହେଁ" ।

ଏହା ଶୁଣି ସେଠ ଅଗ୍ନିଶର୍ମା ହେଲେ । ମୋତେ ବହୁତ ଭୟ ଦେଖାଇଲେ, କିନ୍ତୁ ମୁଁ ଟଳିଲି ନାହିଁ । ସୁତରାଂ ସେଠ ଆଦେଶ ଦେଲେ- "ଏହି ଯୁବକ ଆଜିଠାରୁ ଜଣେ 'ଅଜାତିଆ' ରୂପେ ଗଣ୍ୟ ହେବେ । ଯେଉଁମାନେ ତାଙ୍କୁ ସାହାଯ୍ୟ କରିବେ କିମ୍ବା ସେ ଜାହାଜରେ ଗଲାବେଳେ ଦେଖିବାକୁ ଯିବେ ଦଣ୍ଡ ସ୍ୱରୂପ ସେମାନେ ଏକ ଟଙ୍କା ଚାରିଅଣା ଜରିମାନା ଦେବେ" ।

ଉକ୍ତ ଆଦେଶ ଫଳରେ କିଛି ହେଲାନାହିଁ । ସେଠଙ୍କଠାରୁ ବିଦାୟ ନେଇ ମୁଁ ବାହାରି ଗଲି । କିନ୍ତୁ ଭାଇ କ'ଣ ଭାବିବେ ଏକଥା ମୋ ମନରେ ଖେଳିବାକୁ ଲାଗିଲା । ଭାଗ୍ୟବଶତଃ ସେ ମଧ୍ୟ ଅଟଳ ରହି ମୋତେ ପ୍ରତିଶ୍ରୁତି ଦେଲେ ଯେ ସେଠଙ୍କ ଆଦେଶ ସତ୍ତ୍ୱେ ମୁଁ ଯାଇପାରେ ।

ଏହି ଘଟଣା ଯୋଗୁଁ ଶୀଘ୍ର ବାହାର ଯିବା ପାଇଁ ମୋ'ର ମନ ଉଦ୍ବିଗ୍ନ ହେଲା । ସେ ଯଦି ଭାଇଙ୍କୁ ହରିଗ୍ରଣ କରିବା ପାଇଁ ବସନ୍ତି ତା ହାହେଲେ କ'ଣ ହେବ ? ଏହିପରି ମୁଁ ଭାବୁଅଛି, ଯୁନାଗଡ଼ର ଜଣେ ଓକିଲ ବିଲାତ ଯାଉଥିବା କଥା ଶୁଣିଲି । ସେପ୍ଟେମ୍ବର ୪ ତାରିଖରେ ଜାହାଜରେ ଚଢିବା କଥା । ଯେଉଁ ବନ୍ଧୁମାନଙ୍କ ତତ୍ତ୍ୱାବଧାନରେ ଭାଇ ମୋତେ ରଖାଇ ଦେଇଥିଲେ ମୁଁ ସେମାନଙ୍କ ନିକଟକୁ ଗଲି । ସେମାନେ ମଧ୍ୟ ମୋତେ କହିଲେ, ଏହିପରି ଜଣଙ୍କ ସଙ୍ଗରେ ଯିବା ସୁବିଧା ଛାଡ଼ିବା ଭଲ ନୁହେ । କାଳ ବିଳମ୍ବ ନକରି ମୁଁ ଭାଇଙ୍କ ଠାରୁ ଟେଲିଗ୍ରାମ୍ କରି ଅନୁମତି ପାଇଲି । ମୋ'ର ବାଟ ଖରଚ ପଇସା ଆମ୍ଭର ବାନ୍ଧବଙ୍କୁ ମାଗିଲି । କିନ୍ତୁ ସେ ସେଠଙ୍କ ଆଦେଶ ପ୍ରତି ଲକ୍ଷ କରି କହିଲେ ଯେ ସେ ଜାତି ହରାଇ ପାରିବେ ନାହିଁ । ଆମ୍ଭଘରର ଜଣେ ପରିଚିତ ଲୋକଙ୍କୁ ଖୋଜି ତାଙ୍କ ଠାରୁ ମୋ'ର ଜାହାଜ ଖରଚ ଆଉ ସାମାନ୍ୟ ପଇସା ଧାରି ନେଲି ଓ ପରେ ମୋ'ର ଭାଇଙ୍କ ଠାରୁ ପରିଶୋଧ ଗ୍ରହଣ କରିବାକୁ ତାଙ୍କୁ କହିଲି । ସେ ଯେ ମୋତେ କେବଳ ପଇସା ଦେଇଥିଲେ ତାହା ନୁହେ, ଉତ୍ସାହ ଦେଇ ଆନନ୍ଦିତ କରାଇଥିଲେ । ମୁଁ ତାଙ୍କପ୍ରତି ବଡ଼ କୃତଜ୍ଞ ହେଲି । ଜାହାଜ ଟିକଟ କିଣିନେଲି— ଓ ଜାହାଜରେ ଗଲାବେଳେ ଯାହା ଯାହା ସବୁ ଦରକାର ତାହା ଠିକଣା କଲି । ସେଠାରେ ଆଉ ଜଣେ ବନ୍ଧୁ ଥିଲେ । ଏସବୁ କଥାରେ ତାଙ୍କର ଅନୁଭୂତି ଥିଲା । ସେ ପୋଷାକ ପ୍ରଭୃତି କିଣି ଆଣିଦେଲେ । କେତେ ପୋଷାକ ମୋ'ର ମନକୁ ପାଇଲା ଆଉ କେତେ ମୋ'ର ଆଦୌ ରୁଚିକର ହେଲାନାହିଁ । କିଛି ଦିନ ପରେ ମୁଁ ଯେଉଁ 'ନେକ୍‌ଟାଇ' ପିନ୍ଧିବାରେ ଆନନ୍ଦିତ ହେଲି, ତାହା କିନ୍ତୁ ସେତେବେଳେ ମୋତେ ଘୃଣା ଲାଗିଲା । କିନ୍ତୁ ବିଲାତ ଯିବା ପାଇଁ ମୋ'ର ମନରେ ଯେଉଁ ଭାବନା

ଖେଳା କରୁଥିଲି, ତା'ଅଗରେ ଏସବୁ ଘଟଣା କିଛି ନୁହେ । ଯାତ୍ରାବେଳେ ଛିଆ ପିଆ କରିବା ପାଇଁ ମୁଁ ଅନେକ ଜିନିସ ଧରିଥିଲି । ଯୁନାଗଡ଼ର ଓକିଲ ମିଃ ତ୍ରିମ୍ବକ ରାୟ ମଜୁମଦାର ଯେଉଁ ସ୍ଥାନରେ ବସିଥିଲେ ତାଙ୍କ ନିକଟରେ ମୋ'ପାଇଁ ବନ୍ଧୁମାନେ ଆଗରୁ ସ୍ଥାନ ଠିକଣା କରିଦେଇଥିଲେ । ସେମାନେ ତାଙ୍କୁ ମୋ'ର ପରିଚୟ ମଧ୍ୟ ଦେଇଥିଲେ । ସେ ଜଣେ ଅନୁଭବୀ, ବୟସାଧିକ ବ୍ୟକ୍ତି ଓ ଜଗତର କଥା ଭଲରୂପେ ଜାଣିଥିଲେ । କିନ୍ତୁ ମୁଁ ଜଣେ ଅଠର ବର୍ଷ ବୟସର ଯୁବକ, ସଂସାରର କଥାରେ ଅନୁଭୂତ ନାହିଁ । ମିଃ ମଜୁମଦାର ମୋର ବନ୍ଧୁମାନଙ୍କୁ କହିଲେ ଯେ ମୋ ସକାଶେ ସେମାନେ ଭାବିତ ହେବା ଦରକାର ନାହିଁ ।

ପରିଶେଷରେ ମୁଁ ବୋମ୍ବାଇଠାରୁ ସେପ୍ଟେମ୍ବର ୪ ତାରିଖରେ ବିଲାତକୁ ଯିବା ପାଇଁ ଜାହାଜରେ ଚଢିଲି ।



## ତ୍ରୟୋଦଶ ପରିଚ୍ଛେଦ ।

( ଲଣ୍ଡନ ପ୍ରବେଶ )

—❊+❊—

ସମୁଦ୍ର ଯାତ୍ରାହେତୁ ମୋତେ ଆଦୌ ବିରକ୍ତ ବୋଧ ହୋଇନଥିଲା ସତ, କିନ୍ତୁ ଜାହାଜରେ ବସିବା କିଛି ଦିନପରେ ମୁଁ ଟିକିଏ ଅସ୍ଥିର ହେଲି । ଷ୍ଟୁଆର୍ଡକୁ ମଧ୍ୟ କିଛି କହିବା ପାଇଁ ମୋତେ ଲଜ୍ଜା ଲାଗିଲା । ଇଂରେଜି କହିବାରେ ମୋର ଅଭ୍ୟାସ ନଥାଏ, ମଜୁମଦାରଙ୍କୁ ବାଦଦେଲେ ମୁଁ ବସିବା ସ୍ଥାନରେ ଯେଉଁ ସବୁ ଯାତ୍ରୀ ଥିଲେ ସମସ୍ତେ ଇଂରେଜ ଲୋକ । ମୁଁ ତାଙ୍କୁ

କିଛି କହିପାରୁ ନଥିଲି । ସେମାନେ ମୋତେ ଯାହା କହନ୍ତି ସେଥିରୁ ମୁଁ ଅତି ଅଳ୍ପ ମାତ୍ର ବୁଝେ କିମ୍ବା ସମୁଦାୟ କଥା ବୁଝିପାରିଲେ ମଧ୍ୟ କିଛି ଉତ୍ତର ଦେଇପାରି ନଥାଏ । କହିବା ପୂର୍ବରୁ ମନେ ମନେ ପ୍ରତି ବାକ୍ୟ ଭାବନା କରିବାକୁ ପଡ଼ୁଥାଏ । ଛୁରି ଓ କଣ୍ଟା ସାହାଯ୍ୟରେ ଖାଇବା ମୁଁ ଜାଣି-ନଥିଲି । ଏବଂ କେଉଁ କେଉଁ ଜିନିଷରେ ମାଂସ ପଡ଼ିଥାଏ ତାହା ପଚାରିବା ପାଇଁ ମଧ୍ୟ ମୋର ସାହସ ହୁଏନାହିଁ । ସୁତରାଂ ମୁଁ କେବେହେଲେ ମେଜା-ଉପରେ ନଖାଇ ଯେଉଁ ମିଷ୍ଟାନ୍ନ ଓ ଫଳମୂଳ ମୁଁ ସଙ୍ଗରେ ନେଇଥିଲି, ତାହା କେବଳ ସବୁ ବେଳେ ଖାଉ ଥାଏ । ମଜୁମ୍‌ଦାରଙ୍କର କିଛି ଅଭାବ ନଥାଏ, ସେ ସମସ୍ତଙ୍କ ସହିତ ମିଶୁଥାନ୍ତି, ଏଣେ ତେଣେ ବୁଲୁଥାନ୍ତି । ମୁଁ କିନ୍ତୁ ଦିନଯାକ ଗୋଟିଏ ସ୍ଥାନରେ ବସିଥାଏ । ଯଦି କେତେବେଳେ କୌଣସି ସ୍ଥାନରେ ଅଳ୍ପ ଲୋକଙ୍କୁ ଦେଖେ, ସେଠାକୁ କେବଳ ଯାଇ-ଥାଏ । ଯାତ୍ରୀମାନଙ୍କ ସଙ୍ଗରେ ଆସି ତାଙ୍କ ସହିତ ନିର୍ଭୟରେ କଥାବାର୍ତ୍ତା କରିବା ପାଇଁ ମିଃ ମଜୁମ୍‌ଦାର ମୋତେ ଅନେକ ଥର କହୁଥାନ୍ତି । ଓକାଲତି କରିବା ଲୋକଙ୍କର ଟିକିଏ ଲମ୍ବଜିଭ ହେବା ଦରକାର ବୋଲି ମଧ୍ୟ ଉପହାସ କରୁଥାନ୍ତି । ଯେତେବେଳେ ହେଲେ ଇଂରେଜୀରେ କହିବା ଏବଂ ଭୁଲ ହେଲେ ମଧ୍ୟ ଖାତିର ନକରିବା ପାଇଁ ମୋତେ ସେ କେତେ ଉପଦେଶ ଦେଉଥିଲେ ସତ, କିନ୍ତୁ ମୋ'ର ଲଜ୍ଜାଶୀଳତା ଯୋଗୁଁ ମୁଁ ସେ ସବୁ କରିପାରି ନଥିଲି ।

ଦିନେ ଜଣେ ଇଂରେଜ ଯାତ୍ରୀ ନମ୍ର ଭାବରେ ମୋତେ ଡାକି କଥାବାର୍ତ୍ତା କରିବାକୁ ଲାଗିଲେ । ମୋ ଅପେକ୍ଷା ତାଙ୍କର ବୟସ ବେଶି । ମୁଁ କ'ଣ ଖାଏ, କ'ଣ କରୁଛି, କୁଆଡ଼େ ଯାଉଛି ଓ କାହିଁକି ଲଜ୍ଜା ବୋଧ କରୁଛି ଇତ୍ୟାଦି ଇତ୍ୟାଦି କଥା ନେଇ ସେ ମୋତେ ପ୍ରଶ୍ନ କଲେ । ମେଜା ଉପରେ ଖାଇବା ପାଇଁ ମଧ୍ୟ ସେ କହିଲେ ଓ ମାଂସଭକ୍ଷଣ ନକରିବା

ପାଇଁ ଜିଦ୍ ଧରବା ଶୁଣି ସେ ହସିବାକୁ ଲାଗିଲେ ଓ କହିଲେ ଯେ "ଏଠାରୁ ଅସିବାଯାଏ [ସେଇଡ଼ ବନ୍ଦର ପର୍ଯ୍ୟନ୍ତ ଯିବା ପୂର୍ବରୁ] ଏସବୁ ତୁମ୍ଭ ପାରେ ସାଜେ, କିନ୍ତୁ ବିସ୍କେ ଖାଡରେ ପ୍ରବେଶ କଲା କ୍ଷଣି ତୁମେ ତୁମର ପ୍ରତିଜ୍ଞାର ପୁନଃବିଚାର କରିବାକୁ ହେବ । ଏବଂ ଇଂଲଣ୍ଡ ପରି ଶୀତ ପ୍ରଧାନ ଦେଶରେ ମାଂସ ଭକ୍ଷଣ ନ କରି ରହିବା ଅସମ୍ଭବ ।"

ମୁଁ—"ମୁଁ ଶୁଣିଛି ମାଂସ ନଖାଇ ମଧ୍ୟ ସେଠାରେ ଲୋକେ ରହୁଅଛନ୍ତି" ।

ସେ—"ତାହା କେବଳ ମିଥ୍ୟା । ମୁଁ ଯେତେଦୂର ଜାଣିଛି ସେଠାରେ ଯେଉଁମାନେ ରହୁଛନ୍ତି ସମସ୍ତେ ମାଂସଭୋଜୀ । ତୁମେ ଦେଖୁନାହଁ, ମୁଁ ସୁରାପାନ କଲେହେଁ ତୁମକୁ ସୁରାପାନ କରିବାକୁ କହୁନାହିଁ ? କିନ୍ତୁ ମୁଁ ଭାବୁଛି ତୁମେ ମାଂସ ଭୋଜନ କରିବା ଉଚିତ, କାରଣ ମାଂସ ବିନା ତୁମର ବଞ୍ଚିବା ଜୀବନ ଅସମ୍ଭବ" ।

ମୁଁ—"ଆପଣଙ୍କ ଉପଦେଶ ଲାଗି ମୁଁ ଆପଣଙ୍କୁ ଧନ୍ୟବାଦ ଦେଉଅଛି, କିନ୍ତୁ ମାଆଙ୍କ ଆଗରେ ମୁଁ ପ୍ରତିଜ୍ଞା କରି ଅସିଛି, ମାଂସ ସ୍ପର୍ଶ ମଧ୍ୟ କରିବି ନାହିଁ । ସୁତରାଂ ତାହା ଖାଇବା କଥା ମୁଁ ଭାବି ନପାରେ । ମାଂସ ନଖାଇଲେ ସେଠାରେ ରହିବା ଯଦି ଅସମ୍ଭବ ହୋଇ ପଡ଼େ ତାହା ହେଲେ ସେଠାରେ ରହି ମାଂସ ଭକ୍ଷଣ କରିବା ଅପେକ୍ଷା ମୁଁ ଭାରତକୁ ପୁନର୍ବାର ଫେରି ଯିବା ଶ୍ରେୟସ୍କର ମନେ କରେ" ।

କିଛି ସମୟ ପରେ ବିସ୍କେ ଉପଖାଡରେ ଆମ୍ଭେମାନେ ପ୍ରବିଷ୍ଟ ହେଲୁ; କିନ୍ତୁ ମାଂସ କିମ୍ବା ସୁରାର ଆବଶ୍ୟକତା ମୁଁ ଆଦୌ ଅନୁଭବ କଲିନାହିଁ । ମୁଁ ମାଂସ ଖାଉନାହିଁ ବୋଲି ସୁପାରିଶ ପତ୍ର ଗୁଡ଼ିଏ ସଂଗ୍ରହ କରିବା ପାଇଁ ଉପଦେଶ ପାଇଥିଲି । ସେହେତୁ ସେହି ଇଂରେଜ ବନ୍ଧୁଙ୍କୁ

ମଧ୍ୟ ସୁପାରିଶ ପତ୍ର ମାଗିଲି । ସେ ଆନନ୍ଦରେ ଖଣ୍ଡେ ଦେଲେ ଓ ତାହା ମୁଁ ଅଳ୍ପଦିନ ଯାଏ ମାତ୍ର ରଖିଥିଲି । କିନ୍ତୁ ମାଂସଭୋଜୀ ହୋଇ ସୁଦ୍ଧା ଜଣେ ଏହିପରି ସୁପାରିଶ ପତ୍ର ପାଇପାରେ ବୋଲି ଯେତେବେଳେ ଜାଣିଲି ସେଥିପ୍ରତି ମୋ'ର ଆଉ ଖାତିର ରହିଲା ନାହିଁ । ମୋ'ର କଥା ଯଦି ବିଶ୍ୱାସ ଯୋଗ୍ୟ ନୁହେଁ, ତାହାହେଲେ ଏବିଷୟ ନେଇ ସୁପାରିଶ ପତ୍ର ଖଣ୍ଡେ ରଖି ଲାଭ କଣ ?—ବୋଲି ମୁଁ ଭାବିଲି ।

ସେ ଯାହାହେଉ ସାଦମ୍ପଟନ୍‌ରେ କୌଣସି ଏକ ଶନିବାର ଦିନ ଆମ୍ଭେ ପହଞ୍ଚିଲୁ । ଜାହାଜରେ ବସିଲାବେଳେ ମୁଁ ଗୋଟିଏ କଳା ପୋଷାକ ପିନ୍ଧିଥିଲି । ଫ୍ଲେନ ସମ୍ବନ୍ଧୀୟ କନାରେ ମୋର ବନ୍ଧୁମାନେ ଯେଉଁ ଶୁକ୍ଳ ପୋଷାକ କରି ଦେଇଥିଲେ ତାହା ବିଲାତରେ ଓହ୍ଲାଇଲା କ୍ଷଣି ଲଗାଇବା ପାଇଁ ରଖିଥିଲି । ମୁଁ ଭାବିଲି ଯେ ଶୁକ୍ଳ ପୋଷାକ ମୋତେ ସୁନ୍ଦର ଦିଶିବ, ସୁତରାଂ ଜାହାଜରୁ ଓହ୍ଲାଇଲା କ୍ଷଣି ସେ ପୋଷାକଟି ପିନ୍ଧିଲି । ସେତେବେଳେ ସେପ୍ଟେମ୍ବର ମାସର ଶେଷ ସମୟ । ଦେଖିଲି ମୁଁ କେବଳ ଶୁକ୍ଳ ପୋଷାକ ପିନ୍ଧିଛି । ଯେତେବେଳେ ସମସ୍ତେ ନିଜ ନିଜର ପୋଷାକ ସବୁ ଗ୍ରିଣ୍ଡଲେ କମ୍ପାନିର ପ୍ରତିନିଧିଙ୍କଠାରେ ରଖିଲେ ମୁଁ ମଧ୍ୟ ମୋ'ର ସବୁ ଜିନିଷ, ଏପରିକି ଚାବି ସୁଦ୍ଧା ତାଙ୍କଠାରେ ରଖିଲି ।

ଡାକ୍ତର ପି, ଜେ ମେହଟା, ମିଃ ଦଲପତ୍‌ରାମ ଶୁକ୍ଳ, ରାଜପୁତ୍ର ରଣଜିତ୍ ସିଂହ ଓ ଦାଦାଭାଇ ନାରୋଜି ଏହି ଚାରିଜଣଙ୍କଠାକୁ ମୁଁ ଚାରି-ଖଣ୍ଡି ପରିଚୟ ପତ୍ର ନେଇଥିଲି । ଲଣ୍ଡନ ସ୍ଥିତ ଭିକ୍ଟୋରିଆ ହୋଟେଲରେ ରହିବା ପାଇଁ କିଏ ଜଣେ ମୋତେ ଜାହାଜରେ ଉପଦେଶ ଦେଇଥିଲେ । ମିଃ ମଜୁମ୍‌ଦାର ଓ ମୁଁ ସେଠାକୁ ଗଲୁଁ । ମୁଁ କେବଳ ଶୁକ୍ଳ ପୋଷାକ ପିନ୍ଧିଥିଲି ବୋଲି ବିଷୟରେ ଯେ ଲଜ୍ଜା ବୋଧ କରିଥିଲି ତାହା ଏଠାରେ

କାହାନଥାନ୍ତେ । ରବିବାର ଦିନ ଗ୍ରିଣ୍ଡ୍ଲେ କମ୍ପାନୀରୁ ଜିନିଷ ପତ୍ର ଆଣି ହେବ ନାହିଁ ବୋଲି ଯେତେବେଳେ ମୁଁ ସେ ହୋଟେଲରେ ଶୁଣିଲି, ବଡ଼ ନିରୋଶାକ ହେଲି ।,

ସାଉଥ୍ହାମ୍ପଟନ୍‌ରୁ ଡ଼ାକ୍ତର ମେହତାଙ୍କ ଠାକୁ ମୁଁ ଟେଲିଗ୍ରାମ ଦେଇଥିଲି, ସେ ସନ୍ଧ୍ୟା ଆଠ ଘଣ୍ଟା ବେଳେ ଆସିଲେ ଓ ହୃଦୟର ସହିତ ସମ୍ଭାଷଣ କଲେ, କିନ୍ତୁ ମୋ'ର ଶୁକ୍ଳ ପୋଷାକ ଦେଖି ମନହାସ ଦେଲେ । କଥା ହେଲାବେଳେ ମୁଁ ତାଙ୍କର ଟୋପିଟି ଦେଖିବା ପାଇଁ ଆଣିଲି ଓ ତାହା କପରି କୋମଳ ହୋଇଛି ବୋଲି ଦେଖୁଁ ଦେଖୁଁ ସେଥିର ଲୋମ ସବୁ ବିଗିଡ଼ି ହୋଇଗଲା । ଡ଼ାକ୍ତର ମେହତା ମୋ'ର ଏହି ବ୍ୟବହାର ଦେଖି ଟିକିଏ କ୍ରୁଦ୍ଧ ହେଲେ ଓ ଆଉ ବେଶି ଦେଖିବା ପାଇଁ ମନାକଲେ । କିନ୍ତୁ ମୁଁ ତ ଦୁଷ୍ଟାମୀ କରି ସାରି ଥିଲି, ଏ ଘଟଣାଟା ଭବିଷ୍ୟତ ପାଇଁ ଚେତନା ମାତ୍ର । ୟୁରୋପୀୟ ଶିଷ୍ଟାଚାର ସମ୍ବନ୍ଧେ ଡ଼ାକ୍ତର ମେହତା ଯେଉଁ କେତେକ ଶିକ୍ଷା ଦେଇଥିଲେ ଏହା ମୋ'ର ପ୍ରଥମ ଶିକ୍ଷା—ସେ ମୋତେ ଉପହାସ ଛଳରେ କହିଥିଲେ, "ଅନ୍ୟ କାହାର ଜିନିଷ କେବେହେଲେ ଛୁଇଁବ ନାହିଁ—ଭାରତରେ ଆମେମାନେ ପ୍ରଥମେ କାହାକୁ ଦେଖିଲା କ୍ଷଣି ଯେପରି ସାଧାରଣତଃ ପ୍ରଶ୍ନ ପଚାରୁଁ, ସେହିପରି ପଚାରିବ ନାହିଁ । ଆମେମାନେ କାହା ସହିତ କଥା ହେଲାବେଳେ ଯେପରି 'ମହାଶୟ' ବୋଲି ସମ୍ବୋଧନ କରୁଛେ ସେହିପରି କରିବ ନାହିଁ, କାରଣ ଏଠାରେ ଚାକର ଓ ନିମ୍ନ ଶ୍ରେଣୀର ଲୋକେ କେବଳ ସେପରି ସମ୍ବୋଧନ କରିଥାନ୍ତି" । ହୋଟେଲରେ ରହିଲେ ବେଶି ଖରଚ ହେବ, ସୁତରାଂ କୌଣସି ଏକ ପରିବାରରେ ରହିଲେ ଭଲ ହେବ ବୋଲି ସେ ମୋତେ କହିଲେ । କିନ୍ତୁ ସୋମବାର ପର୍ଯ୍ୟନ୍ତ ସେ ବିଷୟ ନେଇ ମୁଁ ଆଉ ଭାବନା କରି ନଥିଲି ।

ହୋଟେଲରେ ରହିବା ଆମ୍ଭ ଦୁଇ ଜଣଙ୍କ ପକ୍ଷେ ବଡ଼ କଷ୍ଟକର ହେଲା—ବେଶି ଖର୍ଚ୍ଚାନ୍ତରେ ମଧ୍ୟ ପଡ଼ିଲୁ । ମାଲଟାରୁ ଜଣେ ସିନ୍ଧ ଯାତ୍ରୀ ମଜୁମଦାରଙ୍କ ସହିତ ବନ୍ଧୁତା ସ୍ଥାପନ କଲେ ଓ ଲଣ୍ଡନରେ ସେ ପୂର୍ବରୁ ପରିଚିତ ଥିଲେ ବୋଲି ଆମ୍ଭ ସକାଶେ ଘର ଠିକଣା କରିବା ପାଇଁ ପ୍ରତିଶ୍ରୁତ ହେଲେ । ଆମ୍ଭେ ତାଙ୍କ ପ୍ରସ୍ତାବରେ ସମ୍ମତ ହେଲୁ ଓ ସୋମବାର ଦିନ ଜିନିଷ ପତ୍ର ସବୁ ଗିଣ୍ଡ୍‌ଲେ କମ୍ପାନୀରୁ ଆଣିଲୁ ଯଣି ସିନ୍ଧ ବନ୍ଧୁ ଯେଉଁ ଘରଖଣ୍ଡି ଆମ୍ଭମାନଙ୍କ ପାଇଁ ଭଡ଼ା କରିଦେଇ ଥିଲେ, ସେଠାକୁ ବାହାରି ଗଲୁ । ମନେଅଛି ମୋ'ର ହୋଟେଲର ଦେୟ ତିନ ପାଉଣ୍ଡ ହେବା ଦେଖି ମୁଁ ଏକାବେଳକେ ଅବାକ୍ ହୋଇଗଲି । ବିଶେଷ କଥା ଏତେ ପଇସା ଦେଇ ସୁଦ୍ଧା ମୁଁ ଉପବାସ ରହୁଥିଲି—କାରଣ ମୋତେ କୌଣସି ଖାଦ୍ୟ ଜିନିଷ ରୁଚିକର ହେଉ ନଥିଲା । ଗୋଟିଏ ଜିନିଷ ଭଲ ନଲାଗିଲେ ଯଦି ଆଉ ଗୋଟିଏ ଜିନିଷ ମାଗେ, ତାହାହେଲେ ସେଥିପାଇଁ ମଧ୍ୟ ପଇସା ଦେବାକୁ ପଡ଼ୁଥାଏ । ବୋମ୍ବାଇରୁ ମୁଁ ଯେଉଁ ଖାଦ୍ୟ ଜିନିଷ ନେଇଥିଲି ସେଥିରେ କେବଳ ଏ ସମସ୍ତ ଦିନ ନିର୍ଭର କରିବାକୁ ହେଲା ।

ନୂତନ ଘରେ ମଧ୍ୟ ମୁଁ ବଡ଼ ଅସ୍ଥିର ହେଲି । ସବୁବେଳେ ଘର ଓ ଦେଶକଥା ମନରେ ଖେଳିଲା । ମାଆଙ୍କର ସ୍ନେହ ସବୁବେଳେ ସ୍ମରଣ କରିବାକୁ ଲାଗିଲି । ଘରର ନାନା କଥା ମନେ ପଡ଼ିଲେ ପ୍ରତିଦିନ ରାତ୍ର ଆଖିରୁ ଲୁହ ଗଡ଼ୁଥାଏ । ଏପରି ସ୍ଥଳେ ରାତ୍ରରେ ନିଦ ହେବାତ ଅସମ୍ଭବ କଥା । ଅନ୍ୟ କାହାରିକୁ ମୋ'ର ଦୁଃଖ କାହାଣୀ କହିବା ସମ୍ଭବ ହୋଇ ନଥିଲା । ଯଦିବା କାହାକୁ କହିବା ସୁବିଧା ମଧ୍ୟ ପାଇଥାନ୍ତି, ସେଥିରୁ ବା କଣ ଲାଭ ହୁଅନ୍ତା ? କାହାଠାରୁ ମୁଁ ସାନ୍ତ୍ୱନା ଲଭିବି, ମୁଁ ଜାଣିନଥିଲି । ବ୍ୟକ୍ତି ବିଶେଷଙ୍କ ଗତି ସ୍ଥିତି, ମୋତେ ନୂଆ ନୂଆ

ଲାଗିଲା । ଇଁରେଜ ଶିଷ୍ଟାଚାର ସମ୍ବନ୍ଧେ ମୁଁ କିଛି ଜାଣି ନଥିଲି । କିନ୍ତୁ ଭୋଜନର ପ୍ରତିଜ୍ଞା ଲାଗି ମଧ୍ୟ ଅନେକ ଅସୁବିଧା ଭୋଗିବାକୁ ହୋଇଥିଲା । ମୁଁ ଯେଉଁ ଜିନିଷ ନେଇଥିଲି ତାହା ରୁଚିକର ହୋଇନଥିଲା । ଏକ ଆଡ଼େ ଅତଳ ସମୁଦ୍ର ଓ ଅନ୍ୟ ଆଡ଼େ ଭୀଷଣ ଅଗ୍ନିକୁଣ୍ଡ ଓ ମୁଁ ଏହି ଦୁଇଟିର ମଝିରେ ପଡ଼ି ଯେପରି ଜ୍ଞାନଶୂନ୍ୟ ହେବାକୁ ଲାଗିଲି । ବିଲାତ ଜୀବନ ଅସହ୍ୟ ହେଲା, ତଥାପି ଭାରତକୁ ଫେରିବା ମଧ୍ୟ ଅସମ୍ଭବ । ଆସିଲିଣି—କିପରି ହେଲେ ତିନି ବର୍ଷ କଟାଇବାକୁ ହେବ ବୋଲି ହୃଦୟରୁ କିଏ ଯେପରି କହିଲା । ନିଶ୍ଚୟ କଲି ପଢ଼ାଶେଷ କରି ଫେରିବି ।



## ଚତୁର୍ଦ୍ଦଶ ପରିଚ୍ଛେଦ ।

( ଖାଦ୍ୟ ଅନୁକ୍ରିୟା )

—※ଃ ✝ ଃ※—

ଡ଼ାକ୍ତର ମେହଟା ସୋମବାର ଦିନ ଭିକ୍ଟୋରିଆ ହୋଟେଲରେ ମୋତେ ଦେଖିବା ଆଶା କରି ସେଠାକୁ ଗଲେ । କିନ୍ତୁ ଆମ୍ଭେ ସେ ସ୍ଥାନ ଛାଡ଼ି ଅନ୍ୟଠାରେ ବସା କରିଛୁ ଶୁଣି ସେ ଆମ୍ଭର ଠିକଣା ନେଇ ସେଠାରେ ଆସି ଆମ୍ଭମାନଙ୍କୁ ଭେଟିଲେ । ମୋର ମୂର୍ଖତା ଲାଗି ଜାହାଜରେ ଝିଙ୍କିଏ ଘାଉ ହୋଇ ଯାଇଥିଲା । ଧୋଇବା ଓ ଗାଧୋଇବା ପାଇଁ କେବଳ ସମୁଦ୍ର ପାଣି ବ୍ୟବହାର କରିବାକୁ ହୋଇଥାଏ—ତାହା ସବୁ କାର୍ଯ୍ୟରେ ବ୍ୟବହାର୍ଯ୍ୟ ନୁହେ । ସାବୁନ ବ୍ୟବହାର କରିବା ଶିକ୍ଷିତ ବ୍ୟକ୍ତିର ଚିହ୍ନ ବିବେଚନା କରି ମୁଁ ତାହା ବ୍ୟବହାର କରି ପକାଇଲି । ଫଳରେ ମୋର

ଦେହ ନିର୍ମଳ ରହିବା ଦୂରେ ଥାଉ ଦେହ ଗୋଟାଯାକ ଢେଳିଆ ହୋଇ ପରିଶେଷରେ ଯାଦୁ ହେଲା । ଡାକ୍ତର ମେହେଟାଙ୍କୁ ଦେଖାଇବାରୁ ଅମ୍ଳରସ ଲଗାଇବା ପାଇଁ ସେ କହିଲେ । ସେହି ରସର ଜ୍ୱାଳା ଦାଉ ଲାଗି ମୁଁ ଯେ କିପରି କାନ୍ଦିଥିଲି ମୋର ଏବେ ସମ୍ପୂର୍ଣ୍ଣ ମନେ ଅଛି । ଡାକ୍ତର ମେହେଟା ମୋର ଘର ଓ ଜିନିଷ ପତ୍ର ଦେଖି ଅସନ୍ତୁଷ୍ଟ ହେଲେ ଏବଂ କହିଲେ "ଏ ସ୍ଥାନଟା ରହିବା ଯୋଗ୍ୟ ନୁହେ । ଆମ୍ଭେମାନେ ଯେ ବିଲାତ ଆସୁଛେ କେବଳ ପଢ଼ିବା ପାଇଁ ନୁହେ କିନ୍ତୁ ଇଂରେଜମାନଙ୍କ ଜୀବନ ଓ ରୀତି ନୀତି ଶିକ୍ଷା କରିବା ସକାଶେ ମଧ୍ୟ । ସୁତରାଂ ତୁମେ ଗୋଟିଏ ପରିବାର ମଧ୍ୟରେ ରହିବାକୁ ହେବ । କିନ୍ତୁ ତାହା କରିବା ପୂର୍ବରୁ କିଛିଦିନ ସକାଶେ କିପରି ପରିବାରରେ ଚଳିବାକୁ ହୁଏ ତାହା ଶିକ୍ଷା କରିବା ଉଚିତ । ସୁତରାଂ ତୁମେ ମୋର ବସାକୁ ଯିବା ପାଇଁ ହେବ ।"

କୃତଜ୍ଞତାର ସହିତ ମୁଁ ପ୍ରସ୍ତାବଟି ଗ୍ରହଣ କଲି ଓ ସେ ଥିବା ଘରକୁ ଗଲି । ସେ ଯେ ଦୟା ଓ ଲାଳନାପାଳନର ଆଧାର ଥିଲେ । ସେ ମୋତେ ନିଜ ଭାଇ ପରି ବ୍ୟବହାର କରିବାକୁ ଲାଗିଲେ । ଇଂରେଜମାନଙ୍କ ଆଚାର ବ୍ୟବହାର ବିଷୟ ନେଇ ନାନା ଶିକ୍ଷା ଦେଲେ ଓ ଇଂରେଜି ଭାଷା କହିବା ପାଇଁ ମୋତେ ଅଭ୍ୟସ୍ତ କରାଇଲେ । ମୋର ଖାଇବା କଥା କିନ୍ତୁ କଠିନରୁ କଠିନତର ହେଲା । ଲୁଣ ନପକାଇ କିମ୍ବା ମସଲା ସରକ ନଦେଇ ଖାଲି ସିଝା ପରିବା ତିଅଣ ମୋତେ ଆଦୌ ସ୍ୱାଦୁ ଲାଗେ ନାହିଁ । ମୋ' ପାଇଁ କ'ଣ ରାନ୍ଧିବେ, ତାହା ଗୃହପତ୍ନୀ [ ଆମ୍ଭେ ଦୁହେଁ ଯାହାଘରେ ଥିଲୁ ] ଭାବି ପାରିଲେ ନାହିଁ । ସକାଳ ପାଇଁ ଯବଧାନ ଚୂନାର ପିଠା ହୋଇଥାଏ, ମୁଁ ଭଲକରି ଖାଏ କିନ୍ତୁ ଦୋପହରା ଓ ରାତ୍ରିଖିଆ ମୋ ଭାଗ୍ୟରେ ଘଟି ନଥାଏ । ମାଂସ ଖାଇବା ପାଇଁ ମେହେଟା ଅନେକ

ଅନୁରୋଧ କରୁଥାନ୍ତି କିନ୍ତୁ ମୋ'ର ଶପଥ କଥା କହି ତାଙ୍କୁ ତୃପ୍ତ କରୁଥାଏ । ରାନ୍ଧିଖିଆ ସକାଶେ ପାଉଁରୁଟି ଦିଆଯାଏ—ମୁଁ ବେଶି ଖାଇପାରେ ଓ ସବୁବେଳେ ଭୋକିଲା ରହୁ ଥିଲେହେଁ ଖଣ୍ଡେ ଦୁଇ ଖଣ୍ଡ ରୁଟି ବିନା ଅଧିକ ମାଗିବା ପାଇଁ ମୋତେ ଲାଜ ମାଡେ ଏବଂ ସେପରି ମାଗିବା ମଧ୍ୟ ଅନୁଚିତ ବୋଲି ମୁଁ ମନେ କରିଥାଏ । ଏହାଛଡା ଦୋପହରା ଓ ରାତ୍ରି ଭୋଜନ ବେଳେ କ୍ଷୀର ମଧ୍ୟ ମିଳେ ନାହିଁ । ଏସବୁ କଥା ଦେଖି ନିତାନ୍ତ ବିରକ୍ତ ହୋଇ ଦିନେ ମେହତା କହିଲେ, "ତୁମେ ଯଦି ମୋର ନିଜ ଭାଇ ହୋଇଥାନ୍ତ ତାହାହେଲେ ତୁମକୁ ଘରକୁ ପଠାଇ ଦେଇଥାନ୍ତି । ଏଠାର ଅବସ୍ଥା ସମ୍ବନ୍ଧେ ଯେଉଁ ଅନଭିଜ୍ଞ ସେହିପରି ଜଣେ ଅଶିକ୍ଷିତା ମାଆ ଆଗରେ ଶପଥର ମର୍ଯ୍ୟାଦା ବା କ'ଣ ? ତାହା ଆଦୌ ଶପଥ ନୁହେ । ନୀତି ଶାସ୍ତ୍ରରେ ତାହା ଏକ ପ୍ରତିଜ୍ଞା ବୋଲି ବିବେଚିତ ହୋଇ ନପାରେ । ଏପରି ପ୍ରତିଜ୍ଞା ବଦ୍ଧ ହେବା ଭ୍ରାନ୍ତ ଧାରଣା ମାତ୍ର । ଏହିପରି ଧରିବସିଲେ ଏଠାରେ ତୁମେ କିଛିହେଲେ ଶିଖି ପାରିବ ନାହିଁ । ମାଂସ ଚାଖିଥିବା କଥାତ ସ୍ୱୀକାର କରୁଛ, ଯେତେବେଳେ ତାହା ନିତାନ୍ତ ଅନାବଶ୍ୟକ ଥିଲା ସେତେବେଳେ ଖାଇଥିଲ କିନ୍ତୁ ଏବେ ଆବଶ୍ୟକ ହେଲା ବେଳେ ଯେ ଖାଇବା ପାଇଁ ଅମଙ୍ଗ ହେଉଛ, ବଡ଼ ଦୁଃଖର କଥା ।" ମୁଁ କିନ୍ତୁ ଅଟଳ ଓ ଅଚଳ ରହିଲି ।

ମାଂସ ଖାଇବା ପାଇଁ ପ୍ରତିଦିନ ସେ ମୋ ସହିତ ଯୁକ୍ତି ତର୍କ କରୁଥାନ୍ତି ମୁଁ କିନ୍ତୁ ସବୁବେଳେ ନାହିଁ କରୁଥାଏ । ସେ ଯେତିକି ଯୁକ୍ତି କରୁଥାନ୍ତି ମୁଁ ସେତିକି ଅମଙ୍ଗ ହୁଏ । ପ୍ରତିଦିନ ଭଗବାନଙ୍କ ସାହାଯ୍ୟ ପ୍ରାର୍ଥନା କରିଥାଏ । ମୋ'ର ଯେ ଭଗବାନଙ୍କ ସମ୍ବନ୍ଧେ ବେଶି ଧାରଣା ଥିଲା ତାହା ନୁହେ । ମୋ'ର୍ ଧାଈ ରମ୍ଭା ଭଗବାନଙ୍କ ପ୍ରତି ମୋଠାରେ ଯେଉଁ ବିଶ୍ୱାସ ସଞ୍ଚାର କରାଇଥିଲା ତାହା କମିବାର ନୁହେ ।

ଧନେ ମୋର ବନ୍ଧୁ [ ମେହତା ] ବେନ୍‌ଥାନ୍ ( Bentham ) ଲିଖିତ 'ଉପଯୋଗ ବାଦ' ( The Theory of Utility ) ଶୀର୍ଷକ ଖଣ୍ଡେ ବହି ମୋ ଆଗରେ ପଢ଼ିଲେ । କେତେ ଚେଷ୍ଟା କଲି କିନ୍ତୁ ମୁଁ କିଛି ହେଲେ ସେଥିରୁ ବୁଝି ପାରିଲି ନାହିଁ । ବହିଟିର ଭାଷା ମୋ ପକ୍ଷେ ନିତାନ୍ତ କଠିନ ହୋଇଥିଲା । ସେ ମୋତେ ଅର୍ଥ କହିବାକୁ ବସିଲେ କିନ୍ତୁ ମୁଁ କହିଲି "ପ୍ରାର୍ଥନା କରୁଛି ମୋତେ କ୍ଷମା କରନ୍ତୁ । ଏସବୁ କଠିନ ବିଷୟମାନ ବୁଝିବା ପାଇଁ ମୋ'ର ଶକ୍ତି ନାହିଁ । ମାଂସ ଖାଇବା ଭଲ ବୋଲି ମୁଁ ସ୍ୱୀକାର କରୁଛି କିନ୍ତୁ କଦାପି ମୁଁ ପ୍ରତିଜ୍ଞା ଭଙ୍ଗ କରି ନପାରେ ଓ ସେ ସମ୍ବନ୍ଧେ ଯୁକ୍ତି ତର୍କ ମଧ୍ୟ କରି ନପାରେ । ବାସ୍ତବିକ ଆପଣଙ୍କ ସହିତ ଯୁକ୍ତି କରିବା ମଧ୍ୟ ମୋ ପକ୍ଷେ ଅସମ୍ଭବ । ଦୟା ପୂର୍ବକ ମୋତେ ମୂର୍ଖ କିମ୍ବା ଅଣବୁଝା ବୋଲି ପଛେ କହନ୍ତୁ କିନ୍ତୁ ଆଉ ମାଂସ ଭୋଜନ ସମ୍ବନ୍ଧେ କିଛି କହନ୍ତୁ ନାହିଁ ! ମୋ ପ୍ରତି ଆପଣଙ୍କର ଯେ ପ୍ରେମ ତାହା ମୁଁ ପାସୋରି ନପାରେ ଏବଂ ଆପଣ ମୋ'ର ହିତାକାଂକ୍ଷୀ; ବାରମ୍ବାର ଯେ ଏ ବିଷୟ ନେଇ କହୁଛନ୍ତି ତାହା ମୋ'ର ଭଲ ପାଇଁ ବୋଲି ମଧ୍ୟ ଜାଣୁଛି—କିନ୍ତୁ ମୁଁ କର୍ତ୍ତବ୍ୟ ଜ୍ଞାନ ଶୂନ୍ୟ । ପ୍ରତିଜ୍ଞା ସବୁବେଳେ ପ୍ରତିଜ୍ଞା ମାତ୍ର; ତାହା ଭଗ୍ନ ହେବାର ନୁହେ ।

ମେହତା ଆଶ୍ଚର୍ଯ୍ୟାନ୍ୱିତ ହୋଇ ମୋ ଆଡ଼କୁ ଚାହିଁ ରହିଲେ । ପୁସ୍ତକଟି ବନ୍ଦ କରି କହିଲେ, "ଆଚ୍ଛା ହେଉ, ଆଉ ବେଶି ମୁଁ ଯୁକ୍ତି ତର୍କ କରିବି ନାହିଁ ।" ମୁଁ ବଡ଼ ଆନନ୍ଦିତ ହେଲି । ସେ ଆଉ ଏ ବିଷୟ ନେଇ କେବେହେଲେ ଯୁକ୍ତିତର୍କ କଲେନାହିଁ ସତ କିନ୍ତୁ ସବୁବେଳେ ମୋ ଲାଗି ବ୍ୟସ୍ତ ହେଉଥାନ୍ତି । ସେ ଧୂମ୍ର ଓ ସୁରାପାନ କରୁଥାନ୍ତି କିନ୍ତୁ ତାହା କରିବା ପାଇଁ ମୋତେ କହନ୍ତି ନାହିଁ । ମାଂସ ନଖାଇ ମୁଁ କାଳେ ଦୁର୍ବଳ

ହୋଇଗଲେ ବାକିତ ଜୀବନ ଦୁଃଖମୟ ମନେ କରିପାରେ ବୋଲି ତାଙ୍କର ବଡ଼ ଆଶଙ୍କା ଥାଏ ।

ଏହିପରି ଏକ ମାସ କଟିଗଲା । ବନ୍ଧୁଙ୍କ ବସା ରିଚମଣ୍ଡ (Richmond) ରେ ଥିଲା; ସୁତରାଂ ସପ୍ତାହକେ ଥରେ କିମ୍ବା ଦୁଇଥର ଛଡ଼ା ଲଣ୍ଡନକୁ ଆଉ ବେଶି ଯାଇ ପାରୁନଥାଉଁ । ସେହେତୁ ମେହଟା ଓ ଦଲପତ୍‌ରାମ ଶୁକ୍ଳ ନିଶ୍ଚୟ କଲେ ଯେ ଅନ୍ୟ ଏକ ପରିବାରରେ ମୋତେ ରଖିବା ଉଚିତ । ପଶ୍ଚିମ କେନ୍‌ସିଙ୍ଗଟନ୍ (Kensington) ର ଏକ ଭାରତୀୟ ଗୋରା (Anglo Indian) ଙ୍କ ଘରେ ମୁଁ ରହିବା ପାଇଁ ଶୁକ୍ଳ ପ୍ରସ୍ତାବ କଲେ । ଗୃହପତ୍ନୀ ଜଣେ ବିଧବା । ମୋର ପ୍ରତିଜ୍ଞା ସମ୍ବନ୍ଧେ ତାଙ୍କୁ କହିଲି । ମୋ ପାଇଁ ସୁନ୍ଦର ବ୍ୟବସ୍ଥା କରିବେ ବୋଲି ସେ କହିବାରୁ ମୁଁ ତାଙ୍କ ଘରେ ବସା କଲି । ଏଠାରେ ମଧ୍ୟ ମୁଁ ଉପବାସରେ ରହିବାକୁ ପଡ଼ିଲା । ମିଷ୍ଟାନ୍ନ ପ୍ରଭୃତି କିଛି ଖାଦ୍ୟ ଜିନିଷ ପାଇଁ ମୁଁ ଘର ଠାକୁ ଲେଖି-ଥିଲି କିନ୍ତୁ ସେତେବେଳକୁ କିଛି ହେଲେ ଆସି ନଥିଲା । ସବୁ ଖାଦ୍ୟ ଜିନିଷ ମୋତେ ନୀରସ ଓ ଅରୁଚି ବୋଧ ହେଉଥାଏ । ଖାଦ୍ୟ ଜିନିଷ ଭଲ ଲାଗୁଛି କି ନାହିଁ ସେ ସମ୍ବନ୍ଧେ ପ୍ରତି ଦିନ ଗୃହପତ୍ନୀ ପଚାରୁଥାନ୍ତି । କିନ୍ତୁ ସେ ବା କ'ଣ କରିବେ ? ମୁଁ ପୂର୍ବପରି ଲଜ୍ଜାଶୀଳ ଥିଲି; ଥରେ ଯାହା ଦିଆଯାଇ ଥାଏ ତାହା ଛଡ଼ା ଆଉ କିଛି ଜିନିଷ ମାଗିବା ସକାଶେ ସାହସ କରି ପାରେ ନାହିଁ । ତାଙ୍କର ଦୁଇଟି ଝିଅ । ମୋତେ ଅଧିକା ଖଣ୍ଡେ ଦୁଇ ଖଣ୍ଡ ରୁଟି ଦେବା ପାଇଁ ସେମାନେ ହଟ କରନ୍ତି । କିନ୍ତୁ ସେମାନେ ଆଦୌ ଜାଣି ନଥିଲେ ଯେ ସେଥିରେ ସୁଦ୍ଧା ମୋ'ର ପେଟ ପୂରିବା ଅସମ୍ଭବ ।

ମୁଁ ଆଜି ଯାଏ ଧାରାବାହିକ ରୂପେ ପଢ଼ାରମ୍ଭ କରି ନଥିଲି । ଶୁକ୍ଳଙ୍କ କୃପାରୁ ଏଠାରେ ସମ୍ବାଦପତ୍ର ପଢ଼ା ଆରମ୍ଭ କଲି । ଭାରତରେ

ମୁଁ କେବେହେଲେ ପତ୍ରିକା ପଢି ନଥିଲି । କିନ୍ତୁ ଏଠାରେ ସବୁବେଳେ ତାହା ପଢିବାରୁ ସେଥି ପ୍ରତି ମୋ'ର ଆଗ୍ରହ ଜନ୍ମିଲା । ମୁଁ ସବୁବେଳେ 'Daily News' 'Daily Telegraph' ଓ 'Pall Mall Gazette' ପଢୁଥାଏ । ଏଥିରେ ଘଣ୍ଟାଏ ସମୟ ମଧ୍ୟ କଟି ନଥାଏ । ସୁତରାଂ ଅନ୍ୟ ସମୟରେ ମୁଁ ବୁଲିବାକୁ ବାହାରେ—ଫଳମୂଳ ମିଳିବା ଦୋକାନ ଖୋଜି ଥାଏ । ଗୃହପତ୍ନୀ ମୋତେ କହୁଥାନ୍ତି ଯେ ନଗରରେ ସେହିପରି ଦୋକାନ ଅନେକ ଅଛି । ପ୍ରତିଦିନ, ଦଶ କମ୍ବା ବାର ମଇଲ ବାଟ ଚାଲି ସୁଦ୍ଧା କିଛି ଫଳ ହୁଏ ନାହିଁ । ଗୋଟିଏ ଶସ୍ତା ରୁଟି ଦୋକାନକୁ ମାତ୍ର ଯାଏ କିନ୍ତୁ ମୁଁ ସେଠାରେ ଯାହା ଖାଏ ସେଥିରେ ମୋ'ର ପେଟ ପୂରେ ନାହିଁ । ଏହି ପରି ବୁଲି ବୁଲି ଦିନେ ଫେରିଙ୍ଗଡନ୍ ସାହିରେ ଗୋଟିଏ ଫଳ ଦୋକାନ ଦେଖିଲି—ଶିଶୁ ଯେପରି ସ୍ୱବାଞ୍ଛିତ ପଦାର୍ଥ ପାଇ ଆନନ୍ଦିତ ହୋଇଥାଏ ମୁଁ ମଧ୍ୟ ସେହିପରି ହେଲି । ଉକ୍ତ ଦୋକାନ ଭିତରକୁ ଯିବା ପୂର୍ବରୁ ଦେଖିଲି କେତେ ଗୁଡ଼ିଏ ପୁସ୍ତକ ବିକ୍ରୟ ସକାଶେ କାଚ ଆଲ୍‌ମାରିରେ ରଖାଯାଇଅଛି । ସେ ମଧ୍ୟରେ ସାଲ୍‌ଟ୍ ଲିଖିତ "ନିରାମିଷ ଭୋଜନ ପାଇଁ ସମର୍ଥନ ବାଦ" । ( Plea for Vegeterianism ) ଶୀର୍ଷକ ବହି ଖଣ୍ଡିଏ ଥିଲା । ସିଲିଙ୍ଗଟିଏ ଦେଇ ଏହି ବହିଟି କିଣି ଖାଇବା ଘରକୁ ସିଧା ଚାଲିଗଲି । ବିଲାତକୁ ଆସିବା ଦିନୁ ଏହିଠାରେ କେବଳ ମୁଁ ପେଟ ପୂରାଇ ଖାଇଥିଲି । ଭଗବାନ ବୋଧହୁଏ ମୋ'ର ସହାୟ ହୋଇଥିଲେ ।

ବହିଟି ପ୍ରଗାଢ଼ ଅନୁରାଗ ସହିତ ପଢ଼ିଲି, ବଡ଼ ଭଲ ଲାଗିଲା । ଏହି ପୁସ୍ତକଟି ପଢ଼ିବା ଦିନୁ ମୁଁ ନିଜ ଇଚ୍ଛା ଅନୁସାରେ ନିରାମିଷ ଭୋଜୀ ହୋଇଅଛି ବୋଲି କହିପାରେ । ମାଆଙ୍କ ଆଗରେ ଯେଉଁ ଦିନ ମୁଁ ପ୍ରତିଜ୍ଞା କରିଥିଲି ତାହା ବଡ଼ ଶୁଭ ଦିନ ବୋଲି ମନେ କଲି । ସତ୍ୟ

ଓ ପ୍ରତିଜ୍ଞା ରକ୍ଷା କରିବା ଉଦ୍ଦେଶ୍ୟରେ ମୁଁ ସେଠାରେ କେବେହେଲେ ମାଂସ ଖାଇ ନଥିଲି, କିନ୍ତୁ ମୋ'ର ଇଚ୍ଛା ଥିଲା ପ୍ରତ୍ୟେକ ଭାରତବାସୀ ମାଂସ ଖାଇବା ଉଚିତ । ଏହିପରି ଦିନ ଆସିବ, ମୁଁ ନିଜ ଗୋଡ଼ରେ ଛିଡ଼ା ହେବ ଓ ମୁକ୍ତ ଭାବରେ ଅନ୍ୟମାନଙ୍କୁ ମୋ'ର ଦୀକ୍ଷାରେ ଦୀକ୍ଷିତ କରିପାରିବ ବୋଲି ମନେ କଲି । ନିରାମିଷ ଭୋଜନ ସେତେବେଳେ ଯାଏଁ ମୋ'ର ମନର କଥା ଥିଲା; କିନ୍ତୁ ସେଦିନଠାରୁ ତାର ବିସ୍ତାର ବ୍ୟବହାର ପାଇଁ ଚେଷ୍ଟା କରିବା ମୋର ଏକ ମାତ୍ର ଉଦ୍ଦେଶ୍ୟ ହେଲା ।



## ପଞ୍ଚଦଶ ପରିଚ୍ଛେଦ ।

( ଭୋଜନ ଉତ୍କର୍ଷ )

——o❀o——

ନିରାମିଷ ଭୋଜନରେ ମୋ'ର ଯେଉଁ ବିଶ୍ୱାସ ଜନ୍ମିଥିଲା ତାହା ଦିନ୍ ଦିନ ବଢ଼ିବାକୁ ଲାଗିଲା । ସାଲଟଙ୍କ ବହିଖଣ୍ଡ ପଢ଼ିଲା ଦିନୁ ଖାଦ୍ୟ ବିଷୟ ନେଇ ପଢ଼ା କରିବା ନିମନ୍ତେ ମୋ'ର ବେଶି ସ୍ପୃହା ଜାତ ହେଲା । ନିରାମିଷ ଭୋଜନ ସମ୍ବନ୍ଧେ ମୁଁ ଯେଉଁ ପୁସ୍ତକ ଦେଖେ ସେସବୁ ଆଣି ପଢ଼ିବାକୁ ଲାଗିଲି । ତନ୍ମଧ୍ୟରୁ ହାୱାର୍ଡ ବିଲିଏମ୍ ଲିଖିତ "ଖାଦ୍ୟ ନୀତି" 'The Ethics of Diet' ଖଣ୍ଡିଏ । ପୂର୍ବକାଳରୁ ଆରମ୍ଭ କରି ଆଜିପର୍ଯ୍ୟନ୍ତ ସମସ୍ତ ଖାଦ୍ୟର ଇତିହାସ ସେଥିରେ ଲେଖାଅଛି । ମୁଁ ବୁଝି ପାରିଲି ଯେ ପାଇଥାଗୋରସ ଓ ଯିଶୁ ଖ୍ରୀଷ୍ଟଙ୍କଠାରୁ ଆରମ୍ଭ କରି ଆଜି କାଲିର ଦର୍ଶନ ଶାସ୍ତ୍ରଜ୍ଞ ମହାତ୍ମା ମାନଙ୍କ ପର୍ଯ୍ୟନ୍ତ ସମସ୍ତେ ନିରାମିଷ ଭୋଜୀ । ସ୍ୱାସ୍ଥ୍ୟ ସମ୍ବନ୍ଧେ ଡାକ୍ତର ଏଲିନ୍ସନ ଯାହା ଲେଖିଥିଲେ ସେ ସବୁ ବଡ଼ ଉପାଦେୟ

ଛାଡ଼ିଥିଲା । ଖାଦ୍ୟରେ ବିଶୃଙ୍ଖଳା ନରହିଲେ ରୋଗ ମୁକ୍ତ ହେବା କଷ୍ଟକର ନୁହେ ବୋଲି ତାଙ୍କର ଧାରଣା । ନିଜେ ସେ ନିରାମିଷ ଭୋଜୀ ଥିଲେ ଓ ତାଙ୍କ ରୋଗିମାନଙ୍କ ପାଇଁ ମଧ୍ୟ ନିରାମିଷ ଭୋଜନର ବ୍ୟବସ୍ଥା କରୁଥିଲେ । ଏସବୁ ସାହିତ୍ୟ ପଢ଼ିବା ଯୋଗୁଁ ଖାଦ୍ୟ ଜନିତରେ ନାନା ପ୍ରକାର ପରୀକ୍ଷା କରିବା ମୋ'ର ଜୀବନର ଯେପରି ପ୍ରଧାନ ଲକ୍ଷ୍ୟ ରହିଲା । ପ୍ରଥମତଃ ଏସବୁ ପରୀକ୍ଷାର ମୂଳ ଉଦ୍ଦେଶ୍ୟ ହେଲା ସ୍ୱାସ୍ଥ୍ୟ ରକ୍ଷା, କିନ୍ତୁ ପରଶେଷରେ, ତାହା ସବୁ ଧର୍ମର ଏକ ଅଙ୍ଗ ହେଲା ।

ମେହଟା ମୋଲାଗି ଅଧିକ ବ୍ୟସ୍ତ ହେଉଥାନ୍ତି । ମୋ'ପ୍ରତି ତାଙ୍କର ଏପରି ପ୍ରଗାଢ଼ ଅନୁରାଗ ଥିଲା ଯେ ମୁଁ ଯଦି ମାଂସ ନଖାଇବା ପାଇଁ ଜିଦ ଧରି ବସେ, ତାହାହେଲେ ମୁଁ ଯେ କେବଳ କ୍ଷୀଣ ଶରୀର ହେବି ତାହାନୁହେ, ଇଂରେଜ ସମାଜରେ ମୂକ ହୋଇ ରହିବି ବୋଲି ତାଙ୍କର ଭାବନା । ଯେତେବେଳେ ସେ ଜାଣିଲେ ଯେ ନିରାମିଷ ଭୋଜନ ସମ୍ବନ୍ଧେ ପୁସ୍ତକ ପତ୍ର ପଢ଼ିବାରେ ମୋ'ର ବେଶ ଅନୁରାଗ ଜନ୍ମିଛି, ତାଙ୍କର ଭୟ ହେଲା, ସେହି ବାଜେ ପଢ଼ାରେ ବ୍ୟସ୍ତ ରହି କାଳେ ମୁଁ ନିଜ ପଢ଼ାରେ ବ୍ୟାଘାତ ଘଟାଇବି । ସୁତରାଂ ମୋତେ ସଂସ୍କାର କରିବା ସକାଶେ ସେ ବିଶେଷ ଚେଷ୍ଟା କଲେ । ଦିନେ ଗୋଟିଏ ନାଟକ ଦେଖିବାକୁ ଯିବା ସକାଶେ ମୋତେ ଅନୁରୋଧ କଲେ । ନାଟକ ପେଣ୍ଡାଲରେ ପ୍ରବେଶ ପୂର୍ବରୁ ହାଲବାରନ ନାମକ ଗୋଟିଏ ହୋଟେଲରେ ଆମ୍ଭର ଭୋଜନର ବ୍ୟବସ୍ଥା ହୋଇଥିଲା । ଭିକ୍ଟୋରିଆ ହୋଟେଲ ଛାଡ଼ିବା ଦିନୁଁ ମୁଁ ଯେତେ ହୋଟେଲ ଦେଖିଛି ସେ ସବୁ ଏହାଠାରୁ ସାନ । ମୋ ପକ୍ଷେ ଏହା ଏକ ରାଜ ପ୍ରାସାଦ । ମୋତେ ଏହି ହୋଟେଲକୁ ନେବା ମେହଟାଙ୍କର ଉଦ୍ଦେଶ୍ୟ ଯେ ମୁଁ ନମ୍ର ଭାବରେ ରହିବି, ମାଂସ ଭୋଜନ ସକାଶେ କିଛି କହିବି

ନାହିଁ । ଅନେକ ଲୋକଙ୍କ ମଧ୍ୟରେ ଆମ୍ଭେ ଦୁହେଁ ଗୋଟିଏ ଟେବୁଲର ଦୁଇପାଖେ ବସିଲୁ । ପ୍ରଥମରେ ଝୋଳ ଦିଆଗଲା । କି ପ୍ରକାର ଝୋଳ ବୋଲି ମୁଁ ଭାବିବାକୁ ଲାଗିଲି କିନ୍ତୁ ମେଜହଟାଙ୍କୁ ପଚାରିବା ପାଇଁ ସାହସ ହେଲାନାହିଁ, ସୁତରାଂ ଜଣେ ଚାକରକୁ ଡ଼ାକିଲି । ମୁଁ ବିଚଳିତ ହେବା ଦେଖି ମେହେଟା ହଠାତ୍ ତାହାର କାରଣ ଜିଜ୍ଞାସା କଲେ । ବନ୍ଧୁ କଣ୍ଠରେ ମୁଁ ତାଙ୍କୁ କହିଲି ଯେ ସେ ଝୋଳ ନିରାମିଷ କି ନୁହେ ସେ ସମ୍ବନ୍ଧେ ପଚାରୁଥିଲି । ସେ କ୍ରୋଧ ହୋଇ କହିଲେ 'ତୁମେ ଭଦ୍ର ସମାଜ ପାଇଁ ନିତାନ୍ତ ଅନୁପଯୁକ୍ତ, ଯଦି ଠିକ୍ ବ୍ୟବହାର କରି ନପାର ତାହାହେଲେ ବରଂ ବାହାର ଯିବା ଭଲ । ଅନ୍ୟ କୌଣସି ହୋଟେଲରେ ଖାଇ ପଦାରେ ମୋସକାଶେ ଅପେକ୍ଷା କରିଥାଅ' ।

ଏହାଶୁଣି ମୁଁ ବଡ଼ ଆନନ୍ଦିତ ହୋଇ ପଦାକୁ ବାହାରି ଗଲି । ନିକଟରେ ଗୋଟିଏ ନିରାମିଷ ହୋଟେଲ ଥାଏ କିନ୍ତୁ ତାହା ବନ୍ଦ ହୋଇଥିଲା । ସୁତରାଂ ସେ ରାତିଟି ଉପବାସରେ ମୁଁ ନାଟ ଦେଖିବାକୁ ଗଲି । କିନ୍ତୁ ମୁଁ ଯେ ଏହି ଦୃଶ୍ୟରେ ଅଭିନୟ କରିଛି ସେ ସମ୍ବନ୍ଧେ ଆଉ ପଦେ ହେଲେ ସେ କହିନାହାନ୍ତି । ମୋ ଆଡ଼ୁ ମଧ୍ୟ କିଛି କହିବା ପାଇଁ ନଥିଲା ।

ଏହା ହେଉଛି ଆମ୍ଭ ଦୁହିଙ୍କ ମଧ୍ୟରେ ଶେଷ ମତଭେଦ । ତାହା କିନ୍ତୁ ଆମ୍ଭ ପୂର୍ବର ସମ୍ବନ୍ଧରେ ଆଦୌ ବାଧା ଦେଇ ନଥିଲା । ମୋପ୍ରତି ତାଙ୍କର ଯେ ସ୍ନେହ ଓ ପ୍ରେମ ତାହାର ପ୍ରେରଣାରେ ସେ ମୋ'ପାଇଁ ବ୍ୟସ୍ତ ହେଉଥାନ୍ତି ବୋଲି ମୁଁ ସମ୍ପୂର୍ଣ୍ଣ ବୁଝି ପାରିଥିଲି ଏବଂ ଭାବନା ଓ କାର୍ଯ୍ୟରେ ମତଭେଦ ହେଲେହେଁ ତାଙ୍କପ୍ରତି ମୋର ଭକ୍ତି ବଢିବାକୁ ଲାଗିଲା । କିନ୍ତୁ ମୁଁ ସ୍ଥିର କଲି ଯେ ତାଙ୍କୁ ଏଥର ଶାନ୍ତିରେ ରଖିବି ଓ ଏଣିକି କିଛି ଅଭଦ୍ର ବ୍ୟବହାର ନକରିବା ସକାଶେ ତାଙ୍କ ଆଗରେ ପ୍ରତିଶ୍ରୁତ ହେବି । ସୁତରାଂ

ଜଣେ ଇଂରେଜ ଭଦ୍ରଲୋକ ହେବା ପାଇଁ ଯେଉଁ ସବୁ ଅସାଧ ସାଧନ ଆବଶ୍ୟକ, ତାହା କରିବା ପାଇଁ ବସିଲି ।

ବୋମ୍ବେଇ ଫେସନରେ ଯେଉଁ ସବୁ ପୋଷାକ ମୁଁ ପିନ୍ଧିଥିଲି ସେସବୁ ଇଂରେଜ ସମାଜ ପାଇଁ ଅନୁପଯୁକ୍ତ ବିବେଚନା କରି ନୂତନ ପୋଷାକ ପିନ୍ଧିଲି । ତଣେଣି ସିଲଙ୍ଗ୍ ଦେଇ ଗୋଟିଏ ସାହେବ ଟୋପି ମଧ କିଣିଲି । ସେ ସମୟରେ ଏହି ଦାମଟା ଅତି କଠିନ ! ଏତିକିରେ ସନ୍ତୁଷ୍ଟ ନହୋଇ ଲଣ୍ଡନ ପ୍ରଚଳିତ ଫେସନର କେନ୍ଦ୍ର ସ୍ଥଳ ବଣ୍ଡ ସାହି Bond Street ରୁ ଗୋଟିଏ ସନ୍ଧ୍ୟା ପୋଷାକ କିଣି ସେଥିରେ ଦଶ ପଉଣ୍ଡ ବୃଥା କଲି, ଏବଂ ହାତ ଘଡ଼ି ସକାଶେ ଦୁଇ ଗୁଣିଆ ସୁନା ସିକୁଳି ପଠାଇବା ପାଇଁ ମୋ'ର ଉଦାର ହୃଦୟ ଭାଇଙ୍କୁ ବାଧ କଲି । ପୂର୍ବରୁ ବନ୍ଧା ହୋଇଥିବା ବେକ ଦଉଡ଼ି ବେକରେ ଖଞ୍ଜିବା ଉଚିତ ନୁହେ ଭାବି, ମୁଁ ନିଜେ ବାନ୍ଧିବାକୁ ବସିଲି । ଭାରତରେ ଥିଲାବେଳେ ଘରର ଭଣ୍ଡାରି ଆସି ଯେତେବେଳେ କ୍ଷୌର କରେ, ଦର୍ପଣ ଦେଖିବା ସେତେ-ବେଳେ ଏକ ବିଳାସିତା ବୋଲି ବିବେଚିତ ହେଉଥିଲା । କିନ୍ତୁ ଏଠାରେ ଏକ ଦର୍ପଣରେ ମୁହଁ ଦେଖିବାରେ, ବେକ ଦଉଡ଼ି ବାନ୍ଧିବାରେ ଓ ମୁଣ୍ଡ କୁଣ୍ଡେଇବାରେ ପ୍ରତିଦିନ ମୁଁ ଦଶ ମିନିଟ ଲେଖା ବୃଥାରେ କଟାଇ ଥାଏ । ମୋ'ର କେଶ ବଡ଼ 'ଝାଁଟା', ସାଉଁଳି ଯଥା ସ୍ଥାନରେ ରଖିବା ସକାଶେ ପ୍ରତିଦିନ ଧନ୍ଦା ହେବାକୁ ପଡ଼େ । ପ୍ରତିଥର ମୁଣ୍ଡରେ ଟୋପି ଲଗାଇବା ପୂର୍ବରୁ ମୁଣ୍ଡରୁ ବାହାର କରିବା କ୍ଷଣି ହାତଟା ହଠାତ୍ ମୁଣ୍ଡ ସଜାଡ଼ିବା ସକାଶେ ଯାଇଥାଏ । ଏହାଛଡ଼ା ଭଦ୍ର ସମାଜରେ ବସିଥିଲା ବେଳେ ପ୍ରତି ମୁହୂର୍ତ୍ତରେ ଯେ ହାତଟା ମୁଣ୍ଡକୁ ଯାଏ ସେହି କ୍ଷିପ୍ତିତ ଅଭ୍ୟାସ ସମ୍ବନ୍ଧେ ବେଶି କିଛି କହିବାର ନୁହେ ।

ଏସବୁ ସାଜସଜ୍ଜା ଯଥେଷ୍ଟ ନୁହେ ବିବେଚନା କରି ଜଣେ ଇଂରେଜ ଭଦ୍ରଲୋକ ସକାଶେ ଆଉ ଯାହାସବୁ ଦରକାର ବୋଲି ଲୋକଙ୍କର ଧାରଣା, ସେଥିଆଡ଼େ ମୁଁ ଦୃଷ୍ଟିଦେଲି । ମୁଁ ଶୁଣିଲି ଯେ ଫରାସୀ ଭାଷା, ବାକ୍‌ପଟୁତା ଓ ନାଚ ଏହି ତିନି ବିଷୟ ଶିକ୍ଷା କରିବା ନିତାନ୍ତ ଦରକାର । ଫରାସୀ ଭାଷା ଯେ ସନ୍ନିକଟ ଫରାସୀ ଦେଶର ମାତୃଭାଷା ରୂପେ କେବଳ ପ୍ରଚଳିତ ହୋଇଥିଲା, ତାହା ନୁହେ ସମଗ୍ର ପାଶ୍ଚାତ୍ୟ ମହାଦେଶରେ ତାହା ବ୍ୟବହୃତ ହେଉଥିଲା । ଉକ୍ତ ମହାଦେଶ ପରିଭ୍ରମଣ କରିବାରେ ମୋ'ର ବାସନା ମଧ୍ୟ ଥାଏ । କୌଣସି ଏକ ଶ୍ରେଣିରେ ନାମ ଲେଖାଇ ନାଚ ଶିଖିବା ପାଇଁ ତିନି ପାଉଣ୍ଡ ଦେଲି । ତିନି ସପ୍ତାହ ମଧ୍ୟରେ ବୋଧହୁଏ ମୁଁ ଛଅଟି ବିଷୟ ନେଇ ଶିକ୍ଷା ପାଇଥିବି । ତାଳ ଲୟ ରକ୍ଷି ନାଚିବା ମୋ'ପକ୍ଷେ ଅସମ୍ଭବ ହେଲା । କ'ଣ କରିବାକୁ ହେବ । କଥାରେ ଅଛି, ଜଣେ ନିଭୃତ ବାସୀ ମୂଷା ଉପଦ୍ରବରୁ ରକ୍ଷା ପାଇବା ପାଇଁ ବିରାଡ଼ି ଟିଏ ରଖିଲା, ବିରାଡ଼ିକୁ କ୍ଷୀର ଦେବାପାଇଁ ଗାଈଟିଏ ପୋଷିଲା, ଓ ଗାଈଟିକୁ ଦେଖିବା ପାଇଁ ମାହାର ଗୋଟିଏ ରଖିଲା ଇତ୍ୟାଦି ଇତ୍ୟାଦି । ମୋର ଆକାଂକ୍ଷା ମଧ୍ୟ ନିଭୃତବାସୀର ପରିବାର ପରି ବଢ଼ିବାକୁ ଲାଗିଲା । ପାଶ୍ଚାତ୍ୟ ସଙ୍ଗୀତର ମର୍ଯ୍ୟାଦା ବୁଝିବା ସକାଶେ ବେହେଲା ବଜାଇବା ଶିଖିବା ଉଚିତ ମନେ କଲି । ସୁତରାଂ ଗୋଟିଏ ବେହେଲା ପାଇଁ ତିନି ପାଉଣ୍ଡ ବ୍ୟୟ କରିବା ବାହାରେ ଜଣେ ଶିକ୍ଷୟିତ୍ରୀଙ୍କୁ ଆଉ କିଛି ପାରିଶ୍ରମିକ ଦେବାକୁ ହୋଇଥିଲା । ବାକ୍‌ପଟୁତା ସମ୍ବନ୍ଧେ ଶିକ୍ଷା ଦେବାଲାଗି ଆଉ ଜଣଙ୍କୁ ମଧ୍ୟ ନିଯୁକ୍ତ କଲି ଓ ପ୍ରଥମତଃ ତାଙ୍କୁ ପାରିଶ୍ରମିକ ଏକ 'ଗିନି' ମାତ୍ର ଦେଲି । Bell's Standard Elocutionalist ନାମକ ପୁସ୍ତକ ଖଣ୍ଡି ପ୍ରଥମେ ପଢ଼ିବାକୁ ହେବ ବୋଲି ସେ ସୁପାରିସ କଲେ । ସୁତରାଂ ତାହା

କିଣିଲି ଏବଂ ପିଟ୍ ( Pit ) ଙ୍କ ଗୋଟିଏ ବକ୍ତୃତା ନେଟ୍ ଶିଖିବା ଆରମ୍ଭ କଲି । କିନ୍ତୁ Bell ଙ୍କ ପୁସ୍ତକ ମୋ କାନରେ ଚେତନାର ଘଣ୍ଟି ବଜାଇ ଦେଲା, ମୁଁ ଉଠିଲି । ମୁଁ ସାରା ଜୀବନ ଇଂଲଣ୍ଡରେ ରହିବାକୁ ହେବନାହିଁ ବୋଲି ଭାବିବାକୁ ଲାଗିଲି । ତେବେ ବାଗ୍ମିତା ଶିଖି ଲାଭ ବା କ'ଣ ? ନାଚ ଶିଖିବା ଦ୍ୱାରା ମୁଁ ବା କିପରି ଜଣେ ଭଦ୍ରଲୋକ ହୋଇ ପାରିବି ? ବେହେଲା ବଜାଇବାତ ଭାରତରେ ମଧ ଶିଖି ହେବ । ମୁଁ ଜଣେ ଛାତ୍ର ମୋ'ର ପଢ଼ାରେ ଲିପ୍ତ ରହିବା ଉଚିତ । ମୋର ଚରିତ୍ର ଯଦି ମୋତେ ଭଦ୍ର ସମାଜ ଗଣ୍ୟ କରି ପାରିଲା, ତାହାହେଲେ ଭଲ, ନଚେତ୍ ମୋ'ର ଉଚ୍ଚାଭିଳାଷ ବରଂ ପରିତ୍ୟାଗ କରିବା ଉଚିତ ବୋଲି ମନେ କଲି ।

ଏହାଛଡ଼ା ଆହୁରି ଏହିପରି ଅନେକ ଭାବ ମନରେ ଖେଳିଲା ଏବଂ ସେସବୁ ଗୋଟିଏ ପତ୍ରରେ ଲେଖି ପୁଣି ବାକ୍‌ପଟୁତା ଶିକ୍ଷକଙ୍କ ପାଖକୁ ପଠାଇଲି ଓ ଆଉ ତାଙ୍କଠାରୁ ଶିକ୍ଷା ଗ୍ରହଣ କରିବା ସକାଶେ ଅସମର୍ଥ ହେବାରୁ ତାଙ୍କର କ୍ଷମା ପ୍ରାର୍ଥନା କରିଥିଲି । ମୋଟ ଉପରେ ଦୁଇ କିମ୍ବା ତିନିଗୋଟି ବିଷୟ କେବଳ ଶିଖିଥିଲି । ନାଚ ଶିକ୍ଷକଙ୍କ ପାଖକୁ ମଧ ସେହିପରି ଖଣ୍ଡିଏ ପତ୍ର ଲେଖିଲି ଓ ବେହେଲା ଶିକ୍ଷୟିତ୍ରୀଙ୍କ ପାଖକୁ ଯାଇ କହିଲି ଯେ ସେ ଯେପରି ବେହେଲା ଖଣ୍ଡି ଯେ କୌଣସି ମୂଲ୍ୟରେ ବିକ୍ରୟ କରିଦିଅନ୍ତୁ । ସେ ମୋ ପ୍ରତି ମିତ୍ରତା ଆଚରଣ କରୁଥାନ୍ତି, ସୁତରାଂ ମୁଁ ଯେ କିପରି ବୃଥା ଆଦର୍ଶର ଅନୁସରଣ କରୁଥିଲି, ତାହା ତାଙ୍କୁ ବୁଝାଇ କହିବାରୁ ମୋ'ର ଏ ସମ୍ପୂର୍ଣ୍ଣ ପରିବର୍ତ୍ତନରେ ସେ ବାଧା ଦେବା ଦୂରେଥାଉ ବରଂ ମୋତେ ପ୍ରୋତ୍ସାହ ଦେଇଥିଲେ ।

ଏହି ନିର୍ବୋଧତା ତିନି ମାସ ପର୍ଯ୍ୟନ୍ତ ରହିଥିବ, କିନ୍ତୁ ପୋଷାକ ପାଇଁ ଯେ ବାତୁଳତା ତାହା ବର୍ଷ ସଂଖ୍ୟା ରହିଥିଲା । ସେ ଯାହା ହେଉ ମୁଁ ସେହି ଦିନଠାରୁ ଜଣେ ଛାତ୍ରର ଯାହା କର୍ତ୍ତବ୍ୟ ତାହା କରିବା ଆରମ୍ଭ କଲି ।



## ଷୋଡ଼ଶ ପରିଚ୍ଛେଦ ।

( ପରିବର୍ତ୍ତନ )

—※ଃ + ଃ※—

କେହି ଭାବନ୍ତୁ ନାହିଁ ଯେ ନାଚ ପ୍ରଭୃତି ବିଷୟ ଶିଖିବା ଲାଗି ମୁଁ ଯେଉଁ ସମୟ କଟାଇଅଛି ତାହା ମୋ' ଜୀବନରେ ଏକପ୍ରକାର ଆମୋଦ ପ୍ରମୋଦର ଦାଗ ଦେଇଅଛି । ମୁଁ ସେତେବେଳେ ନିର୍ବୋଧ ଥିଲେହେଁ ନିଜକୁ ଭୁଲି ଯାଇ ନଥିଲି । ଖବର କାଗଜ, ଡାକଟିକଟ ଓ ଗାଡ଼ିଭଡ଼ା ବାବତରେ ମୁଁ ଯେଉଁ ସବୁ ସାମାନ୍ୟ ଖରଚ କରେ ସେସବୁର ହିସାବ ମଧ୍ୟ ରଖିଥାଏ—ଓ ପ୍ରତିଦିନ ଶୋଇବା ପୂର୍ବରୁ ଦୈନିକ ବ୍ୟୟ ସବୁ ତାଲି-କାରେ ଲେଖି ବଳକା ଧନ ଦେଖାଇ ଦେଉଥାଏ । ସେହି ଦିନଠାରୁ ମୋ'ର ହିସାବ ରଖିବାରେ ଏପରି ଅଭ୍ୟାସ ରହିଯାଇଛି ଯେ, ମୁଁ ଲକ୍ଷ ଲକ୍ଷ ଟଙ୍କାର ସାଧାରଣ ଫଣ୍ଡ ସବୁ ବ୍ୟୟ ସଙ୍କୋଚ କରି ଚଳାଇ ପାରୁଛି । ଓ ମୁଁ ଯେତେ ଆନ୍ଦୋଳନର ଅଗ୍ରଗାମୀ ହୋଇଛି ସେସବୁରେ ଋଣଗ୍ରସ୍ତ ହେବା ତେଣେ ଥାଉ, ଅନେକାଂଶରେ ଅତିରିକ୍ତ ବଳକା ଧନ ମଧ୍ୟ ରଖି ପାରିଛି । ପ୍ରତ୍ୟେକ ଯୁବକ ମୋ'ର ବହିରୁ ପୃଷ୍ଠାଏ ଲେଖା ନେଇ ନିଜ ନିଜ ଆୟ ବ୍ୟୟର ହିସାବ ଲେଖିବା ପାଇଁ ଯଦି କୃତ ସଂକଳ୍ପ ହୁଅନ୍ତି, ମୋ'ର ବିଶ୍ୱାସ ସେମାନେ ମଧ୍ୟ ପରିଶେଷରେ ମୋପରି ନିଶ୍ଚୟ ଲାଭବାନ ହେବେ ।

ସାଧାରଣ ଭାବରେ ଚଳିବାପାଇଁ ମୁଁ ଯେତେବେଳେ ସଂକଳ୍ପ କଲି, ବୁଝିଲି ଆୟ ଦେଖି ବ୍ୟୟ କରିବାକୁ ହେବ । ସୁତରାଂ ମୋର ବ୍ୟୟରୁ ଅଧେ କମାଇ ଦେବା ପାଇଁ ନିଷ୍ପତ୍ତି କଲି । ଗାଡ଼ିଭଡ଼ା ବାବଦରେ ମୋ'ର ବେଶି ଖରଚ ହେଉଥାଏ । ବିଶେଷ କଥା, ଗୋଟିଏ ପରିବାର ମଧ୍ୟରେ ଥିବା ଯୋଗୁଁ ପ୍ରତି ସପ୍ତାହରେ ବାହାର ଖରଚ କିଛି କରିବାକୁ ପଡ଼େ । ସମୟ ସମୟରେ ପରିବାରର ଲୋକଙ୍କୁ ନେଇ ପଦାରେ ଖୁଆଇବା ଓ ସେମାନଙ୍କ ସଙ୍ଗରେ ଯାଇ ଅନ୍ୟ କୌଣସି ଭୋଜନରେ ଯୋଗ ଦେବା ସଭ୍ୟତାର କଥା । ସେମାନଙ୍କୁ ନେବା ଅଣିବାରେ ଅନେକ ପଇସା ଖରଚ କରିବାକୁ ହୁଏ ଓ ଯଦି କେହି ମହିଳା ବନ୍ଧୁ ସାଙ୍ଗରେ ଥାଆନ୍ତି ତାହାହେଲେ ତାହାଙ୍କର ସବୁ ବ୍ୟୟଭାର ନିଜେ ବହିବାକୁ ହୁଏ । ପଦାରେ ଭୋଜନ କଲେ ବଳକା ଖରଚହେବା କଥା—କାରଣ ଭୋଜନ କରି ନଥିଲେ ମଧ୍ୟ ସାପ୍ତାହିକ ବ୍ୟୟରୁ କିଛି କଟା ଯାଏ ନାହିଁ । ମୁଁ ଭାବିଲି ଏସବୁ ବାବଦର ବ୍ୟୟ ବନ୍ଦ କରି ହୋଇଯିବ ଓ ଏହା ଯେ ଭଦ୍ରତାର ପରିମାପକ ବୋଲି ମିଥ୍ୟା ଧାରଣା ରଖି ବୃଥା ଖର୍ଚ୍ଚାନ୍ତରେ ପଡ଼ୁଛି, ସେଥିରୁ ରକ୍ଷା ପାଇବି ।

ସୁତରାଂ ପରିବାର ମଧ୍ୟରେ ଆଉ ନରହି ମୁଁ ନିଜେ ଘରଭଡ଼ା ରଖି ମୋ'ର ସୁବିଧା ଅନୁସାରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା-ପାଇଁ ଯେପରି ହୁଏ ତାହାର ବ୍ୟବସ୍ଥା କରିବା ପାଇଁ ନିଷ୍ପତ୍ତି କଲି । ଏହା ଫଳରେ ମୋ'ର ଅନେକ କଥା ଶିଖିବା ସୁବିଧା ମଧ୍ୟ ହେଲା । ଏପରି ସ୍ଥାନରେ ଘରଭଡ଼ା ରଖିଲି ଯେପରି ମୋର କାର୍ଯ୍ୟ କ୍ଷେତ୍ରକୁ ଅର୍ଦ୍ଧ ଘଣ୍ଟା ମଧ୍ୟରେ ଚାଲି ଯାଇପାରିବି ଓ ତଦ୍ଵାରା ଗାଡ଼ିଭଡ଼ା ଲାଗିବ ନାହିଁ । ଏଥିପୂର୍ବେ ମୁଁ ଯେତେବେଳେ କୌଣସିଠାକୁ ଯାଏ ଗାଡ଼ିରେ

ଯାଉଥାଏ ଓ ଚାଲିବା ସକାଶେ ଭଲ ସମୟର ଯୋଗାଡ଼ କରିବାକୁ ହୁଏ । ନୂତନ ବ୍ୟବସ୍ଥା ଅନୁସାରେ ବ୍ୟୟ ସଂକୋଚ ଓ ଭ୍ରମଣ ଦୁଇ କଥା ଯାକ ଏକ ସମୟରେ ହୋଇପାରନ୍ତି । ଗାଡ଼ି ଭଡ଼ାରୁ ରକ୍ଷା ପାଇଲି ଓ ପ୍ରତି-ଦିନ ଆଠ ଦଶ ମାଇଲ ଚାଲିବା ସୁବିଧା ମଧ୍ୟ ହେଲା । ଏହିପରି ବହୁଦୂର ଚାଲିବା ଅଭ୍ୟାସ ଫଳରେ ମୋ'ର ସାରା ବିଲାତ ଜୀବନ ରୋଗ ଶୂନ୍ୟ ହୋଇଥିଲା ଓ ମୁଁ ଭାରି ମଜବୁତ୍ ହୋଇଥିଲି ।

ବସା ଉଠା କରିବା ପାଇଁ ଗୋଟିଏ ଓ ଶୋଇବା ପାଇଁ ଆଉ ଗୋଟିଏ ଏହିପରି ଦୁଇଟି ବଖରା ଭଡ଼ା ରଖିଲି । ଏହା ବିଲାତ ଜୀବନର ଦ୍ୱିତୀୟ ଅବସ୍ଥା, ତୃତୀୟ ଅବସ୍ଥା ଭବିଷ୍ୟତର କଥା ।

ଏସବୁ 'ପରିବର୍ତ୍ତନ' ଲାଗି ମୋ'ର ଅଧେ ବ୍ୟୟ କମିଗଲା । କିନ୍ତୁ ସମୟର ସଦ୍‌ବ୍ୟବହାର କିପରି କରିବାକୁ ହେବ ? ମୁଁ ଜାଣିଥିଲି ଯେ ଆଇନ ପରୀକ୍ଷା ଲାଗି ବେଶି ପରିଶ୍ରମ ଦରକାର ହୁଏ ନାହିଁ—ସୁତରାଂ ସମୟ ବିତି ଯାଉଛି ବୋଲି ମୁଁ ବେଶି ବ୍ୟସ୍ତ ହେଉ ନଥାଏ । ଇଂରେଜିରେ ମୁଁ ବଡ଼ ଦୁର୍ବଳ ଥିବା ଯୋଗୁଁ ସବୁବେଳେ ବ୍ୟସ୍ତ ହେବାକୁ ପଡ଼େ । ମିଃ ( ପରେ ସ୍‌ର୍ ) ଫ୍ରେଡ଼ରିକ୍ ଲେଲିଙ୍କ ଉପଦେଶ, 'ପ୍ରଥମେ କିଛି ଉପାଧି ନିଅ, ପରେ ମୋ ପାଖକୁ ଆସିବ'-ମୋର ଭୁଲିବାର ନୁହେ । ମୁଁ ଯେ କେବଳ ଆଇନ ଶିକ୍ଷା କରିବି ତାହା ନୁହେ, ସେଥି ସଙ୍ଗେ ସଙ୍ଗେ କିଛି ସାହିତ୍ୟିକ ଉପାଧି ମଧ୍ୟ ନେବା ଉଚିତ ବୋଲି ମନେ କଲି । କେମ୍ବ୍ରିଜ ଓ ଆକସଫୋର୍ଡ ବିଶ୍ୱ ବିଦ୍ୟାଳୟର ପାଠ୍ୟ ଓ ଅନ୍ୟାନ୍ୟ ବିଷୟ ନେଇ ମୋର କେତେ ଜଣ ବନ୍ଧୁଙ୍କଠାରୁ ବୁଝିଲି । ସେମାନେ ଏହି ଦୁଇ ସ୍ଥାନରୁ ଯେ କୌଣସି ଗୋଟିଏ ସ୍ଥାନକୁ ଗଲେ ମଧ୍ୟ ବେଶି ବ୍ୟୟ ହେବ କହିଲେ ଓ ମୁଁ ଯେତେଦିନ ବିଲାତରେ ରହିବା ପାଇଁ ଠିକଣା କରିଅଛି ତାହା

ଅପେକ୍ଷା ବେଶିଦିନ ରହିବାକୁ ହେବ । ଜଣେ ବନ୍ଧୁ କହିଲେ, ମୋର ଯଦି କୌଣସି ଏକ କଠିନ ପରୀକ୍ଷା ପାଶ କରିବାରେ ବାସନା ଥାଏ ତାହାହେଲେ ଲଣ୍ଡନ ମାଟ୍ରିକ୍ୟୁଲେସନ ପରୀକ୍ଷା ପାସ କରିବା ଉଚିତ । ସେଥିଲାଗି କଠିନ ପରିଶ୍ରମ କରିବା ପାଇଁ ହେଲେହେଁ ସାଧାରଣ ଭାବେ ଜ୍ଞାନର କ୍ରମୋନ୍ନତି ହେବ ଓ ବେଶି କିଛି ଅଧିକା ଖରଚ କରିବାକୁ ମଧ୍ୟ ପଡ଼ିବ ନାହିଁ । ପ୍ରସ୍ତାବଟି ମୁଁ ସାଦରେ ଗ୍ରହଣ କଲି । କିନ୍ତୁ ପାଠ୍ୟ ବିଷୟ ଦେଖି ବଡ଼ ଭୟ ଲାଗିଲା । ଲାଟିନ ଓ ଆଧୁନିକ ଭାଷା ମଧ୍ୟରୁ ଗୋଟିଏ ବିଷୟ ବାଧ୍ୟରେ ପଢ଼ିବା କଥା—ଲାଟିନ୍ ବା ମୋତେ କିପରି ଆସିବ ? କିନ୍ତୁ ମୋର ବନ୍ଧୁ ସେହିଭାଷା ସପକ୍ଷରେ ତର୍କ କରିବାକୁ ଯାଇ କହିଲେ, "ଓକିଲ ମାନଙ୍କର ଲାଟିନ୍ ଭାଷାରେ ପ୍ରବେଶ ଥିଲେ ଆଇନ ବହି ସବୁ ସୁନ୍ଦର ବୁଝିହେବ ଓ ରୋମର ଆଇନ ସମ୍ବନ୍ଧେ ଯେଉଁ ପ୍ରଶ୍ନ କାଗଜରେ ଉତ୍ତର କରିବାକୁ ହୁଏ, ତାହା ସମ୍ପୂର୍ଣ୍ଣ ଲାଟିନ ଭାଷାରେ । ବିଶେଷ କଥା, ଲାଟିନ୍ ଭାଷାରେ ପ୍ରବେଶ ଲାଭ କଲେ ଇଂରେଜ ଭାଷାରେ ଉତ୍ତରୋତ୍ତର ଜ୍ଞାନ ଲାଭ କରିହେବ" । ବସାକୁ ଯାଇ ନିଶ୍ଚୟ କଲି ଯେ କେତେ କଷ୍ଟହେଲେ ମଧ୍ୟ ଲାଟିନ୍ ଭାଷା ଶିକ୍ଷା କରିବି । ଫରାସୀ ଭାଷା ଶିକ୍ଷା ଆରମ୍ଭ କରିସାରି ଥିଲି, ସୁତରାଂ ତାହା ଆଧୁନିକ ଭାଷା ( Modern Language ) ସ୍ୱରୂପ ପଢ଼ିବା ଉଚିତ ମନେ କଲି । ଗୋଟିଏ ବେସରକାରୀ ସ୍କୁଲର ମାଟ୍ରିକ୍ୟୁଲେସନ ଶ୍ରେଣୀରେ ଭର୍ତ୍ତି ହେଲି । ପ୍ରତି ଛଅ ମାସରେ ଥରେ ସେହି ପରୀକ୍ଷା ଦେବାକୁ ହେଉଥାଏ, ସୁତରାଂ କେବଳ ପାଞ୍ଚ ମାସ ମଧ୍ୟରେ ମୁଁ ପଢ଼ା ପଢି କରିବା କଥା । ମୋ ପକ୍ଷେ ତାହା ଏକ ଅସମ୍ଭବ କାର୍ଯ୍ୟ । କିନ୍ତୁ ଇଂରେଜ ଭଦ୍ରଲୋକ ହେବା ପାଇଁ ଯେ କି ଆଶା କରିଥିଲି ସେତ ପୁଣି ଜଣେ କର୍ତ୍ତବ୍ୟନିଷ୍ଠ ଛାତ୍ର ହେବା ପାଇଁ ସ୍ଥିର କରିଛି ।

ମିନଟକ ପାଇଁ ସ୍ୱଳ୍ପ ଅବସର ନରଖି ମୁଁ ନକଲେ ଗୋଟିଏ କାର୍ଯ୍ୟ ନିର୍ଘଣ୍ଟ ଲେଖିଲି । କିନ୍ତୁ ଅନ୍ୟାନ୍ୟ ବିଷୟ ମଧ୍ୟରେ ଲାଟିନ ଓ ଫରାସୀ ଭାଷା ନିର୍ଦ୍ଦିଷ୍ଟ ସମୟରେ ଶିକ୍ଷା କରି ପାରିଲି ନାହିଁ । ମୋର ମେଧା କିମ୍ବା ସ୍ମରଣ ଶକ୍ତି କିଛି ସାହାଯ୍ୟକାରୀ ହୋଇ ନଥିଲା । ଫଳରେ ମୁଁ ଲାଟିନ ଭାଷାରେ ଅକୃତକାର୍ଯ୍ୟ ହେଲି, ବଡ଼ ଅନୁତପ୍ତ ହେଲି ସତ, କିନ୍ତୁ ଆତ୍ମହରା ହୋଇ ନଥିଲି । ଲାଟିନ୍ ପ୍ରତି ମୋର ପ୍ରୀତି ଜାତ ହେଲା ଏବଂ ମୁଁ ଭାବିଲି ଯେ ଫରାସୀ ଭାଷାରେ ପ୍ରବେଶ ଥିବା ଯୋଗୁଁ ଆଉଥରେ ବିଜ୍ଞାନ ସମ୍ବନ୍ଧେ କୌଣସି ଏକ ବିଷୟ ପଢି ଉଭୟ ବିଷୟ ପରୀକ୍ଷା ଦେଲେ ଭଲ ହେବ । ରସାୟନ ଶାସ୍ତ୍ର ( Chemistry ) ମୁଁ ପଢିଥିଲି, କିନ୍ତୁ ବିଶ୍ଳେଷଣ ଯନ୍ତ୍ରର ଅଭାବ ହେତୁ ମୋର ସେଥିପ୍ରତି ଆଦର ଜନ୍ମି ନଥିଲା । ନଚେତ ତାହା ଗୋଟିଏ ଆଦରଣୀୟ ବିଷୟ । ଭାରତରେ ଥିଲାବେଳେ ତାହା ବାଧ୍ୟରେ ପଢିବାକୁ ହୋଇଥିଲା । ସେହେତୁ ମୁଁ ଲଣ୍ଡନ ମାଟ୍ରିକ୍ୟୁଲେସନ ପରୀକ୍ଷା ସକାଶେ ସେହି ବିଷୟଟି ବାଛି ନେଇଥିଲି । ଏଥର କିନ୍ତୁ ରସାୟନ ଶାସ୍ତ୍ର ପରିବର୍ତ୍ତେ ଉତ୍ତାପ ଓ ଆଲୋକ ( Heat and Light ) ବିଷୟ ନେଇ ପରୀକ୍ଷା ଦେବା ସ୍ଥିର କଲି । ମୋର ଧାରଣା ଥିଲା ଯେ, ତାହା ସହଜରେ ବୁଝି ହେବ ଓ ପରିଶେଷରେ ତାହା ବାସ୍ତବିକ ସହଜ ବୋଧ ହେଲା ।

ପରୀକ୍ଷା ସକାଶେ ଅନ୍ୟ ଏକ ଚେଷ୍ଟାର ଯୋଗାଡ଼ ସଙ୍ଗେ ସଙ୍ଗେ ମୋର ଚଳଣିତଙ୍କ ସାଧାରଣରୁ ସାଧାରଣତର ଅବସ୍ଥାକୁ ଆଣିବା ପାଇଁ ବସିଲି । ମୁଁ ଭାବିଲି, ଆମ୍ଭ ପରିବାରରେ ସମସ୍ତେ ଯେପରି ସାଧାରଣ ଭାବରେ ଚଳୁଅଛନ୍ତି, ମୋର ଅବସ୍ଥା ଆହୁରି ସେହିପରି ହୋଇପାରୁ ନାହିଁ । ମୁଁ ଯେତେବେଳେ ଯାହା ମାଗେ ସେସବୁ ଯୋଗାଇବା ପାଇଁ ମୋର ଭାଇ ଯେ କେତେ କଷ୍ଟ ଅନୁଭବ କରୁଥାନ୍ତି ତାହା ଭାବନା କରି ମୁଁ

ମର୍ଯ୍ୟାଦିତ ହୋଇଥାଏ । ମୁଁ ଦେଖିଲି ଯେଉଁମାନେ ୮ କିମ୍ବା ୧୦ ପାଉଣ୍ଡ ଭିତରେ ଚଳନ୍ତି ସେମାନେ ବୃତ୍ତି ପାଇବା ସୁବିଧା ପାଇଥାନ୍ତି, ମୋ ଅପେକ୍ଷା ସରଳ ଭାବରେ ଚଳିବା ବ୍ୟକ୍ତି ମୁଁ ଅନେକ ଦେଖିପାରି ଥିଲି । ସେମାନଙ୍କ ମଧ୍ୟରୁ ଜଣେ ସପ୍ତାହକୁ ଦୁଇ ସିଲିଙ୍ଗ ଭଡ଼ା ଦେଇ ଗୋଟିଏ କୋଠରୀ ରଖିଥିଲେ, ଓ ଥରକ ପାଇଁ ଦୁଇ ପେନସ୍ ଖରଚ କରି କୋକୋ ଓ ରୁଟି କେବଳ ଖାଉଥିଲେ । କିନ୍ତୁ ସେ ଯେପରି ରହୁଥିଲେ ସେହିପରି ରହି ଚଳିବା ମୋପକ୍ଷେ ବହୁ ଦୂରର କଥା । ମୁଁ ମନେ କଲି ଯେ, ଦୁଇଟି କୋଠରୀ ନରଖି ଗୋଟିଏ ମାତ୍ର କୋଠରୀ ରଖି ଚଳିପାରିବି ଓ ନିଜେ କିଛି ଖାଦ୍ୟ ଜିନିସ ରାନ୍ଧିବି । ତଦ୍ୱାରା ୪ କିମ୍ବା ୫ ପାଉଣ୍ଡ ମାସିକ ଖରଚ କମିବ । ସାଧାରଣ ଜୀବନ ଯାପନ ବିଷୟ ସମ୍ବନ୍ଧେ ଅନେକ ପୁସ୍ତକ ମଧ୍ୟ ପଢିଲି । ଦୁଇଟି କୋଠରୀ ଭଡ଼ା ନ ରଖି ଗୋଟିଏ କୋଠରୀ ମାତ୍ର ରଖିଲି ଓ ଖାଦ୍ୟ ସାମଗ୍ରୀ କିଛି ସଂଚୟ କରି ସକାଳ ଖିଆ ପାଇଁ ରନ୍ଧା ଆରମ୍ଭ କଲି । ଯବଚୂନାରେ ପିଠା କରିବା ଓ କୋକୋ କରିବା ସକାଶେ ପାଣି ତତାଇବା ଛଡ଼ା ଆଉ ବିଶେଷ କିଛି ରନ୍ଧା କାର୍ଯ୍ୟ କରୁନଥାଏ । ସୁତରାଂ ସବୁ କଥା କରିବା ପାଇଁ କୋଡ଼ିଏ ମିନିଟ ମଧ୍ୟ ଲାଗେନାହିଁ । ଭୋଜନ ପାଇଁ ରୁଟି ଶେଷ ଓ କୋକୋ ଘରେ ତିଆରି କରିଥାଏ କିନ୍ତୁ ଜଳଖିଆ ବାହାରେ କରେ । ଦୈନିକ ଏକ ସିଲିଙ୍ଗ ଓ ତିନି ପେନସ୍ ଖରଚ କରି ଚଳିବା ପାଇଁ ଏହିପରି ବ୍ୟବସ୍ଥା କଲି । ଏହି ସମୟଟା ମଧ୍ୟ ମୋର ପ୍ରଗାଢ଼ ପରିଶ୍ରମର ସମୟ । ସାଧାରଣ ଭାବେ ଜୀବନ ଯାପନ କରିବା ଯୋଗୁଁ ମୋତେ ଅନେକ ସମୟ ମିଳିଲା ଓ ମୁଁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିଲି ।

ପାଠକେ ଭାବିବେ ନାହିଁ ଯେ ଏହିପରି ଚଳିବା ଯୋଗୁଁ ମୋର ଜୀବନ ବିଷାଦମୟ ହୋଇଥିଲା । ଅଧିକନ୍ତୁରେ ଏହି ପରିବର୍ତ୍ତନ ମୋର

ଆନ୍ତରିକ ଓ ବାହ୍ୟିକ ଜୀବନ ସମ୍ମିଳନର ନିଯାମକ । ତାହା ମଧ୍ୟ ଆମ୍ଭ ପରିବାର ଜୀବନର ଆଦର୍ଶ । ବାସ୍ତବିକ ମୋର ଜୀବନ ସତ୍ୟପ୍ରଣୋଦିତ ଥିଲା—ସୁତରାଂ ମୋର ଆତ୍ମାର ଆନନ୍ଦ ଅସୀମ ।



# ସପ୍ତଦଶ ପରିଚ୍ଛେଦ ।

( ଖାଦ୍ୟ ଜନିତ ପରୀକ୍ଷା । )



ମୁଁ ଯେତେବେଳେ ପରିବର୍ତ୍ତନର ଆବଶ୍ୟକତା ଅନୁଭବ କଲି ମୋର ବାହ୍ୟିକ ଓ ଆନ୍ତରିକ ଜୀବନରେ ମଧ୍ୟ ପରିବର୍ତ୍ତନ ଦେଖାଗଲା । ଚଳଣି ଢଙ୍ଗର ପରିବର୍ତ୍ତନ ଓ ବ୍ୟୟ ସଙ୍କୋଚ ସଙ୍ଗେ ସଙ୍ଗେ କିମ୍ବା ତତ୍ପୂର୍ବରୁ ମୋର ଖାଦ୍ୟ ଜନିତରେ ମଧ୍ୟ ପରିବର୍ତ୍ତନ ଘଟୁଥିଲା । ମୁଁ ଦେଖିଲି, ନିରାମିଷ ଭୋଜନ ସମ୍ବନ୍ଧେ ଯେ ବହି ଲେଖାଅଛି ସେଥିରେ ବିଷୟଟିର ଆଧ୍ୟାତ୍ମିକ, ବୈଜ୍ଞାନିକ, ବ୍ୟବହାରିକ ଓ ଆୟୁର୍ବେଦୀୟ ଉପଯୋଗିତା ନେଇ ସୁନ୍ଦରଭାବେ ଚର୍ଚ୍ଚା କରାଯାଇଅଛି । ନୈତିକ ଦୃଷ୍ଟିରେ ଦେଖିବାକୁ ଯାଇ ସେମାନେ ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଅଛନ୍ତି ଯେ, ପଶୁ ଜଗତରେ ମନୁଷ୍ୟର ଯେ ଆଧିପତ୍ୟ, ତାହା ପଶୁହତ୍ୟା କରିବା ଦ୍ୱାରା ନୁହେ, କିନ୍ତୁ ସେମାନଙ୍କ ରକ୍ଷାକରିବାରେ କିମ୍ବା ମନୁଷ୍ୟ ପର ପରସ୍ପରକୁ ପରସ୍ପର ସାହାଯ୍ୟ କରିବାରେ ପ୍ରତିଫଳିତ ହୋଇଥାଏ । ସେ ଯାହା ଆହାର କରେ ତାହା ଆମୋଦ ପ୍ରମୋଦ ଉଦ୍ଦେଶ୍ୟରେ ନୁହେ, କିନ୍ତୁ ଜୀବନ ଧାରଣ କରିବା ସକାଶେ । ସେହେତୁ ସେମାନଙ୍କ ମଧ୍ୟରୁ କେତେଜଣ କେବଳ ଯେ ମାଂସ ଭୋଜନରୁ ଅବ୍ୟାହତି ନେବାକୁ କହି ଅଛନ୍ତି ତାହା ନୁହେ; ଅଣ୍ଡା ଓ କ୍ଷୀର ମଧ୍ୟ ନିରାମିଷ ବୋଲି ସେମାନେ ଧରନ୍ତି ନାହିଁ । ଏହା

ସେମାନଙ୍କ ଜୀବନର ଅନୁଭୂତ । ବୈଜ୍ଞାନିକ ଦୃଷ୍ଟିରେ ଆଲୋଚନା କରି ଆଉ କେତେଜଣ ସ୍ଥିର କରି ଅଛନ୍ତି ଯେ, ମନୁଷ୍ୟର ଶାରୀରିକ ଆକୃତିରୁ ଜଣାଯାଏ, ସେ ପାକ ଜିନିଷ ଖାଇବାର ଜୀବ ନୁହେ । ଆୟୁର୍ବେଦ ଦୃଷ୍ଟିରେ ପରୀକ୍ଷୋଚନା କରି ସେମାନେ କହନ୍ତି ଯେ, ମସଲା ଜିନିଷ ଇତ୍ୟାଦି ଏକାବେଳେକେ ପରିହାର୍ଯ୍ୟ । ନିରାମିଷ ଭୋଜନ କିପରି ସ୍ୱଳ୍ପବ୍ୟୟସାପେକ୍ଷ ତାହା ସେମାନେ ସୁନ୍ଦର ତର୍କ ଦ୍ୱାରା ବୁଝାଇ ଦେଇ ଅଛନ୍ତି । ଏହା ପଢି ମୋର ମନରେ ସେ ସବୁ ଭାବ ଗୁଡ଼ିକ ଲାଗି ରହିଲା । ଅନେକ ହୋଟେଲରେ ମୁଁ ଏହି ଧରଣର ନିରାମିଷ ଭୋଜୀମାନଙ୍କ ସଂସ୍ରବରେ ମଧ୍ୟ ଆସିଲି । ଇଂଲଣ୍ଡରେ ସେତେବେଳେ ଗୋଟିଏ "ନିରାମିଷ ଭୋଜନ ସଂଘ" ଥାଏ ଓ ସେ ସଂଘ ପକ୍ଷରୁ ପତ୍ରିକା ଖଣ୍ଡିଏ ମଧ୍ୟ ବାହାରେ । ମୁଁ ଉକ୍ତ ପତ୍ରିକାଟିର ଗ୍ରାହକ ହେଲି ଓ ସେ ସଂଘରେ ନାମ ଲେଖାଇବା ଅଳ୍ପ ଦିନ ମଧ୍ୟରେ ସମିତି ପରିଚାଳନ କମିଟିର ସଦସ୍ୟ ମଧ୍ୟ ହୋଇପାରି ଥିଲି । ମୁଁ ସେହି ସମିତିରେ ରହି ନିରାମିଷ ଭୋଜନ ମତର ଯେଉଁମାନେ ସ୍ତମ୍ଭ ସ୍ୱରୂପ, ସେମାନଙ୍କ ସଂସ୍ରବରେ ଆସିଲି ଓ ନିଜେ ଖାଦ୍ୟ ଜିନିଷର ପରୀକ୍ଷା କରିବା ଆରମ୍ଭ କଲି ।

ମୁଁ ଘରୁ ଯେଉଁ ମିଷ୍ଟାନ୍ନ ଓ ମସଲା ସରଞ୍ଜ ନେଇଥିଲି ତାହା ମଗାଇବା ବନ୍ଦ କରି ଦେଲି । ମନର ପରିବର୍ତ୍ତନ ସଙ୍ଗେ ସଙ୍ଗେ ମସଲା ସରଞ୍ଜ ପ୍ରତି ଆଉ ଆଦର ରହିଲା ନାହିଁ । ରିଚମଣ୍ଡଠାରେ ମସଲା ସରଞ୍ଜ ନଥାଇ ଜିନିଷ ଖାଇବାରୁ ଯେ ଅରୁଚି ବୋଧ କରୁଥିଲି, ସେ ଅରୁଚି ଆଉ ରହିଲା ନାହିଁ । ଏହିପରି ଅନେକ ପରୀକ୍ଷାରୁ ମୁଁ ବୁଝିପାରିଲି ଯେ, ରୁଚି ବୋଧ କରିବା ସ୍ଥାନ ଜିହ୍ୱା ନୁହେ କିନ୍ତୁ ମନ ଅଟେ । ବ୍ୟୟ ସଙ୍କୋଚର ଭାବନାତ ସବୁବେଳେ ମୋର ମନରେ ଥାଏ । ସେଠାରେ ସେତେବେଳେ

ଏହିପରି ହଲେ ଥାଆନ୍ତି, 'କାଫି' ଓ 'ଚା'ପାନ ଅପକାରକ କହି 'କୋକ୍' ପାନ କରିବା ପାଇଁ ସମସ୍ତଙ୍କୁ କହନ୍ତି । ମୁଁ ଯେତେବେଳେ ଜାଣିଲି ଯେ କେବଳ ଶରୀର ଧାରଣ କରିବା ସକାଶେ ମନୁଷ୍ୟ କିଛି ଆହାର କରିବା ଦରକାର, ଆଉ କାଫି ଓ ଚା ନଖାଇବା ପାଇଁ ନିଶ୍ଚୟ କଲି ଓ ତାହା ବଦଳରେ 'କୋକ' ବ୍ୟବହାର କଲି ।

ମୁଁ ଯେଉଁ ହୋଟେଲରେ ଖାଏ, ସେଥିରେ ଦୁଇଟି ବିଭାଗ ଥାଏ । ଗୋଟିଏ ବିଭାଗରେ ବେଶି ଧନୀଲୋକ ଯୋଗ ଦେଉଥାନ୍ତି । ଗୋଟିକ ପରେ ଗୋଟିଏ ଏହିପରି ଯେତେ ଜିନିସ ଖାଇବାକୁ ହୁଏ ତାହା ସବୁ ଖଣ୍ଡେ ସାଦା କାଗଜରେ ଲେଖାଯାଏ ଓ ପରିଶେଷରେ ପଇସା ଦେବାକୁ ହୋଇଥାଏ । ଏହି ଧରଣର ପ୍ରତ୍ୟେକ ଖାଦ୍ୟ ପାଇଁ ଏକ ସିଲିଙ୍ଗ କିମ୍ବା ଦୁଇ ସିଲିଙ୍ଗ ଖରଚ ହୁଏ । ଅନ୍ୟ ବିଭାଗରେ ଚାରି ପେନସ୍ ଦେଲେ ତିନଥର ଖଣ୍ଡେ ଖଣ୍ଡେ ରୁଟି ମିଳେ । ମୋର ବ୍ୟୟ ସଙ୍କୋଚ ଦିନରେ ମୁଁ ସାଧାରଣତଃ ଦ୍ୱିତୀୟ ବିଭାଗରେ ଖାଇଥାଏ ।

ମୁଁ ପ୍ରଧାନତଃ ରୁକ୍ଷ ପଦାର୍ଥ ଭୋଜନ ପରିତ୍ୟାଗ କରି ବେଳେ ବେଳେ ରୁଟି ଓ ଫଳ ମୂଳ ଖାଉଥାଏ ଏବଂ ଅନ୍ୟ ସମୟରେ କ୍ଷୀର, ଛେନା ଓ ଅଣ୍ଡା ଆହାର କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ସାମାନ୍ୟ ପରୀକ୍ଷା ମଧ୍ୟ କରୁଥିଲି କିନ୍ତୁ ଶେଷୋକ୍ତ ପରୀକ୍ଷା ସମ୍ବନ୍ଧେ ଏଠାରେ କହିବି । ତାହା ପନ୍ଦର ଦିନ ସକାଶେ ମଧ୍ୟ ପାଳନ କରି ପାରି ନଥିଲି । ରୁକ୍ଷ ଖାଦ୍ୟର ଯେଉଁମାନେ ବିପକ୍ଷବାଦୀ, ସେମାନେ ଅଣ୍ଡା ଖାଇବା ସପକ୍ଷରେ କହନ୍ତି । ତାଙ୍କ ଦୃଷ୍ଟିରେ ଅଣ୍ଡା ମାଂସ ମଧ୍ୟରେ ଗଣ୍ୟ ନୁହେ । ତାହା ଖାଇବା ଦ୍ୱାରା କୌଣସି ଜୀବ ହତ୍ୟା ହୁଏ ନାହିଁ । ଏହି ଯୁକ୍ତି ଦେଖାଇ ମୁଁ ମୋର ପ୍ରତିଜ୍ଞା ଭୁଲି ଗଲି ଓ ଅଣ୍ଡା ଖାଇବା ଆରମ୍ଭ କଲି, କିନ୍ତୁ ଏହି ସ୍ଖଳନ କ୍ଷଣସ୍ଥାୟୀ ମାତ୍ର । ମେ.ର.

ଶପଥର ଅର୍ଥ ଭିନ୍ନଭାବରେ ଦେଖାଇବା ଦରକାର ନଥିଲା ! ମାଆ ଯେଉଁ ଅର୍ଥରେ ମୋତେ ତାଙ୍କ ଆଗରେ ଶପଥ କରାଇ ଥିଲେ, ତାହାଙ୍କର ସେହି ଅର୍ଥ ମୁଁ ଭୁଲି ନଥିଲି । ମୁଁ ଜାଣିଥିଲି ଯେ ତାଙ୍କ ଦୃଷ୍ଟିରେ ଅଣ୍ଡା ମଧ୍ୟ ମାଂସ ମଧ୍ୟରେ ଗଣ୍ୟ । ମୁଁ ଯେତେବେଳେ ମୋର ପ୍ରତିଜ୍ଞାର ପ୍ରକୃତ ମର୍ଯ୍ୟାଦା ବୁଝିଲି, ଅଣ୍ଡା ଖିଆ ଛାଡ଼ିଦେଲି ।

ମୋର ଏଯୁକ୍ତି ମଧ୍ୟରେ ଏକ ସତ୍ୟ ନିହିତ ଅଛି, ତାହା ଏଠାରେ ଉଲ୍ଲେଖ ଯୋଗ୍ୟ । ଇଂଲଣ୍ଡରେ ମାଂସର ଅର୍ଥ ତିନି ପ୍ରକାର ବିନ୍ୟାସ ମୁଁ ଶୁଣିଥିଲି । ପ୍ରଥମ ଅର୍ଥ ଅନୁସାରେ ପଶୁ ଓ ପକ୍ଷୀମାନଙ୍କ ମାଂସକୁ ମାଂସ କୁହାଯାଏ । ଯେଉଁମାନେ ନିରାମିଷ ଭୋଜୀ ସେମାନେ ମାଛ ଓ ଅଣ୍ଡା ଖାଇବା ଛାଡ଼ି ଦେଇଥିଲେ । ଦ୍ୱିତୀୟରେ ଜୀବିତ ପଶୁର ମାଂସକୁ ମାଂସ କହି । ଏଥିରେ ମଧ୍ୟ ମାଛର ସ୍ଥାନ ନାହିଁ, କିନ୍ତୁ ଅଣ୍ଡା ଖାଇବା ଦୋଷାବହ ନୁହେ ।ତୃତୀୟ ଅର୍ଥ ଅନୁସାରେ ସମୁଦାୟ ଜୀବ ଜନ୍ତୁର ମାଂସ ଓ ସେମାନଙ୍କ ଠାରୁ ଯାହା ଆଦାୟ କରାଯାଏ ତାହା ମଧ୍ୟ ମାଂସ ରୂପେ ଗଣ୍ୟ ହୋଇଥାଏ । ଅଣ୍ଡା ଓ କ୍ଷୀର ମଧ୍ୟ ସେଥିରେ ଅନ୍ତର୍ଭୁକ୍ତ । ମୁଁ ଯଦି ପ୍ରଥମ ଅର୍ଥଟି ଗ୍ରହଣ କରେ ତାହାହେଲେ କେବଳ ଅଣ୍ଡା ନୁହେ, ମାଛ ମଧ୍ୟ ଖାଇବା କଥା, କିନ୍ତୁ ମୁଁ ଜାଣିଲି ମାଆ ଯେଉଁ ଅର୍ଥ ବୁଝିଥିଲେ ତାହା ମୋର ପାଳନୀୟ । ସୁତରାଂ ମୁଁ ଯେଉଁ ପ୍ରତିଜ୍ଞା କରିଅଛି ତାହା ଯଦି ପାଳନ କରିବାକୁ ହୁଏ, ତ ହାହେଲେ ଅଣ୍ଡାଖିଆ ପରିହାର କରିବାକୁ ହେବ, ଏବଂ ସେହିପରି କଲି । କିନ୍ତୁ ମୁଁ ଅନୁସନ୍ଧାନ କରି ବୁଝିଲି, ନିରାମିଷ ହୋଟେଲରେ ମଧ୍ୟ ଅନେକ ଜିନିସ ଅଣ୍ଡା ପଡି ତିଆରି ହୋଇଥାଏ । ସେହେତୁ ବେଶି ଅସୁବିଧା ଭୋଗିବାକୁ ହେଲା । ମୁଁ ଯେତେବେଳେ ହୋଟେଲକୁ ଯାଏ କେଉଁଠା କ'ଣ ନଜାଣିଥିବା ଯୋଗୁଁ କୌଣସି ଜିନିସ ଆସିଲେ

ସେଥିରେ ଅଣ୍ଡାର ସହ ଅଛି କି ନା ପଚାରିବା ପାଇଁ ପଡ଼ୁଥାଏ । ମୁଁ ଜାଣିଛି ଅନେକ ଜାଗାରେ ଅଣ୍ଡା ମିଶି ଥାଏ । କର୍ତ୍ତବ୍ୟ ପାଳନ କରିବାକୁ ଯାଇ ଅନେକ କଷ୍ଟଭୋଗ କରିବାକୁ ହେଲେହେଁ ତଦ୍ୱାରା ମୋର ଖାଦ୍ୟ ଜିନିଷ ସବୁ ସାଧାରଣ ଅବସ୍ଥାକୁ ଆସିଥିଲା । ତାର ଫଳରେ ମୋର ଅନେକ ଜିନିଷ ପ୍ରତି ବିରକ୍ତି ମଧ୍ୟ ଜନ୍ମିଲା; ମୁଁ ଆଗେ ଯେଉଁ ତରକାରି ଭଲ ପାଉଥିଲି, ସେ ସବୁ ଛାଡି ଦେଲି । କିନ୍ତୁ ଏ ସବୁ କଷ୍ଟ ଗୁଡ଼ାକ ଖରାଦିନର ମେଘ ସଦୃଶ୍ୟ । ଶୃଙ୍ଖଳଭାବେ ଶପଥ ପାଳନ କରିବା ଯୋଗୁଁ ମୋର ଅନ୍ତରକୁ ଉନ୍ନତ ବଢ଼ିବାକୁ ଲାଗିଲା । ତାହାତ ଅପେକ୍ଷାକୃତ ସ୍ୱାସ୍ଥ୍ୟକର, କୋମଳ ଓ ଚିରସ୍ଥାୟୀ । କିନ୍ତୁ ମୋର ଯେ ପ୍ରକୃତ ଯନ୍ତ୍ରଣା, ତାହା ଭବିଷ୍ୟତର କଥା ଓ ଅନ୍ୟ ଏକ ଶପଥ ପ୍ରସଙ୍ଗ ନେଇ; ତଥାପି ଭଗବାନ ଯାହାର ସହାୟ, ତାକୁ କିଏ ବା କଷ୍ଟ ଦେଇପାରେ ?

ପ୍ରତିଜ୍ଞାର ଅର୍ଥ ବିନ୍ୟାସ ତଥା ଟୀକା ସମ୍ବନ୍ଧେ ଏଠାରେ ଅଳ୍ପ କେତୋଟି ବିଷୟ କହିଲେ ବୋଧହୁଏ ଅସଙ୍ଗତ ହେବନାହିଁ । ପୃଥିବୀରେ ପ୍ରତିଜ୍ଞାର ଟୀକା ନେଇ ଅନେକ ବିବାଦର ସୃଷ୍ଟି । ଯେପରି ପ୍ରାଞ୍ଜଳ ପ୍ରତିଜ୍ଞା ହେଉ, ନିଜର ଉପଯୋଗ ହେଲାପରି ଲୋକେ ତାହାର ଅର୍ଥ ସବୁ ମୋଡ଼ାମୋଡ଼ି କରି ନିଅନ୍ତି । ଧନୀ ଠାରୁ ଆରମ୍ଭ କରି ଗରିବ ପର୍ଯ୍ୟନ୍ତ, ରାଜାଠାରୁ ସାମାନ୍ୟ ପ୍ରଜାପର୍ଯ୍ୟନ୍ତ ସମାଜର ସମସ୍ତ ସମ୍ପ୍ରଦାୟରେ ଏହିପରି ଲୋକ ଦେଖା ଯାଇଥାନ୍ତି । ସ୍ୱାର୍ଥାନ୍ଧ ହୋଇ ଓ ଅନ୍ୟ ଜଣକର ଜଟିଳ ଅର୍ଥର ସାହାଯ୍ୟ ନେଇ ସେମାନେ ନିଜେ ପ୍ରତାରିତ ହୁଅନ୍ତି, ଜଗତକୁ ଏବଂ ଭଗବାନଙ୍କୁ ମଧ୍ୟ ପ୍ରତାରିତ କରିବା ପାଇଁ ଚେଷ୍ଟା କରନ୍ତି । ଯାହାଙ୍କ ସମ୍ମୁଖରେ ପ୍ରତିଜ୍ଞା କରିବାକୁ ହୁଏ, ସେ ନିରପେକ୍ଷଭାବରେ ପ୍ରତିଜ୍ଞାଟିର ଯେଉଁ ଅର୍ଥ ବୁଝିଥାନ୍ତି, ତାଙ୍କର ଟୀକା କେବଳ ଗ୍ରହଣ କରିବା ଉଚିତ । ଯୁକ୍ତି

ଦୁଇ ପ୍ରକାର ଟୀକା ସମ୍ଭବ ହୁଏ, ତାହା ହେଲେ ଦୁର୍ବଳ ପକ୍ଷର ଟୀକା ଗ୍ରହଣ କରିବା କଥା । ଏହି ଦୁଇଟି ନିୟମ ଅଗ୍ରାହ୍ୟ ହେଲେ ଫଳରେ ବିବାଦ ଓ ମନୋମାଳିନ୍ୟର ସୂତ୍ରପାତ ହୋଇଥାଏ । ଏହା କନ୍ୟ ଅସତ୍ୟ ଉତ୍ତରେ ଗଠିତ । ଯେ ସତ୍ୟ ମାର୍ଗ ଖୋଜୁଥାଏ ସେ ପ୍ରଥମ ଅର୍ଥଟି ଗ୍ରହଣ କରେ । ପ୍ରତିଜ୍ଞାର ଟୀକା ପାଇଁ ସେ କୌଣସି ଜ୍ଞାନର ଉପଦେଶ ଅପେକ୍ଷା କରେ ନାହିଁ । ଯେହେତୁ ମୋର ମାଆ ଯେଉଁ ଅର୍ଥରେ ମାଂସକୁ ବୁଝିଥିଲେ ଓ ପ୍ରତିଜ୍ଞାଟିର ଟୀକା କରିଥିଲେ ତାହା କେବଳ ପ୍ରକୃତ ଅର୍ଥ ଓ ଗ୍ରହଣ ଯୋଗ୍ୟ ବୋଲି ମୁଁ ସ୍ଥିର କଲି ।

ଇଁଲଣ୍ଡରେ ମୁଁ ଯେଉଁ ଖାଦ୍ୟ ଜିନସର ପରୀକ୍ଷା କରୁଥାଏ ତାହା ସବୁ ବ୍ୟୟ ସଙ୍କୋଚ ଓ ସ୍ୱାସ୍ଥ୍ୟ ଦୃଷ୍ଟିରେ । ଖାଦ୍ୟ ବିଷୟକୁ ଆଧ୍ୟାତ୍ମିକ ଦୃଷ୍ଟିରେ ଦେଖିବା କଥା ଦକ୍ଷିଣ ଆଫ୍ରିକାକୁ ଯିବାଯାଏ ମୁଁ ଭାବି ନଥିଲି । ସେଠାରେ ବିଷୟ ଯେ ଅଜସ୍ର ପରୀକ୍ଷା କରିବାକୁ ଲାଗିଲି ତାହା ପରେ କହିବି । ସେ ସବୁର ବୀଜ ବପନ ହେଲା ଇଁଲଣ୍ଡ ଅଧିବାସ ସମୟରେ ।

ଇଁଲଣ୍ଡରେ ସେତେବେଳେ ନିରାମିଷ ଭୋଜନ ଗୋଟିଏ ନୂତନ ବିଷୟ । ପୂର୍ବେ କହିଛି ମାଂସ ଭୋଜନରେ ଉପକାର ଅଛି ବୋଲି ମୁଁ ଭାବିଥିଲି ।—ସେଠାକୁ ଗଲାବେଳେ ମୋର ସେହି ଭାବନା ଥିଲା । ସୁତରାଂ ମୋ ପକ୍ଷେ ନିରାମିଷ ଭୋଜନ ମଧ୍ୟ ଏକ ନୂତନ କଥା । ପଢ଼ା ପଢ଼ି କରି ପାରେ ମୁଁ ନିରାମିଷ ଭୋଜନରେ ଦୀକ୍ଷିତ ହେଲି । ନିରାମିଷ ଭୋଜନ ପାଇଁ ଉତ୍ସାହିତ ହୋଇ ମୋର ବାସସ୍ଥାନ ବେସ ଓ୍ୱାଟର (Bayswater) ଠାରେ ଗୋଟିଏ ନିରାମିଷ ଭୋଜନ ସମିତିର ଅନୁଷ୍ଠାନ କରିବି ବୋଲି ସ୍ଥିର କଲି । ସେଠାର ବାସିନ୍ଦା ସର ଏଡୱିନ୍ ଆର୍ଣ୍ଣାଲଡଙ୍କୁ ସମିତିର ସହକାରୀ ସଭାପତି ହେବା ପାଇଁ ଆମନ୍ତ୍ରଣ କଲି ।

"ନିରାମିଷ ଭୋଜୀ" ଶୀର୍ଷକ ପତ୍ରିକାର ସମ୍ପାଦକ ଡାକ୍ତର ଓଲଡଫିଲଡ ତାହାର ସଭାପତି କାର୍ଯ୍ୟ ଗ୍ରହଣ କଲେ ଓ ମୁଁ ନିଜେ ସମ୍ପାଦକ ହେଲି । ସମିତିଟି କେତେ ଦିନଯାଏ ସୁରୁଖୁରୁରେ ଚାଲିଲା—କିନ୍ତୁ ମାସେ ଦୁଇ ମାସ ଭିତରେ ବିଲୁପ୍ତ ହଇଗଲା । ମୁଁ ମୋର କାର୍ଯ୍ୟ ଅନୁରୋଧରେ ବେଳେ ବେଳେ ଏଆଡେ ସେଆଡେ ଯିବାକୁ ପଡୁଥାଏ ବୋଲି ସେ ସ୍ଥାନ ଛାଡ଼ି ଦେବାକୁ ହେଲା । ମୁଁ ସମିତି ସକାଶେ ବେଶି କିଛି କରିପାରିଲି ନାହିଁ କିନ୍ତୁ ଏହି ସାମାନ୍ୟ ଅନୁଭୂତି ଯୋଗୁଁ କୌଣସି ଅନୁଷ୍ଠାନ ଗଢ଼ିବା ଓ ତାହାର ପରିଚାଳନ କରିବାରେ ମୁଁ କିଛି ଶିକ୍ଷା ପାଇଥିଲି ।



# ଅଷ୍ଟାଦଶ ପରିଚ୍ଛେଦ ।

( ଲଜ୍ଜକତା ମୋର ଅସ୍ତ୍ର )



'ନିରାମିଷ ଭୋଜୀ ସଂଘ'ର ପରିଚାଳନ ସମିତି ସଦସ୍ୟ ରୂପେ ମୁଁ ନିଯୁକ୍ତ ହେଲି ଓ ସମିତିର ପ୍ରତି ଅଧିବେଶନରେ ଯୋଗଦାନ କରିବା ପାଇଁ ଦୃଢ଼ପ୍ରତିଜ୍ଞ ହେଲି; କିନ୍ତୁ ସେଥିରେ କେବେହେଲେ ମୋର ପାଟି ଫିଟେ ନାହିଁ । ଡାକ୍ତର ଓଲଡ଼ଫିଲ୍ଡ଼ ଥରେ ମୋତେ ପଚାରିଲେ, "ତୁମେ ମୋ ସହିତ ସୁନ୍ଦର କଥା ବାର୍ତ୍ତା କରୁଛ କିନ୍ତୁ ସମିତିର କୌଣସି ଅଧି-ବେଶନରେ ଯେ ପାଟି ଫିଟାଉ ନାହିଁ, ତାହାର କାରଣ କଣ ? ତୁମେ ଜଣେ ଅକର୍ମଣ୍ୟ ମନ୍ଦମାଛି ପରି" । ବ୍ୟଙ୍ଗୋକ୍ତିଟିକୁ ମୁଁ ପସନ୍ଦ କଲି । ସମିତିରେ ସମସ୍ତେ ନିଜ ନିଜର ମତ ବ୍ୟକ୍ତ କଲାବେଳେ ମୁଁ ନୀରବ ରହି-ଥାଏ । ତାହା ଅବଶ୍ୟ କମ ଆଶ୍ଚର୍ଯ୍ୟର ବିଷୟ ନୁହେ । କେବେହେଲେ କିଛି କହିବା ପାଇଁ ମୋର ଯେ ଆକାଂକ୍ଷା ନଥାଏ, ତାହା ନୁହେ । କିନ୍ତୁ

କାରଣ ମୋର ଭାବ ବ୍ୟକ୍ତ କରିବ, ମୁଁ ଜାଣି ପାରେ ନାହିଁ । ସମିତିର ଅନ୍ୟାନ୍ୟ ସଦସ୍ୟମାନେ ମୋ ଅପେକ୍ଷା ବେଶି ଜାଣି ଅଛନ୍ତି ବୋଲି ମୁଁ ଭାବଥାଏ । ଯେତେ ସମୟରେ ମୁଁ ସାହସ ବାନ୍ଧି କିଛି କହିବା ପାଇଁ ଉଠିଲା ବେଳକୁ ଅନ୍ୟ ଏକ ନୂତନ ବିଷୟର ଆଲୋଚନା ଆରମ୍ଭ କରାଯାଇଥାଏ । ଏପରି ଅନେକ ସମୟ ଗଲା ।

ଇତି ମଧ୍ୟରେ ଗୋଟିଏ ଗୁରୁତର ବିଷୟର ଆଲୋଚନା କରିବାକୁ ପଡ଼ିଲା । ମୁଁ ଭାବିଲି ସମିତିରେ ଅନୁପସ୍ଥିତ ହେବା ଯେପରି ଅନୁଚିତ, ସେଥିରେ ଯୋଗଦେଇ ମୂକପରି ସବୁ ପ୍ରସ୍ତାବ ଗୁଡ଼ିକୁ ଅନୁମୋଦନ କରିବା ସେପରି ଭୀରୁତାର ପରିଚୟକ । ନିମ୍ନଲିଖିତ ଭାବେ ବିଷୟଟିର ଆଲୋଚନା ଉଠିଥିଲା । ମିଃ ହିଲସ୍ ସଂଘର ସଭାପତି ଥିଲେ । 'ଥେମସ୍ ଲୁହା-କାରଖାନା'ର ସେ ସ୍ୱତ୍ୱାଧିକାରୀ । ଧର୍ମରେ ସେ ଜଣେ ପ୍ୟୁରିଟାନ (Puritan) । ସଂଘର ଅବସ୍ଥିତି ତାଙ୍କର ଆର୍ଥିକ ସାହାଯ୍ୟ ଉପରେ କେବଳ ନିର୍ଭର କରୁଥିଲା ବୋଲି କୁହାଯାଇପାରେ । ସମିତିର ଅନେକ ସଦସ୍ୟ ଉଣା ଅଧିକରେ ତାଙ୍କର ଖାତକ । ନିରାମିଷଭୋଜୀ ଖ୍ୟାତନାମା ଡ଼ାକ୍ତର ଏଲିସନ ମଧ୍ୟ ସମିତିର ଜଣେ ସଦସ୍ୟ ଥିଲେ । ସେ ସମୟର ନୂତନ ପ୍ରତିଷ୍ଠିତ 'ଜନ୍ମ ପ୍ରତିରୋଧ ଆନ୍ଦୋଳ' (Birth Control Movement) ର ସେ ଜଣେ ପକ୍ଷପାତୀ ଏବଂ କି ଉପାୟରେ ତାହା ପାଳନ କରିବାକୁ ହେବ, ତାହା ସେ କୁଲି ସମ୍ପ୍ରଦାୟରେ ପ୍ରଚାର କରୁଥାନ୍ତି । ସେହି ଉପାୟ ଗୁଡ଼ିକ ନୀତି ଶାସ୍ତ୍ରର ମୂଳୋତ୍ପାଟନ କରୁଛି ବୋଲି ମିଃ ହିଲସଙ୍କର ଧାରଣା । ନିରାମିଷଭୋଜୀ ସଂଘର ଲକ୍ଷ୍ୟ ଯେ କେବଳ ଖାଦ୍ୟ ଜିନିଷର ସଂସ୍କାର ତାହା ନୁହେଁ, ନୈତିକ ସଂସ୍କାର ମଧ୍ୟ ତାହାର ଆଲୋଚ୍ୟ ବିଷୟ । ଏବଂ ଡାକ୍ତର ଏଲିସନଙ୍କ ପରି ପ୍ୟୁରିଟେନ ବିରୁଦ୍ଧ ମତବାଦୀ

ସଂଘରେ ରହିବା ତାଙ୍କର ଇଚ୍ଛା ନଥିଲା । ସୁତରାଂ ତାଙ୍କୁ ବାହାର କରିଦେବା ପାଇଁ ଗୋଟିଏ ପ୍ରସ୍ତାବ ଆଗତ କରାଗଲା । ବିଷୟଟିରେ ମୁଁ ବେଶି ମନଯୋଗ ଦେଲି । କୃତ୍ରିମ ଉପାୟରେ ସନ୍ତାନ ଉତ୍ପାଦନ ଶକ୍ତି ଦମନ କରିବା ପାଇଁ ଡାକ୍ତର ଏଲିସନ୍‌ଙ୍କର ଯେ ମତ, ତାହା ଭୟଙ୍କର ବୋଲି ମୁଁ ବିଚାର କଲି ଏବଂ ମିଃ ହିଲ୍‌ସ ଯେ ତାଙ୍କର ପ୍ରତିବାଦ କରନ୍ତି ତାହା ଜଣେ ପ୍ୟୁରିଟେନ ବା ନିଷ୍ଠାପର ଲୋକ ପକ୍ଷେ ସମୀଚୀନ ବୋଲି ବିଶ୍ୱାସ କଲି । ମିଃ ହିଲସ୍‌ଙ୍କ ପ୍ରତି ତଥା ତାଙ୍କର ଉଦାରତା ପ୍ରତି ମଧ୍ୟ ମୁଁ ବେଶି ସମ୍ମାନ କରେ । କିନ୍ତୁ ପ୍ୟୁରିଟେନ ନୀତିକୁ ସଂଘର ଉଦ୍ଦେଶ୍ୟ ସ୍ୱରୂପ ଜଣେ ଗ୍ରହଣ କରିବା ପାଇଁ ଅସମର୍ଥ ହେବାରୁ ତାଙ୍କୁ 'ନିରାମିଷ ଭୋଜୀ' ସଂଘରୁ ଅନ୍ତର କରି ଦେବା ନିତାନ୍ତ ଅନୁପଯୁକ୍ତ ବୋଲି ମୁଁ ଭାବିଲି । ପ୍ୟୁରିଟେନ ବିପକ୍ଷ ଦଳର ଲୋକଙ୍କୁ ସଂଘରୁ ଅନ୍ତର କରିବା ବିଷୟ, ମିଃ ହିଲସ୍‌ଙ୍କର ସ୍ୱକୀୟ ଭାବ; ସଂଘର ପ୍ରକାଶିତ ଉଦ୍ଦେଶ୍ୟ ଥିଲା କେବଳ ନିରାମିଷ ଭୋଜନର ପ୍ରଚାର, କିନ୍ତୁ କୌଣସି ନୀତିର ବ୍ୟବସ୍ଥା ସକାଶେ ନୁହେ । ସୁତରାଂ ଅନ୍ୟ ନୀତି କ୍ଷେତ୍ରରେ ଜଣଙ୍କର ଯେ କୌଣସି ମତ ହେଉନା କାହିଁକି, ସେ ଯଦି ନିରାମିଷଭୋଜୀତାହାହେଲେ ସେ ସଂଘର ସଦସ୍ୟ ହୋଇ ପାରନ୍ତି ବୋଲି ମୁଁ ଧରି ବସିଲି ।

ସମିତିର ଆହୁରି ଅନେକ ସଦସ୍ୟ ମଧ୍ୟ ମୋର ମତ ସମର୍ଥନ କରିଥିଲେ କିନ୍ତୁ ମୁଁ ନିଜେ ମୋର ମତ ବ୍ୟକ୍ତ କରିବା କର୍ତ୍ତବ୍ୟ ମନେ-କଲି । କିପରି ତାହା କରିବାକୁ ହେବ-ସେଥିଲାଗି ମୁଁ ଭାବିତ ହେଲି । କହିବା ପାଇଁ ମୋର ସାହସ ନଥିଲା; ସୁତରାଂ ମୋର ବକ୍ତବ୍ୟ ସବୁ ଆଗ ଲେଖିବା ପାଇଁ ନିଶ୍ଚୟ କଲି । ସେ ପ୍ରବନ୍ଧଟି ସଙ୍ଗରେ ନେଇ ସମିତିକୁ ଗଲି । ମୋର ଯେତେ ଦୂର ମନେ ଅଛି, ତାହା ପଢିବା ପାଇଁ ମଧ୍ୟ ମୋର

ଆନନ୍ଦ ଦେଇପାରି ନାହିଁ । ସଭାପତି ମହୋଦୟ ଅନ୍ୟ ଜଣଙ୍କଦ୍ୱାରା ତାହା ପଢ଼ାଇ ଦେଇଥିଲେ । ଡାକ୍ତର ଏଲିସନ୍ ପରାସ୍ତ ହେଲେ; ତଥାପି ବିଷୟ-ଯୁକ୍ତ ଗର୍ହିତ ନୁହେ ବୋଲି ମୋର ମନରେ ସାନ୍ତ୍ୱନା ଲଭିଥିଲି । ଏହି ଘଟଣା ପରେ ଉକ୍ତ କମିଟିରୁ ଅନ୍ତର ହୋଇଥିବା କଥା ମୋର ଅଳ୍ପ ମନେ ଅଛି ।

ବିଲାତ ଅଧିବାସର ଆରମ୍ଭରୁ ଶେଷ ଯାଏ ମୋଠାରେ ଏହି ଲଜ୍ଜାଶୀଳତା ଥିଲା । କୌଣସି ସାମାଜିକ ଅନୁଷ୍ଠାନରେ ଯୋଗ ଦେଲେ ମଧ୍ୟ ସେଠାରେ ଯଦି ଛଅ କିମ୍ବା ତତୋଧିକ ବ୍ୟକ୍ତି ଥାଆନ୍ତି ତାହାହେଲେ ମୁଁ ମୂକ ହୋଇ ରହେ ।

ମିଃ ମଜୁମଦାରଙ୍କ ସହିତ ମୁଁ ଥରେ ବେଣ୍ଟନର ( Ventnor ) ଠାକୁ ଯାଇଥିଲି । ଆମ୍ଭେ ଦୁହେଁ ଏକ ନିରାମିଷଭୋଜୀ ପରିବାରରେ ବସାକଲୁ । 'ଆହାର ନୀତି' ( The Ethics of Diet ) ଲେଖକ ମିଃ ହାଓ୍ୱାର୍ଡ଼ ମଧ୍ୟ ସନ୍ନିକଟରେ ଅବସ୍ଥାନ କରୁଥିଲେ । ଆମ୍ଭେ ଦୁହେଁ ତାଙ୍କୁ ଭେଟିଲୁ, ଓ ସେ ନିରାମିଷ ଭୋଜନର ପ୍ରସ୍ତାବ ସମ୍ବନ୍ଧେ ଗୋଟିଏ ସମିତିରେ ବକ୍ତୃତା କହିବା ପାଇଁ ଆମ୍ଭମାନଙ୍କୁ ଆମନ୍ତ୍ରଣ କଲେ । ମୁଁ ଅନୁସନ୍ଧାନ କରି ବୁଝିଲି ଯେ ବକ୍ତୃତା ଲେଖି ପଢ଼ିବା ଅସଙ୍ଗତ ନୁହେ । ମୁଁ ଜାଣେ ସଙ୍ଗତ ଓ ସଂକ୍ଷିପ୍ତ ଭାବେ ନିଜର ମତ ବ୍ୟକ୍ତ କରିବା ପାଇଁ ଅନେକେ ସେହିପରି କରୁଥାନ୍ତି । ପୂର୍ବ ଚିନ୍ତାବିନା ବକ୍ତୃତା କହିବା ମୋପକ୍ଷେ ସମ୍ଭବ ନୁହେ । ସୁତରାଂ ମୁଁ ମୋର ବକ୍ତବ୍ୟଟି ଲେଖିପକାଇ ଥିଲି । ତାହା ସଭାରେ ପଢ଼ିବାକୁ ଉଠିଲି କିନ୍ତୁ ପଢ଼ିପାରିଲି ନାହିଁ । ବକ୍ତବ୍ୟଟି ଗୋଟିଏ ପୃଷ୍ଠା ମଧ୍ୟ ହୋଇ ନଥିଲେହେଁ ମୋର ଦୃଷ୍ଟି ଶକ୍ତି ଅସ୍ପଷ୍ଟ ହୋଇଗଲା ଓ ମୁଁ ଥରିବାକୁ ଲାଗିଲି । ମୋପାଇଁ ମିଃ ମଜୁମଦାର ପଢ଼ିବାକୁ ପଡ଼ିଲା ।

ତାଙ୍କ ନିଜର ବକ୍ତୃତାଟି ଭଲ ହୋଇଥିଲା ଓ ସମସ୍ତେ ତାହା ଆଦରରେ ସହିତ ଶୁଣି ଥିଲେ । ମୁଁ ନିଜକୁ ବଡ଼ ଲଜ୍ଜିତ ମନେ କଲି ଓ ମୋର ଦୁର୍ବଳତା ଲାଗି ଦୁଃଖିତ ହେଲି ।

ବିଲାତ ଛାଡ଼ି ଘରକୁ ଫେରିବା ପ୍ରାକ୍‌କାଳରେ ଗୋଟିଏ ସାଧାରଣ ବକ୍ତୃତା ଦେବା ପାଇଁ ମୁଁ ଶେଷ ଚେଷ୍ଟା କରିଥିଲି । କିନ୍ତୁ ଏଥର ମଧ୍ୟ ନିଜକୁ ପରିହାସର ପାତ୍ର କରିବା ଛଡ଼ା ଆଉ କିଛି ହୋଇ ପାରି ନଥିଲା । ମୋର ନିରାମିଷଭୋଜୀ ବନ୍ଧୁମାନଙ୍କୁ ଗୋଟିଏ ଭୋଜନ ଦେବାପାଇଁ ହଲବରନ୍ ହୋଟେଲକୁ ଥରେ ଆମନ୍ତ୍ରଣ କଲି । ଯେ କୌଣସି ନିରାମିଷ ହୋଟେଲରେ ନିରାମିଷ ଭୋଜନ ମିଳିବାତ ସ୍ୱାଭାବିକ କଥା, କିନ୍ତୁ ଆମିଷ ହୋଟେଲରେ ମଧ୍ୟ ସେହିପରି ସମ୍ଭବ କାହିଁକି ନହେବ ? ଏହି କଥା ମୁଁ ମନେ ଭାବିଲି ଓ ହଲବରନ୍ ହୋଟେଲ ପରିଚାଳକଙ୍କୁ କହି ଗୋଟିଏ ନିରାମିଷ ଭୋଜନର ଯୋଗାଡ଼ କରାଇଲି । ନିରାମିଷ ଭୋଜୀମାନେ ଖାଦ୍ୟର ଏହି ନୂତନ ପରୀକ୍ଷାରେ ବଡ ତୃପ୍ତ ହେଲେ । ସବୁ ଭୋଜନର ଉଦ୍ଦେଶ୍ୟ ହେଉଛି ଆମୋଦ, କିନ୍ତୁ ପାଶ୍ଚାତ୍ୟ ଲୋକେ ବିଷୟଟିକୁ ଏକ ପ୍ରକାର କଳା ସ୍ୱରୂପ ଧରି ନେଉଥାନ୍ତି । ସେ ସବୁ ବହୁ ଆଡମ୍ବର, ସଙ୍ଗୀତ ଓ ବକ୍ତୃତା ସହ ଅନୁଷ୍ଠିତ ହୋଇଥାଏ । ମୁଁ ଯେଉଁ ସାମାନ୍ୟ ଦଳଟିକୁ ଆମନ୍ତ୍ରଣ କରିଥିଲି ସେଥିରେ ମଧ୍ୟ ଏହିପରି ଆଡମ୍ବର ଦେଖା ଯାଇଥିଲା । ସୁତରାଂ ସେଠାରେ ମଧ୍ୟ ବକ୍ତୃତା କହିବା କଥା, ମୋର ଯେତେବେଳେ କହିବା ସମୟ ଆସିଲା, କିଛି କହିବାପାଇଁ ଉଠିଲି । ବହୁ ସତର୍କରେ ଅଳ୍ପ କେତୋଟି ବାକ୍ୟର ଗୋଟିଏ ବକ୍ତୃତା କହିବା ପାଇଁ ମୁଁ ପୂର୍ବରୁ ଭାବିଥିଲି କିନ୍ତୁ ପ୍ରଥମ ବାକ୍ୟ ଛଡ଼ା ମୁଁ ଆଉ ବେଶି ଦୂର ଯାଇ ପାରି ନଥିଲି । ଏଡ୍‌ସନଙ୍କ ସମ୍ବନ୍ଧେ ମୁଁ ପଢ଼ିଥିଲି ଯେ ସେ ଯେତେବେଳେ ହାଉସ୍

ଅଫ କାମନସ୍ ( House of Commons ) ରେ ତାଙ୍କର ପ୍ରଥମ ବକ୍ତୃତା ଆରମ୍ଭ କରନ୍ତି, ମୁଁ ଅନୁଭବ କରେ (Conceive) ବୋଲି ବାରମ୍ବାର ତିନି ଥର କହି ଆଉ କିଛି କହି ନପାରିବା ଦେଖି ଜଣେ ଥଟ୍ଟାବାଜ ଉଠି କହିଥିଲେ, "ଭଦ୍ର ବ୍ୟକ୍ତି ତିନି ଥର ଗର୍ଭ ଧାରଣ କରି ସୁଦ୍ଧା କିଛି ପ୍ରସବ କରିପାରି ନାହାନ୍ତି" । ଏହି କଥାଟି ଉକ୍ତି ସ୍ୱରୂପ ନେଇ ଗୋଟିଏ ହାସ୍ୟ ରସ ପୂର୍ଣ୍ଣ ବକ୍ତୃତା କହିବା ପାଇଁ ମୁଁ ଭାବିଥିଲି । ସୁତରାଂ ମୁଁ ମଧ୍ୟ ସେହି ଧରଣରେ ଆରମ୍ଭ କଲି କିନ୍ତୁ ପ୍ରଥମ ପଦେ ଦୁଇ ପଦରେ ରହିଗଲି । ମନରୁ ସବୁ ପାସୋରି ଗଲା, ଏବଂ ଗୋଟିଏ ହାସ୍ୟ ରସାତ୍ମକ ବକ୍ତୃତା ଦେବାକୁ ଚେଷ୍ଟା କରି ନିଜକୁ ଥଟ୍ଟାର ସାମଗ୍ରୀ ମାତ୍ର କରିଥିଲି । "ଆପଣମାନେ ଯେ ମୋର ନିମନ୍ତ୍ରଣକୁ ସାଦରେ ଗ୍ରହଣକରି ଅଛନ୍ତି ସେହେତୁ ମୁଁ ଧନ୍ୟବାଦ ଦେଉଅଛି" ହଠାତ୍ କହି ଦେଇ ବସି ପଡ଼ିଲି ।

ଦକ୍ଷିଣ ଆଫ୍ରିକାରେ କେବଳ ମୁଁ ଏହି ଲାଜୁକତାରୁ ରକ୍ଷା ପାଇଥିଲି; ତଥାପି ସମ୍ପୂର୍ଣ୍ଣ ଭାବେ ନୁହେ । ବିନାଭ୍ୟାସରେ ବକ୍ତୃତା ଦେବା ମୋ ପକ୍ଷେ ଅସମ୍ଭବ ହୋଇଥିଲା । ଅପରିଚିତ ସଭା ଦେଖି ମୁଁ ଅସ୍ଥିର ହୁଏ ଓ ଯେତେଦୂର ପାରେ ବକ୍ତୃତା ଦେବାରୁ କ୍ଷାନ୍ତ ହୋଇଥାଏ ।

ମୁଁ କହି ପାରେଯେ, ମୋର ଏହି ସ୍ୱାଭାବିକ ଲାଜୁକତା ସମୟ ସମୟରେ ମୋତେ ଉପହାସର ପାତ୍ର କରିବା ଛଡ଼ା ଆଉ କିଛି ଅନିଷ୍ଟକର ହୋଇନାହିଁ । ବାସ୍ତବିକ ମୁଁ ଦେଖିପାରୁଛି, ପକ୍ଷାନ୍ତରେ ତାହା ସବୁ ମୋର ମଙ୍ଗଳ ପାଇଁ । ଦିନେ ମୋର ସନ୍ଦେହ ପୂର୍ଣ୍ଣ ବଚନକୁ ଯେ ଦୁଃଖ ବୋଲି ମନେ କରିଥିଲି, ତାହା ଆଜି ମୋପକ୍ଷେ ସୁଖପ୍ରଦ ହୋଇଅଛି । ବାକ୍ୟର ମିତବ୍ୟୟିତା ଶିକ୍ଷା ଦାନ ହେଉଛି ତାର ଉତ୍କୃଷ୍ଟ ଉପକାର । ସ୍ୱଭାବତଃ ମୋର ଭାବ ସମୂହକୁ ସଂଯତ ରଖିବା ଅଭ୍ୟାସ

ମୁଁ କରିଥିଲି । ମୋର ଲେଖାରେ କିମ୍ବା କଥାରେ କେବେ ହେଲେ ମୋଠାରୁ ଗୋଟିଏ ଚିନ୍ତାଶୂନ୍ୟ ପଦ ବାହାରି ପଡୁନାହିଁ ବୋଲି ମୁଁ ନିଜକୁ ନିଜେ ପ୍ରଶଂସା ପତ୍ର ଦେଇପାରେ । ମୋର ଲେଖା କିମ୍ବା କଥାରେ କୌଣସି ଭୁଲ ଲାଗି ମୁଁ କେବେ ହେଲେ ଅନୁତପ୍ତ ହୋଇଥିବା ମୋର ମନେ ହେଉନାହିଁ । ସ୍ୱତରାଂ ନାନା ଦୁର୍ଦ୍ଦଶା ଓ ବୃଥା ସମୟ ନଷ୍ଟରୁ ମୁଁ ରକ୍ଷା ପାଇଅଛି । ଅନୁଭବରୁ ମୁଁ ବୁଝି ପାରୁଛି ଯେ, ଜଣେ ସତ୍ୟର ଉପାସକ ପକ୍ଷେ ନୀରବତା ଆଧ୍ୟାତ୍ମିକ ସଂଯମର ଏକ ଅଙ୍ଗ । ଉପ-ହାସରେ ହେଉ ବା ନ ହେଉ ସତ୍ୟକୁ ବଢ଼ାଇବା, ଦମନ କରିବା କିମ୍ବା ପରିବର୍ତ୍ତନ କରିବା ଲାଗି ଯେ ଆସକ୍ତି ତାହା ମନୁଷ୍ୟର ସ୍ୱାଭାବିକ ଦୁର୍ବଳତା । ସେଥିରୁ ରକ୍ଷା ପାଇବା ପାଇଁ ନୀରବତା ନିତାନ୍ତ ଦରକାର । ଜଣେ ସ୍ୱଳ୍ପଭାଷୀ କଥା ପ୍ରସଙ୍ଗରେ କ୍ୱଚିତ ଚିନ୍ତାଶୂନ୍ୟ ହୁଏ । ସେ ପ୍ରତିପଦ ତୁଳନା କରି କହେ । ଅନେକ ଲୋକ କହିବା ପାଇଁ ବଡ ଅସ୍ଥିର । କୌଣସି ସଭାରେ ଏହିପରି ଜଣେ ସଭାପତି ନାହାନ୍ତି ଯେଉଁ ସଭାରେ କହିବା ପାଇଁ ଅନୁମତି ଦେବା ସକାଶେ ସଭାର ଶୃଙ୍ଖଳା ଦରକାର ଚିଠି ପାଇ ନଥିବେ । ଏବଂ ଯେତେବେଳେ ଅନୁମତି ଦିଆଯାଏ ବକ୍ତା ସାଧାରଣତଃ ନିର୍ଦ୍ଦିଷ୍ଟ ସମୟରୁ ବଳି ପଡନ୍ତି । ଅଧିକା ସମୟ ମାଗନ୍ତି ଓ ବିନାନୁମତିରେ ମଧ୍ୟ କହି ଯାଉଥାନ୍ତି । ଏସବୁ କଥାରେ ଜଗତର କିଛି ଉପକାର ହେଉ-ଥାଏବୋଲି କୁହାଯାଇ ନପାରେ । ତାହା ବୃଥା ସମୟ ବ୍ୟୟର କଥା । ଲାଜୁକତା ବାସ୍ତବିକ ମୋର ଆଶ୍ରୟ, ଉନ୍ନତର ନମ୍ରାତ୍ମକ ଓ ସତ୍ୟ ପର୍ଯ୍ୟା-ଲୋଚନା କରିବାରେ ମୋର ସାହାଯ୍ୟକାରୀ ।

—*: + :*—

# ଊନବିଂଶ ପରିଚ୍ଛେଦ ।

( ଅନ୍ତଃକୃପ ଦୂଷଣ ;



ଚାଳିଶି ବର୍ଷ ପୂର୍ବେ ବିଲାତରେ ଆଜ କାଲି ଅପେକ୍ଷା ଅତି ଅଳ୍ପ ଭାରତୀୟ ଛାତ୍ର ଥିଲେ । ବିବାହ କରିଥିଲେ ମଧ୍ୟ ଅବିବାହିତ ବୋଲି ଭଣ୍ଡି କହିବା ସେମାନଙ୍କର ଅଭ୍ୟାସ । ବିଲାତରେ ସମସ୍ତ ସ୍କୁଲ କିମ୍ବା କଲେଜ ଛାତ୍ର ଅବିବାହିତ । ଏକ ସମୟରେ ପଢ଼ା ଓ ବିବାହିତ ଜୀବନ ମେଳ ଖାଏ ନାହିଁ । ପୂର୍ବକାଳରେ ଆମ୍ଭର ସେହି ପ୍ରଥା ଥିଲା; ଛାତ୍ର ମାନେ ବ୍ରହ୍ମଚାରୀ ରୂପେ ପରିଚିତ ଥିଲେ । କିନ୍ତୁ ଆଜକାଲି ଆମ୍ଭର ଯେ ବାଲ୍ୟ ବିବାହ ପ୍ରଥା ଅଛି ବିଲାତରେ ତାହା ଏକାବେଳେ ଅଗୋଚର । ସୁତରାଂ ବିଲାତ ଅଧିବାସୀ ଭାରତୀୟ ଛାତ୍ରମାନେ ବିବାହିତ ବୋଲି ସ୍ୱୀକାର କରିବାକୁ ଲଜ୍ଜା ବୋଧ କରୁଥିଲେ । ଏହି କପଟତାର ଅନ୍ୟ ଏକ କାରଣ ଥିଲା; ସତ୍ୟଟା ପ୍ରକାଶ ପାଇଲେ ଯେଉଁ ପରିବାରରେ ସେମାନେ ଥାଆନ୍ତି ସେହି ପରିବାରର ଯୁବତୀମାନଙ୍କ ସହିତ ଖେଳା ବୁଲା କରିବା ଅସମ୍ଭବ ହୋଇ ପଡ଼ିବ ବୋଲି ସେମାନଙ୍କର ଭୟ । ଉକ୍ତ ଲୀଳାଖେଳା ନ୍ୟୂନାଧିକ ପରିମାଣରେ ସରଳ ଓ ଦୋଷଶୂନ୍ୟ । ଅଭିଭାବକମାନେ ମଧ୍ୟ ତାକୁ ପ୍ରଶ୍ରୟ ଦେଉଥିଲେ; ଏବଂ ପ୍ରତ୍ୟେକ ଯୁବକ ନିଜର ସଙ୍ଗିନୀ ବାଛିବା ଦୃଷ୍ଟିରେ ଯୁବକ ଓ ଯୁବତୀମାନଙ୍କ ମଧ୍ୟରେ ସେହିପରି ମିଳନ ବିଲାତବାସୀଙ୍କ ପକ୍ଷେ ନିତାନ୍ତ ଆବଶ୍ୟକ ହୋଇ ଥାଇପାରେ । ସେ ଯାହା ହେଉ, ଭାରତୀୟ ଯୁବକମାନେ ବିଲାତରେ ପ୍ରବେଶ କଲାକ୍ଷଣି ଇଂରେଜ ଯୁବକ ସୁଲଭ ସେହିପରି ସମ୍ପର୍କରେ ମାତିଲେ ପରିଣାମଟା ଭୟାନକ ହେବା ସମ୍ଭବ ଓ ଅନେକ ସମୟରେ ସେହିପରି ହେବା ମଧ୍ୟ ଦେଖାଯାଇଅଛି । ମୁଁ ଦେଖିଲି ଆମ୍ଭର ଯୁବକ-

ମାନେ ସେହି ପ୍ରଲୋଭନର ବଶତା ସ୍ୱୀକାର କରି ପାରିଥିଲେ ଏବଂ କେବଳ ସାଙ୍ଗ ଲୋକରେ ସେମାନେ ଅପବିତ୍ର ଜୀବନ ବାଛି ନେଉଥିଲେ । ସେହି ମିଳନ ସତ୍ତ୍ୱ ଇଂରେଜ ଯୁବକମାନଙ୍କ ପକ୍ଷେ ସରଳ ଓ ନିର୍ଦ୍ଦୋଷ ବିବେଚିତ ହେଲେହେଁ ଭାରତୀୟ ଯୁବକମାନଙ୍କ ପକ୍ଷେ ତାହା ଅସଙ୍ଗତ । ମୁଁ ମଧ୍ୟ ସେହି ସଂଗ୍ରାମରେ ପଡ଼ିଥିଲି । ବିବାହ ପରେ ଗୋଟିଏ ପୁତ୍ର ଜନ୍ମ ହୋଇ ସାରିଥିଲେହେଁ ମୁଁ ଜଣେ ଅବିବାହିତ ବୋଲି ପେଷନା ଦେଖାଇବାକୁ କିଛି କୁଣ୍ଠା ବୋଧ କଲିନାହିଁ, କିନ୍ତୁ ଏହି କପଟତା ଯୋଗୁଁ ମୁଁ ସୁଖୀ ହୋଇ ନଥିଲି । ମୁଁ ଭାବୁଛି ମୋର ଲାଜୁକତା ଓ ମୌନଭାବ କେବଳ ମୋତେ ଅଗାଧ ସମୁଦ୍ର ପ୍ରବେଶରୁ ରକ୍ଷା କରିଥିଲା । ମୁଁ ଯଦି କାହା ସହିତ କଥା ନହୁଏ କୌଣସି ବାଳିକା ମୋ ସହିତ ମଧ୍ୟ କଥା ହେବା କିମ୍ବା ବୁଲି ବାହାରିବା ଅନୁଚିତ ମନେ କରିବା ସ୍ୱାଭାବିକ ।

ମୋର ଭୀରୁତା ସହିତ ଲଜ୍ଜାର ସାମଞ୍ଜସ୍ୟ ଥାଏ । ମୁଁ ବେଣ୍ଟନର ( Ventnor ) ର ଯେଉଁ ପରିବାରରେ ଥିଲି ସେହିପରି ପରିବାରମାନଙ୍କରେ ଏକପ୍ରଥା ଥାଏ ଯେ, ପରିବାରର ଝିଅମାନେ ବନ୍ଧୁମାନଙ୍କୁ ବୁଲାଇ ନେଇଥାନ୍ତି । ମୁଁ ଥିବା ଘରର ଗୋଟିଏ ଝିଅ ମୋତେ ଦିନେ ବେଣ୍ଟନର ଚତୁର୍ଦ୍ଦିଗ ବେଷ୍ଟିତ ଏକ ମନୋହର ପାହାଡ ମାଳାକୁ ନେଲେ । ମୁଁ କିମ୍ଭ ଚାଲିବା ବ୍ୟକ୍ତି ନୁହେ, କିନ୍ତୁ ମୋର ବନ୍ଧୁ ଅପେକ୍ଷାକୃତ ଶୀଘ୍ର ଚାଲି ପାରୁଥିଲେ ଓ ଚାଲିଲା ବେଳେ ମୋତେ ଓଠାର ଓଠାର କଥା କହି କହି ଯାଉଥିଲେ । ସମୟ ସମୟରେ ତାଙ୍କ କଥାକୁ ଧୀର ଭାବେ ମୁଁ "ହଁ" କିମ୍ବା 'ନାହିଁ' କରେ ଓ ଯଦି ବଳପଡ଼ିଲା "ହଁ ବଡ ସୁନ୍ଦର" ବୋଲି ଉତ୍ତର ଦେଇଥାଏ । ପକ୍ଷୀ ପରି ସେ ଉଡ଼ି ଚାଲି ଯାଉଥିଲେ ମୁଁ କିନ୍ତୁ କେବେ ଘରକୁ ଫେରିବି ସେହି କଥା ଭାବୁଥାଏ । ଏହିପରି ଯାଉ ଯାଉ ପରିଛେ-

ଷରେ ପାହାଡ଼ର ଶିଖର ଉପରକୁ ଉଠିଲି । କିନ୍ତୁ କପରି ତଳକୁ ଓହ୍ଲାଇ-ବାକୁ ହେବ ତାହା ଏକ ସମାସ୍ୟା ପରି ହେଲା । ଚଞ୍ଚଳା, ଦ୍ରୁତଗାମିନୀ ଓ ପଂଚଶ ବର୍ଷ ବୟସ୍କା ଯୁବତୀ ନିଜର ବହି ଉଚ୍ଚ ଜୋତା ସହେ ପାହାଡ ଉପରୁ ଶର ପରି ତଳକୁ ଉତ୍ତର ପାରଥିଲେ । କିନ୍ତୁ ତଳକୁ ଖସିବା ପାଇଁ ଲଜ୍ଜାବନତ ମୁଖରେ ମୁଁ ହଇରାଣ ହେଉଥିଲି । ସେ ପାହାଡ ତଳେ ଛିଡା ରହି ମୋତେ ଦେଖି ହସୁଥାନ୍ତି, ଠାହ୍ଉଲ କରୁଥାନ୍ତି ଏବଂ ସାହାଯ୍ୟ କରିବା ପାଇଁ କହୁଥାନ୍ତି । ଏତେଦୂର ଭୀରୁ ବୋଲି ମୁଁ କପରି ପରଚୟ ଦେଅନ୍ତି ? ସମସ୍ତ ସମୟରେ ହାମୁଡ଼ି ହାମୁଡି ବଡ କଷ୍ଟରେ କିନ୍ତୁ ତଳକୁ ବାହାର ଆସିଲି । "ସାବାସ୍" କହି ସେ ବେଶି ହସି ମୋତେ ଅନ୍ତର ଲଜ୍ଜିତ କଲେ — କରିବା ଉଚିତ ମଧ୍ୟ ।

ସବୁଠାରେ ମୁଁ କ୍ଷତଗ୍ରସ୍ତ ହେଉଥିଲି — କାରଣ ଭଗବାନଙ୍କର ଇଚ୍ଛା ମୁଁ ଯେପରି "ଅସତ୍ୟରୂପ ଦୁଷ୍ଟ ବ୍ରଣ"ରୁ ରକ୍ଷାପାଏ । ମୁଁ ଥରେ ବ୍ରିଗ୍‌ଠନଠାକୁ ଯାଇଥିଲି — ବେଣ୍ଟନର ପରି ତାହା ଅନ୍ୟ ଏକ ସ୍ଥାନ, ଏହା କିନ୍ତୁ ବେଣ୍ଟନରଠାରୁ ଯିବା ପୂର୍ବର ଘଟଣା । ସେଠାରେ ଗୋଟିଏ ହୋଟେଲରେ ଜଣେ ମଧ୍ୟବୟ୍ ବୃଦ୍ଧା ବିଧବାଙ୍କ ସହିତ ଦେଖା ହୋଇଥିଲା, ଏହା ମୋର ବିଲାତ ଅଧିବାସ ପ୍ରଥମ ବର୍ଷର କଥା । ହୋଟେଲରେ ଯେଉଁ ଖାଦ୍ୟ ସାମଗ୍ରୀ ଦିଆଯାଏ ସେସବୁର ନାଆଁ ଫରାସି ଭାଷାରେ କହୁଥାନ୍ତି, ସୁତରାଂ ମୁଁ ବୁଝି ପାରୁ ନଥିଲି । ସେହି ଭଦ୍ର ମହିଳା ଯେଉଁ ମେଜା ନିକ-ଟରେ ବସିଥିଲେ ମୁଁ ମଧ୍ୟ ସେହିଠାରେ ବସି ଥିଲି । ମୁଁ ଜଣେ ଅପରଚିତ, ସୁତରାଂ ବଡବ୍ୟସ୍ତ ହେବା ଦେଖି ମୋତେ ସାହାଯ୍ୟ କରିବା ପାଇଁ ସେ ସ୍ୱତଃ ପ୍ରବୃତ୍ତ ହେଲେ । ସେ କହିଲେ "ତୁମେ ଜଣେ ଅପରିଚିତ, ସେହେତୁ କାହିଁକି ବ୍ୟଥିତ ହେବା ଦେଖୁଛି । କିଛି ମଗାଉ ନାହିଁ କାହିଁକି ?"

ସାମଗ୍ରୀର ନାଆଁ ଉଚ୍ଚାରଣ କରିବା ମୁଁ ଶିଖିଥିଲି ଓ ନିକଟସ୍ଥ ଗୃହଗଠାରୁ ବୁଝିଥିଲି ଯେ ଖାଦ୍ୟଜିନିଷରେ କି କି ପଦାର୍ଥ ମିଶି ଅଛି । ବୃଦ୍ଧା ମହିଳା ସେତେବେଳେ ମୋତେ ପ୍ରଶ୍ନ କରିଥିଲେ । ତାଙ୍କୁ ଧନ୍ୟବାଦ ଦେଲି ଓ ମୋର ଅସୁବିଧା କଥା ବୁଝାଇବାକୁ ଯାଇ କହିଲି, ଖାଦ୍ୟ ସାମଗ୍ରୀର-ନାଆଁ ସବୁ ଫରାସି ଭାଷାରେ କହିବା ଯୋଗୁ କେଉଁ ଜିନିଷ ଗୁଡ଼ିକ ନିରାମିଷ ତାହା ମୁଁ ଜାଣିପାରୁନାହିଁ ।

ସେ କହିଲେ, 'ତେବେ ମୁଁ ତୁମକୁ ସାହାଯ୍ୟ କରିବି । ତୁମେ କି କି ଜିନିଷ ଖାଇବା କଥା ତାହା ମୁଁ ବୁଝାଇ କହିବି ।' କୃତଜ୍ଞତାର ସହିତ ମୁଁ ତାଙ୍କ ସାହାଯ୍ୟ ଗ୍ରହଣ କଲି । ଏହି ଘଟଣାଟି ମୋର ଏକ ପରିଚୟର ପ୍ରାରମ୍ଭ । କିଛିଦିନ ପରେ ତାହା ବନ୍ଧୁତାରେ ପରିଣତ ହୋଇ ମୋର ସାରା ବିଲାତ ଅଧିବାସ କାହିଁକି ତାଉପରୁ ମଧ୍ୟ ଅନେକଦିନ ପର୍ଯ୍ୟନ୍ତ ରହିଥିଲା । ସେ ମୋତେ ତାଙ୍କର ଲଣ୍ଡନ ଠିକଣା ଦେଇ ଭୋଜନ ସକାଶେ ପ୍ରତି ରବିବାର ଦିନ ତାଙ୍କ ଘରଠାକୁ ଯିବା ପାଇଁ ଆମନ୍ତ୍ରଣ କଲେ, ଅନ୍ୟ କୌଣସି ବିଶେଷ ସମୟରେ ମଧ୍ୟ ଆମନ୍ତ୍ରଣ କରିଥାନ୍ତି, ଲାଜୁକତା ଅତିକ୍ରମ କରିବାରେ ସାହାଯ୍ୟ କରିଥାନ୍ତି ଓ ଯୁବତୀମାନଙ୍କ ମହଲରେ ମୋତେ ପରିଚିତ କରାଇ ସେମାନଙ୍କ ସହିତ ମୋତେ କଥାବାର୍ତ୍ତା କରାଇ ଥାନ୍ତି, ଏହି କଥୋପକଥନ ଲାଗି ବିଶେଷତଃ ଜଣେ ଯୁବତୀ ସୁପ୍ରସିଦ୍ଧା । ସେ ଉକ୍ତ ବୃଦ୍ଧାଙ୍କ ସହିତ ଥାଆନ୍ତି ଏବଂ ଅନେକ ସମୟରେ ଆମ୍ଭେ ଦୁହେଁ ଏକନ୍ତ ରହିବା ପାଇଁ ଅନୁମତି ପାଇଥାଉଁ ।

ପ୍ରଥମତଃ ଏହାସବୁ ମୋତେ ବଡ଼ କଷ୍ଟ ବୋଧ ହେଲା । ମୁଁ କିଛି କଥବାର୍ତ୍ତା ଆରମ୍ଭ କରି ପାରିଲିନାହିଁ କିମ୍ବା ଉପହାସ କରି ପାରୁନଥିଲି । ସେ କିନ୍ତୁ ମୋତେ ବାଟ ଦେଖାଇ ଦେଲେ । ତାହା ଶିଖିବା

ଆରମ୍ଭ କଲି ଓ ଅଳ୍ପ ଦିନ ମଧ୍ୟରେ ପ୍ରତି ରବିବାର ଦିନକୁ ଗୃହିଁବାକୁ ଲାଗିଲି ଓ ଉକ୍ତ ଯୁବତୀଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ଭଲ ଲାଗିଲା ।

ପ୍ରତିଦିନ ଉକ୍ତ ବୃଦ୍ଧା ବିସ୍ତୃତ ଭାବେ ତାଙ୍କ ଜାଲଟି ବିସ୍ତାର କରିବାକୁ ଲାଗିଲେ । ଆମ୍ଭମାନଙ୍କର ମିଳନରେ ସେ ସନ୍ତୁଷ୍ଟା ହେଲେ । ସମ୍ଭବତଃ ଆମ୍ଭ ସମ୍ବନ୍ଧେ ସେ କିଛି ମନ୍ତ୍ରଣା କରୁଥିଲେ ।

ମୁଁ ବଡ଼ ସଙ୍କଟରେ ପଡ଼ିଲି । ମନେକଲି, "ବିବାହ ହୋଇ ସାରିଛି ବୋଲି ଯଦି ସେହି ଭଦ୍ର ମହିଳାଙ୍କୁ କହି ଦେଇଥାନ୍ତି, ତାହା ହେଲେ ସେ ଆମ୍ଭ ଦୁହିଙ୍କ ମଧ୍ୟରେ ପ୍ରେମର ନିଯୁକ୍ତି ସମ୍ବନ୍ଧେ ଭାବି ନଥାନ୍ତେ, କିନ୍ତୁ ଯାହା ହେଉ ପ୍ରତିକାର କରିବା ପାଇଁ ବେଶି ଡେରି ହୋଇନାହିଁ । ମୁଁ ଯଦି ସତକଥାଟା କହି ଦିଏ, ଭବିଷ୍ୟତରେ ଆଉ ବେଶି ଦୁଃଖରୁ ରକ୍ଷା ପାଇବି—" ଏହି ସବୁ ଭାବ ମନରେ ରଖି ନିମ୍ନଲିଖିତ ମର୍ମରେ ତାଙ୍କଠାକୁ ଖଣ୍ଡିଏ ପତ୍ର ଲେଖିଲି ।

"ବ୍ରାଇଟନଠାରେ ଆମ୍ଭର ସାକ୍ଷାତ ହେବା ଦିନୁଁ ତୁମ୍ଭେ ମୋ ପ୍ରତି ବଡ଼ ପ୍ରସନ୍ନା । ଏପରିକି ନିଜ ମାତୃ ତୁଲ୍ୟ ମୋତେ ପାଳନ କରିଅଛ । ମୁଁ ବିବାହ କରିବା ମଧ୍ୟ ତୁମ୍ଭର ଭାବନା ଏବଂ ସେହି ଉଦ୍ଦେଶ୍ୟରେ ତୁମ୍ଭେ ମୋତେ ଯୁବତୀମାନଙ୍କ ସହିତ ପରିଚିତ କରାଉଅଛ । ଆଉ କଥା ସବୁ ବେଶି ଦୂର ନନେଇ ସ୍ୱୀକାର କରୁଅଛି ଯେ, ମୁଁ ତୁମ ସ୍ନେହର ପାତ୍ର ନୁହେଁ । ତୁମ ସହିତ ଦେଖା କରିବା ସମୟରେ ମୁଁ ବିବାହ କରି ସାରିଛି ବୋଲି କହି ଦେବା ଉଚିତ ଥିଲା । ବିଲାତ ଅଧିବାସୀ ଭାରତୀୟ ଛାତ୍ରମାନେ ସେମାନଙ୍କର ବିବାହ କଥାଟା ଛପାଇ ରଖନ୍ତି ଜାଣି ମୁଁ ମଧ୍ୟ ସେମାନଙ୍କ, ଅନୁକରଣ କରିଥିଲି । ମୁଁ ଏବେ ଦେଖୁଛି ସେହିପରି କରିବା ଉଚିତ ନଥିଲା । ଆହୁରି ମଧ୍ୟ କହିପାରେ ଯେ, ମୁଁ ଯେତେବେଳେ

ବାଳକ ଥିଲି ମୋର ସେତିକି ବେଳୁ ବିବାହ ହୋଇ ସାରିଅଛି । ତୁମ-ଠାରୁ ଏହି ବିଷୟଟି ଏତେଦିନ ଯାଏ ଘୋଡାଇ ରଖିବା ଲାଗି ମୁଁ ବଡ଼ ଦୁଃଖିତ । କିନ୍ତୁ ମୋର ଏତିକି ଆନନ୍ଦ ଯେ ସତ୍ୟଟା ପ୍ରକାଶ କରିବା ପାଇଁ ଭଗବାନ ମୋତେ ଏବେ ସାହସ ଦେଇଅଛନ୍ତି । ମୋତେ କ୍ଷମା କରିବତ ? ତୁମେ ଯେଉଁ ଯୁବତୀଙ୍କ ସହିତ ମୋତେ ପରିଚିତ କରାଇଥିଲ, ପ୍ରତିଜ୍ଞା କରୁଛି ତାଙ୍କ ପ୍ରତି ମୁଁ ଅସଙ୍ଗତ ବ୍ୟବହାର କରିନାହିଁ, ମୋର ସୀମା କେତେଦୂର ମୁଁ ତାହା ଜାଣିଥିଲି, ମୋର ବିବାହ କଥା ନଜାଣି ତୁମେ ସ୍ୱଭାବତଃ ଇଚ୍ଛାକଲ ଯେ ଆମ୍ଭେ ଦୁହେଁ ପ୍ରେମ ନିଯୁକ୍ତି କରିବୁଁ । ବର୍ତ୍ତମାନ ଅବସ୍ଥାରୁ କଥା ସବୁ ଆଉ ବେଶିଦୂର ନଯିବା ଉଚିତ ମନେ-କରି ତୁମକୁ ବାସ୍ତବ କଥାଟି କହୁଛି ।

ଏହିପରି ପାଇ ଯଦି ତୁମ୍ଭେ ମନେକର ଯେ ମୁଁ ତୁମ ଆତିଥ୍ୟର ପାତ୍ର ନୁହେ, ସ୍ୱୀକାର କରୁଛି ମୁଁ ତାହା ଅନୁଚିତ ମନେ କରିବି ନାହିଁ । ତୁମର ମୋପ୍ରତି ଯେ ଦୟା ଓ ମମତା ତଦ୍ୱାରା ମୋତେ ତୁମେ ଆଜୀବନ କୃତଜ୍ଞତାରୂପ ଋଣରେ ଋଣୀ କରାଇଅଛ । ଯଦି ଏହା ପାଇଲା ପରେ ମଧ୍ୟ ମୋତେ ତୁମ୍ଭେ ପରିହାର ନକରି ପୂର୍ବପରି ତୁମ ଆତିଥ୍ୟର ପାତ୍ର ମନେ କର, ମୁଁ ନାନା କଷ୍ଟସହେ ତାହା ଗ୍ରହଣ କରିବି, ସ୍ୱଭାବତଃ ଆନନ୍ଦିତ ହେବି, ଓ ତାହା ତୁମ ଅତିରିକ୍ତ ଦୟାର ଚିହ୍ନ ବୋଲି ଭାବନା କରିବି ।"

ପାଠକେ ଜାଣି ରଖନ୍ତୁ ଯେ ମୁଁ ଏହିପରି ଗୋଟିଏ ଚିଠି ହଠାତ୍ ଲେଖି ପାରି ନଥିବି; ଗୋଟିକ ପରେ ଗୋଟିଏ ନକଲ ଲେଖିବା ପାଇଁ ଅନେକ ସମୟ ଲାଗିଥିବା କଥା । ସେ ଯାହାହେଉ ମୁଁ ଯେଉଁ ବୋଝ ଯେନ ଭାରପ୍ରାପ୍ତ ହେଉଥିଲି ତାହା କିନ୍ତୁ ଦୂର ହୋଇଗଲା । ଫେରନ୍ତା ଡାକରେ ନିମ୍ନୋକ୍ତ ପ୍ରକାରେ ତାଙ୍କର ଉତ୍ତର ଆସିଲା :—

"ତୁମ ସରଳ ପତ୍ରଟି ମୁଁ ପାଇଛି । ଆମେ ଦୁହେଁ ବଡ ଆନନ୍ଦିତ ହେଲୁ ଓ ତାହା ପଢ଼ି ହୃଦୟର ସହିତ ହସିବାକୁ ଲାଗିଲୁ । ଯେଉଁ ଅସତ୍ୟ ଲାଗି ତୁମେ ଦୋଷୀ ବୋଲି କହୁଅଛ ତାହା କ୍ଷମଣୀୟ । କିନ୍ତୁ ବିଷୟ ସବୁର ପ୍ରକୃତ ଅବସ୍ଥା ସମ୍ବନ୍ଧେ ଜଣାଇ ଦେଇଅଛ-ବଡ ଭଲକଥା । ଏବେ ମୁଁବା ତୁମଙ୍କୁ ଆମନ୍ତ୍ରଣ କରୁଛି, ନିଶ୍ଚୟ ଆଗାମୀ ରବିବାର ଦିନ ତୁମକୁ ଅପେକ୍ଷା କରିଥିବୁ ଏବଂ ତୁମର ବାଲ୍ୟ-ବିବାହ କଥା ଶୁଣିବା ଲାଗି ଓ ତୁମକୁ ଦେଖି ହସି ଆନନ୍ଦ ଅନୁଭବ କରିବାଲାଗି ଗୃହିଁ ବସି ଥିବୁ । ଏହି ଘଟଣା ଫଳରେ ଯେ ଆମର ବନ୍ଧୁତାରେ କିଛି ହେଲେ ବ୍ୟତିକ୍ରମ ଘଟିନାହିଁ ଏହା କଣ ତୁମଠାରେ ପ୍ରତିଜ୍ଞା କରିବା କଥା ?"

ଏହିପରି ମୁଁ ଅସତ୍ୟରୂପ ବ୍ରଣରୁ ରକ୍ଷା ପାଇଥିଲି ଓ ସେହିଦିନଠାରୁ ଆବଶ୍ୟକ ପଡିଲେ ମୋର ବିବାହିତ ଅବସ୍ଥା ସମ୍ବନ୍ଧେ ଯେ କୌଣସିଠାରେ ହେଲେ କହିବାକୁ କୁଣ୍ଠା ବୋଧ କଲିନାହିଁ ।

—※ଃ ✝ ଃ※—

## ବିଂଶ ପରିଚ୍ଛେଦ

( ନାନାଧର୍ମରେ ପରିଚୟ ଲାଭ )

ମୋର ବିଲାତ ଜୀବନର ଦ୍ୱିତୀୟ ବର୍ଷ ଶେଷ ଆଡକୁ ଦୁଇ ଜଣ ପ୍ରତ୍ୟକ୍ଷ-ତତ୍ତ୍ୱ-ବାଦୀ ( Theosophist ) ଙ୍କ ସହିତ ଦେଖାହେଲା । ସେ ଦୁହେଁ ଦୁଇ ଭାଇ ଓ ଅବିବାହିତ । ଗୀତାର ମହାତ୍ମ୍ୟ ସମ୍ବନ୍ଧେ ସେମାନେ ମୋତେ କହିଲେ । ସର ଏଡ୍‌ୱିନ୍ ଆର୍‌ନଲ୍‌ଡ୍ ଅନୂଦିତ "ସ୍ୱର୍ଗୀୟ ଗାନ" ( The Song Celestial ) ପଢିଲା ବେଳେ ତାଙ୍କ ସହ ମୂଳ ଗ୍ରନ୍ଥ ପଢ଼ିବା ପାଇଁ ମୋତେ ସେମାନେ ଆମନ୍ତ୍ରଣ କରିଥିଲେ । ସଂସ୍କୃତ କିମ୍ବା

ଗୁଜରାଟରେ ମୁଁ ସେହି ସ୍ୱର୍ଗୀୟ ପଦ୍ୟଟି ନପଢ଼ିଥିବା ଯୋଗୁଁ ବଡ଼ ଲଜ୍ଜିତ ହେଲି, ତଥାପି ମୁଁ ଗୀତା ପଢ଼ନାହିଁ ବୋଲି ତାଙ୍କୁ ମୁକ୍ତ କଣ୍ଠରେ କହି ପାରିଥିଲି ଓ ତାଙ୍କ ସହିତ ଗୀତାଧ୍ୟୟନ କରିବା ପାଇଁ ସ୍ୱୀକାର କଲି । ସଂସ୍କୃତରେ ମୋର ବେଶି ପ୍ରବେଶ ନଥିଲେ ମଧ୍ୟ ପ୍ରକୃତ ଅର୍ଥ ଦେବାକୁ ଯାଇ ଅନୁବାଦରେ କେଉଁଠି ପ୍ରମାଦ ରହିଯାଇଅଛି, ତାହା ମୂଳ ଗ୍ରନ୍ଥ ପଢ଼ି ବୁଝିପାରିବି ବୋଲି ଆଶା କଲି । ସୁତରାଂ ସେମାନଙ୍କ ସହିତ ଗୀତା ପଢ଼ି-ବା ଆରମ୍ଭ କଲି । "ଯଦି କେହି ଇନ୍ଦ୍ରିୟ ଅଭିଳଷିତ ବସ୍ତୁ ନେଇ ଭାବନା କରେ, ସେଥିରୁ ଆକର୍ଷଣୀଶକ୍ତି ଜାତ ହୁଏ, ଆକର୍ଷଣରୁ ଆକାଂକ୍ଷା ଜନ୍ମେ, ଉକ୍ତ ଆକାଂକ୍ଷା ଭୟଙ୍କର ଆସକ୍ତି ରୂପେ ପ୍ରକାଶ ପାଏ, ଆସକ୍ତିରୁ ଅସାବ-ଧାନତାର ଉତ୍ପତ୍ତି ହୁଏ, ସ୍ମରଣ ଶକ୍ତି କାହିଁକି ସବୁ କଥା ଇନ୍ଦ୍ରିୟରୂପ ଶତ୍ରୁର ହସ୍ତଗତ ହୋଇପଡ଼େ, ପବିତ୍ର ଉଦ୍ଦେଶ୍ୟ ସବୁ ବହିଷ୍କୃତ ହୋଇଯାଏ, ମନ କ୍ଷୀଣପ୍ରଭ ହୁଏ; କାର୍ଯ୍ୟ, ମନ, ଓ ମନୁଷ୍ୟତ୍ୱର ସୁଦ୍ଧା ସେଥିରୁ ନିସ୍ତାର ନଥାଏ"—ଦ୍ୱିତୀୟ ଅଧ୍ୟାୟର ଏହିପରି କେତୋଟି ଶ୍ଳୋକ ମୋ' ମନରେ ଲାଗି ରହିଗଲା—ଆଜି ସୁଦ୍ଧା ମୋ' କର୍ଣ୍ଣରେ ତାହା ନିନାଦିତ ହେଉଅଛି । ବହିଟି ଗୋଟିଏ ଅମୂଲ୍ୟ ରତ୍ନ ପରି ମୋତେ ବୋଧ ହେଲା । ସେହି ଦିନ ଠାରୁ ମୋର ଏହି ଅନୁଭୂତି ବଢ଼ିଅଛି ଏବଂ ତାହାର ଫଳରେ ବହିଟି ସତ୍ୟର ତତ୍ତ୍ୱଜ୍ଞାନ ଲାଭ ସକାଶେ ଏକ ମାତ୍ର ଉତ୍ତମ ଗ୍ରନ୍ଥ ବୋଲି ମୁଁ ମନେକରେ । ଦୁଃଖ ସମୟ ମାନଙ୍କରେ ତାହା ମୋର ଅଶେଷ ଉପକାର ସଂସାଧନ କରିଅଛି । ବହିଟିର ପ୍ରାୟ ସମୁଦାୟ ଅନୁବାଦ ମୁଁ ପଢ଼ି ସାରିଅଛି । ସର୍ ଏଡୱିନ ଆରନାଲଡଙ୍କ ଅନୁବାଦଟି ସର୍ବୋତ୍କୃଷ୍ଟ ବୋଲି ମୁଁ ମନେ କରେ । ମୂଳ ଗ୍ରନ୍ଥରୁ ସେ କିଛି ସ୍ୱତନ୍ତ୍ର ନାହାନ୍ତି ଓ ତାହା ଅନୁବାଦ ବୋଲି ମଧ୍ୟ ଜଣାପଡ଼େ ନାହିଁ । ମୁଁ ଏମାନଙ୍କ ସହିତ ଗୀତା ପାଠ କରିଥିଲେହେଁ

ତାହା ପ୍ରକୃତ ଅଧ୍ୟୟନ ବୋଲି ମୁଁ କହି ନପାରେ । କେତେ ବର୍ଷପରେ ଗୀତାକୁ ଦୈନିକ ପାଠ୍ୟ ପୁସ୍ତକ ରୂପେ ବ୍ୟବହାର କଲି । ସର ଏଡୱିନ୍ ଆରନୋଲଡ କୃତ "ଏସିଆର ଆଲୋକ" [ Light of Asia ] ନାମକ ବହି ଖଣ୍ଡି ପଢ଼ିବା ସକାଶେ ସେ ଦୁହେଁ ପରାମର୍ଶ ଦେଲେ । ସେ ସମୟ ଯାଏଁ ମୁଁ ଜାଣିଥିଲି, ଏଡୱିନ୍ କେବଳ 'ସ୍ୱର୍ଗୀୟ ଗାନ' (The Song Celestial) ର ଲେଖକ ଥିଲେ । ଭଗବତ୍ ଗୀତା ଅପେକ୍ଷା ଏହି ବହିଟି ମୁଁ ମନଯୋଗ କରି ପଢିଲି । ମୁଁ ଯେତେବେଳେ ତାହା ଆରମ୍ଭ କଲି ଶେଷ ନକରି ଛାଡ଼ି ପାରିଲି ନାହିଁ । ଥରେ ସେମାନେ ମୋତେ ବ୍ଲେବଟ୍‌ସ୍କିଙ୍କ ବସାକୁ ନେଇ ଯେଉଁଠାରେ ଶ୍ରୀମତୀ ବ୍ଲେବସ୍କି ଓ ଶ୍ରୀମତୀ ବେସାନ୍ତଙ୍କ ସହିତ ମୋତେ ପରିଚିତ କରାଇଥିଲେ । ଶ୍ରୀମତୀ ବେସାନ୍ତ ଅଳ୍ପଦିନ ପୂର୍ବେ ପ୍ରତ୍ୟକ୍ଷ ତତ୍ତ୍ୱବାଦୀ ସଂଘରେ ନାମ ଲେଖାଇ ଥିଲେ । ତାଙ୍କ ନୂତନ ଧର୍ମ ଗ୍ରହଣ ବିଷୟ ନେଇ ଯେଉଁ ସବୁ ସମାଲୋଚନା ଲାଗିଥାଏ, ତାହା ମୁଁ ମନଯୋଗ ପୂର୍ବକ ଦେଖୁଥିଲି । ଉକ୍ତ ସଂଘରେ ଭର୍ତ୍ତି ହେବା ପାଇଁ ମୋର କେତେକ ବନ୍ଧୁ ଉପଦେଶ ଦେଲେ; କିନ୍ତୁ ମୁଁ ଅସ୍ୱୀକୃତ ହୋଇ ତାଙ୍କୁ ନମ୍ରଭାବରେ କହିଲି, "ମୋର ନିଜ ଧର୍ମରେ ଅତି ଅଳ୍ପ ଜ୍ଞାନ ଅଛି । ଅତଏବ ଅନ୍ୟ କୌଣସି ଧର୍ମ ସମ୍ବନ୍ଧୀୟ ସଂଘରେ ଭର୍ତ୍ତି ହେବା ମୋର ଇଚ୍ଛା ନୁହେ" । ଦୁଇ ଭାଇଙ୍କ ପ୍ରେରଣା ଯୋଗୁଁ ବ୍ଲେବସ୍କି କୃତ 'ତତ୍ତ୍ୱଜ୍ଞାନର ଚାବି' ( Key to Theosophy ) ନାମକ ବହି ଖଣ୍ଡି ପଢିଥିବା ମୋର ମନେ ଅଛି । ହିନ୍ଦୁ ଧର୍ମ ବିଷୟରେ ଯେଉଁ ସବୁ ବହି ଅଛି, ସେ ସବୁ ପଢ଼ିବା ପାଇଁ ଏହି ବହିଟି ମୋଠାରେ ବଡ ଆକାଂକ୍ଷା ଜନ୍ମାଇ ଥିଲା, ଓ ଖ୍ରୀଷ୍ଟଧର୍ମ ପ୍ରଚାରକମାନଙ୍କ ଠାରୁ ଶୁଣି, ହିନ୍ଦୁ ଧର୍ମଟା କେବଳ ଅନ୍ଧ ବିଶ୍ୱାସପୂର୍ଣ୍ଣ ବୋଲି ଯେ ଭାବୁଥିଲି, ମୋ ମନରୁ ସେହି ଭ୍ରାନ୍ତ ଧାରଣା ବିଦୂରିତ ହେଲା ।

ଠିକ୍ ସେହି ସମୟରେ ମୁଁ ଜଣେ ଖ୍ରୀଷ୍ଟଧର୍ମାବଲମ୍ବୀଙ୍କୁ ମ୍ୟେନ୍ଚେଷ୍ଟରର କୌଣସି ଏକ ନିରାମିଷ ହୋଟେଲରେ ଦେଖିଲି । ଖ୍ରୀଷ୍ଟଧର୍ମ ବିଷୟରେ ସେ ମୋତେ ବୁଝାଇ କହିଲେ । ମୋର ରାଜକୋଟ ଅନୁଭୂତି ତାଙ୍କ ଆଗରେ ବ୍ୟକ୍ତ କଲି । ତାହା ଶୁଣି ସେ ବ୍ୟଥିତ ହେଲେ । ସେ କହିଲେ, "ମୁଁ ଜଣେ ନିରାମିଷ ଭୋଜୀ ଓ ସୁରାପାନ କରେନାହିଁ । ଅନେକ ଖ୍ରୀଷ୍ଟିୟାନ ମାଂସ ଖାଆନ୍ତି ଓ ସୁରାପାନ କରନ୍ତି ସତ, କିନ୍ତୁ ମାଂସ ଭୋଜନ କିମ୍ବା ସୁରାପାନ ଶାସ୍ତ୍ର ପ୍ରଣୋଦିତ ନୁହେ । ଦୟାକରି ବାଇବଲ ପଢ଼ନ୍ତୁ" । ମୁଁ ତାଙ୍କର ଉପଦେଶ ଗ୍ରହଣ କଲି ଓ ସେ ମୋପାଇଁ ଖଣ୍ଡେ ବାଇବଲ ଆଣିଦେଲେ । ସେ ନିଜେ ବାଇବଲ ବିକୁଥିବା ମୋର ଅଳ୍ପ ମନେ ଅଛି, ଏବଂ ମୁ ମଧ୍ୟ ତାଙ୍କଠାରୁ ମାନଚିତ୍ର, ଧର୍ମ ସମ୍ବନ୍ଧ ଅଭିଧାନ ଓ ଅନ୍ୟାନ୍ୟ ସାହାଯ୍ୟ ଥିବା ବାଇବଲର ଗୋଟିଏ ସଂସ୍କରଣ କିଣିଥିଲି । ତାହା ପଢ଼ିବା ଆରମ୍ଭ କଲି, କିନ୍ତୁ ସମ୍ପ୍ରଦାୟ 'ଆଦିଭାଗ' ( Old Testament ) ଟି ପଢ଼ି ବୁଝି ପାରିଲି ନାହିଁ । 'ସୃଷ୍ଟି ବିବରଣ' ( Genesis ) ଅଧ୍ୟାୟଟି ପଢ଼ିଲି, ଓ ତାହାପରେ ଯେଉଁ ସବୁ ଅଧ୍ୟାୟ ଆସିଲା ତାହା ପଢ଼ି ମୋତେ ନିଦ ଲାଗିଗଲା । କିନ୍ତୁ କିଛି ବୁଝି ନଥିଲେ ହେଁ, କିମ୍ବା ପଢ଼ିବା ପାଇଁ ଇଚ୍ଛା ହେଉ ନଥିଲେହେଁ, ତାହା ପଢ଼ିଛି ବୋଲି କହିବା ସନ୍ତୋଷେ ସାହସ ହେବ ବୋଲି ବଡ଼ କଷ୍ଟରେ ଅନ୍ୟାନ୍ୟ ବହିଟିମାନ ପଢ଼ିଲି । 'ସଂଖ୍ୟା ବିବରଣ' ( Numbers ) ବହିଟି ପଢ଼ିବା ପାଇଁ ମୋର ଇଚ୍ଛା ହେଲା ନାହିଁ ।

'ଆଧୁନିକ ଭାଗ' ( New Testament ) ପଢ଼ି କିନ୍ତୁ ଭିନ୍ନ ଅନୁଭୂତି ଆସିଥିଲା । ବିଶେଷତଃ 'ପାହାଡ ଉପର ଉପଦେଶ' ( The Sermon on the Mount ) ବଡ଼ ହୃଦୟସ୍ପର୍ଶୀ ହୋଇଥିଲା । ଗୀତା ସହିତ ମୁଁ ତାହା ତୁଳନା କଲି । "କିନ୍ତୁ ମୁଁ ତୁମକୁ କହୁଛି, ଦୁଷ୍ଟ ଲୋକଙ୍କୁ

ବ୍ୟାଗାତ ଦେବନାହିଁ—ତୁମ ଦକ୍ଷିଣ ଗଣ୍ଡରେ ଯଦି କେହି ଚାପୁଡ଼ାଏ ବାଅନ୍ତି, ଅନ୍ୟଟି ମଧ୍ୟ ତାଙ୍କୁ ଦେଖାଇ ଦିଅ ଏବଂ କେହି ଯଦି ତୁମର ଅଙ୍ଗରଖା ନେଇ ଯାଏ ତାକୁ ଆଉ କିଛି ମଧ୍ୟ ଦାନ କର" ଏହି ଶ୍ଳୋକ-ଟିମାନ ପଢି ମୁଁ ଅପାର ଆନନ୍ଦ ଅନୁଭବ କରିଥିଲି ଓ ଶାମଲ ଭଟ୍ଟଙ୍କ "ପାଣିମନ୍ଦାକ ପାଇଁ ବନମସ୍ଥିରେ ଗୋଟିଏ ସୁନ୍ଦର ଭୋଜନ ଦିଅ"— ଇତ୍ୟାଦି କଥା ମୋର ମନେ ପଡ଼ିଲା । 'ଗୀତା', "ଏସିଆର ଆଲୋକ', ( Light of Asia ) ଓ ପର୍ବତ ଉପର ଉପଦେଶ' ( The Sermon on the Mount ) ଏ ସବୁର ଉପଦେଶ ଗୁଡିକରେ ସାମ୍ୟ ଅଛିକି ନାହିଁ ଜାଣିବା ପାଇଁ ମୋର ଅପରିପକ୍ୱ ମସ୍ତିଷ୍କ ସାହାଯ୍ୟରେ ବୁଝିବା ଚେଷ୍ଟା କଲି । ତ୍ୟାଗ କେବଳ ଉଚ୍ଚତମ ଧରଣର ଧର୍ମ ବୋଲି ମୁଁ ବେଶି ଅନୁଭବ କରିଥିଲି ।

ଏହି ପଢ଼ା ଯୋଗୁଁ ଅନ୍ୟାନ୍ୟ ଧର୍ମ ଉପଦେଷ୍ଟାଙ୍କ ଜୀବନୀ ପଢିବା ପାଇଁ ମୋର ଅଭିଳାଷ ଜନ୍ମିଲା । ଜଣେ ବନ୍ଧୁ କାରଲାଇଲଙ୍କ 'ବୀର ଓ ବୀର ପୂଜା' ( Heroes and Hero-worship )ବହିଟି ପଢ଼ିବା ପାଇଁ ପରାମର୍ଶ ଦେଲେ । 'ଭବିଷ୍ୟତ୍‌ବକ୍ତା ରୂପେ ବୀର' ( Hero as a Prophet ) ଶୀର୍ଷକ ଅଧ୍ୟାୟଟି ପଢିଲି; ମହମ୍ମଦଙ୍କ ମହାତ୍ମ୍ୟ, ପରାକ୍ରମ ଓ ସଂଯତ ଜୀବନ ସମ୍ବନ୍ଧେ ଜାଣି ପାରିଲି ।

ସେତେବେଳେ ମୁଁ ଧର୍ମ ସମ୍ବନ୍ଧେ ଏହାଠାରୁ ବଳି ଆଉ ବେଶି କିଛି ଜ୍ଞାନ ଲାଭ କରି ପାରିନଥିଲି । ପରୀକ୍ଷା ସକାଶେ ପଢୁଥିବା ଯୋଗୁଁ ବାଜେ ବିଷୟରେ ଅଭିଜ୍ଞତା ଲାଭ କରିବା ପାଇଁ ଆଦୌ ସମୟ ମିଳେ ନାହିଁ । କିନ୍ତୁ ଧର୍ମ ସମ୍ବନ୍ଧେ ବେଶି ପୁସ୍ତକ ପଢ଼ିବି ଓ ପ୍ରଧାନ ପ୍ରଧାନ ଧର୍ମର ପରିଚୟ ଲାଭକରିବି ବୋଲି ମନରେ ସ୍ଥିର କଲି ।

ନାସ୍ତିକତା ସମ୍ବନ୍ଧେ କପରି କିଛୁ ଜାଣିବି ବୋଲି ଭାବିବାକୁ ଲାଗିଲି । ପ୍ରତ୍ୟେକ ଭାରତବାସୀ ବ୍ରାଡ୍‌ଲା (Bradlaugh) ଙ୍କ ନାମ ଓ ତାଙ୍କ ତଥାକଥିତ ନାସ୍ତିକତା ସମ୍ବନ୍ଧେ ଜାଣିଥିବେ । ସେ ସମ୍ବନ୍ଧେ ମୁଁ ଖଣ୍ଡିଏ ବହି ପଢ଼ିଥିଲି; ବହିର ନାମଟି ଏବେ ସ୍ମରଣ ହେଉ ନାହିଁ । କିନ୍ତୁ ମୁଁ ନାସ୍ତିକତା ରୂପ ମରୁଭୂମି ପାର ହୋଇସାରିଥିଲି, ସୁତରାଂ ସେହି ବହି ପଢ଼ି କିଛି ଫଳ ହେଲାନାହିଁ । ଶ୍ରୀମତୀ ବେସାନ୍ତଙ୍କର ସେତେବେଳେ ବେଶି ଖ୍ୟାତି । ନାସ୍ତିକତା ଛାଡ଼ି ସେ ଆସ୍ତିକ ଧର୍ମ ଗ୍ରହଣ କରିଥିଲେ । ସେହେତୁ ନାସ୍ତିକତା ପ୍ରତି ମୋର ଘୃଣା ବଢିବାକୁ ଲାଗିଲା । ମୁଁ ତାଙ୍କ କର୍ତ୍ତୃକ 'କପରି ମୁଁ ପ୍ରତ୍ୟକ୍ଷ-ତତ୍ତ୍ୱ-ବାଦୀ ହେଲି' (How I became a Theosophist) ଶୀର୍ଷକ ବହିଟି ପଢିଥିଲି ।

ଠିକ ଏହି ସମୟରେ ବ୍ରାଡଲା ପରଲୋକ ପ୍ରାପ୍ତ ହେଲେ । ତାଙ୍କ ସମାଧି ଉତ୍ସବରେ ମୁଁ ଯୋଗ ଦେଇଥିଲି ଓ ମୋର ବିଶ୍ୱାସ ଲଣ୍ଡନରେ ଯେତେ ଭାରତବାସୀ ଥିଲେ, ସମସ୍ତେ ଯୋଗ ଦେଇ ଥିଲେ । ତାଂଙ୍କୁ ଶେଷ ସମ୍ମାନ ଦେବା ସକାଶେ କେତେକ ଧର୍ମୋପଦେଶକ ମଧ୍ୟ ଆସିଥିଲେ । ସ୍ମଶାନରୁ ଫେରିଲା ବେଳେ ରେଲଗାଡି ସକାଶେ ବାଟରେ ଅପେକ୍ଷା କରିବା ପାଇଁ ପଡ଼ି ଥିଲୁ । ସେତେବେଳେ ଜଣେ ନାସ୍ତିକ ଧର୍ମ-ବେତ୍ତା ପ୍ରଶ୍ନ ପରେ ଧର୍ମୋପଦେଶକ ମାନଙ୍କୁ ହଇରାଣ କରିବାକୁ ବସିଲେ ।

"ଆଚ୍ଛା ତୁମେ କ'ଣ ଈଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସକର?"

କୋମଳ ସ୍ୱରରେ ଜଣେ କହିଲେ "ହଁ, ମୁଁ ବିଶ୍ୱାସ କରେ" ।

'ପୃଥିବୀର ପରିଧି ୨୮୦୦୦ ମାଇଲ ବୋଲି ତୁମେ ମଧ୍ୟ ସ୍ୱୀକାର କରୁଛ ? "-ବୋଲି ନାସ୍ତିକ ଜଣକ ହସି ହସି ପ୍ରଶ୍ନ କଲେ ।

ଅନ୍ୟଜଣକ :—'ନିଶ୍ଚୟ' ।

ନାସ୍ତିକ :—"ତେବେ ତୁମ ଈଶ୍ୱରଙ୍କର ଆକାର ଓ ସେ କେଉଁଠାରେ ରହନ୍ତି ତାହା ଦୟାପୂର୍ବକ କହିବ?"

ଅନ୍ୟ ଜଣକ :—"ଆଚ୍ଛା, ଆମେ ଜାଣିଛୁ, ସେ ଆମ ଦୁହିଙ୍କ ଅନ୍ତରରେ ଅବସ୍ଥାନ କରି ଅଛନ୍ତି ।"

ନସ୍ତିକ —"ମୋତେ ଜଣେ ପିଲା ବୋଲି ଭାବନାକର ନାହିଁ,"—କହି ଯଶସ୍ୱୀ ମୁଖରେ ଆମ ଆଡକୁ ଚାହିଁଲେ ।

ଧର୍ମୋପଦେଶକ ନମ୍ରଭାବେ ନୀରବତା ଅବଲମ୍ବନ କଲେ ।

ଏହି କଥୋପକଥନ ଲାଗି ମଧ୍ୟ ନାସ୍ତିକ ଧର୍ମପ୍ରତି ମୋର ଆହୁରି ଘୃଣା ବଢିବାକୁ ଲାଗିଲା ।



## ଏକବିଂଶ ପରିଚ୍ଛେଦ ।

( ଭଗବାନ ଦୁର୍ବଳର ସହାୟ )



ହିନ୍ଦୁଧର୍ମ ଓ ଜଗତର ଅନ୍ୟାନ୍ୟ ପ୍ରଧାନ ପ୍ରଧାନ ଧର୍ମର ସାମାନ୍ୟ କିଛି ପରିଚୟ ଲାଭ କରି ଥିଲେହେଁ ମୁଁ ଏତିକ ଜାଣିବା ଉଚିତ ଥିଲା ଯେ ମୋର ସମସ୍ତ ପରୀକ୍ଷାରେ କୃତକାର୍ଯ୍ୟ ହେବା ସକାଶେ କେବଳ ତାହା ଯଥେଷ୍ଟ ନୁହେ । ଯାହା ଯେକି ମନୁଷ୍ୟ ଉକ୍ତ ପରୀକ୍ଷାଦିରୁ ରକ୍ଷାପାଏ, ସେ ସମ୍ବନ୍ଧେ ତାର ସମ୍ପୂର୍ଣ୍ଣ ଅଜ୍ଞତା ଥିବା ବେଳେ ଥାଉ, ଇଙ୍ଗିତରେ ସୁଦ୍ଧା ସେ କିଛି ଜାଣି ନଥାଏ । ସେ ଯଦି ନାସ୍ତିକ, ତେବେ କହେ ତାର ରକ୍ଷା

କେବଳ ଭାଗ୍ୟ ଯୋଗୁଁ; କିନ୍ତୁ ଯଦି ସେ ଈଶ୍ୱରବାଦୀ, ତାହା ହେଲେ ଭଗବାନ କେବଳ ତାଙ୍କୁ ରକ୍ଷା କରି ଅଛନ୍ତି ବୋଲି କହେ । ସେ ଏହି ସିଦ୍ଧାନ୍ତରେ ଉପନୀତ ହୁଏ ଯେ ଧର୍ମ ବିଷୟକ ପଠନ କିମ୍ବା ଆଧ୍ୟାତ୍ମିକ ସଂଯମ କେବଳ ପୃଷ୍ଠ ଦେଶରେ ଥାଇ ତାଙ୍କୁ ସାହାଯ୍ୟ କରିଛି । କିନ୍ତୁ ମୁକ୍ତି ଲାଭ ସମୟରେ ସେ ଏହି କଥା ହୃଦୟଙ୍ଗମ କରିପାରି ନଥାଏ । କେହି କେହି ନିଜର ଆଧ୍ୟାତ୍ମିକ ଶକ୍ତି ଲାଗି ଗର୍ବ କରି, ପରିଶେଷରେ ତାଙ୍କୁ ଧୂଳିସାତ ହେବା କିଏ ଦେଖି ନାହାନ୍ତି ? ଅନୁଭୂତି ବିନା ଆଧ୍ୟାତ୍ମିକ ଜ୍ଞାନ ପରୀକ୍ଷା ସମୟରେ ଆଦୌ ସାହାଯ୍ୟକାରୀ ହୋଇ ନଥାଏ ।

କେବଳ ଧର୍ମଜ୍ଞାନ ଲାଭ କରି କିଛି ଫଳ ନାହିଁ ବୋଲି ସବୁ ପ୍ରଥମେ ମୁଁ ବିଲାତରେ ଜାଣି ପାରିଥିଲି । ପୂର୍ବେ ମୁଁ ଯେ ଅନେକ ପରୀକ୍ଷାରୁ କିପରି ରକ୍ଷାପାଇଛି ତାହା ଏଠାରେ ସଠିକ କହିନପାରେ; କାରଣ ମୁଁ ସେତେବେଳେ ନାବାଳକ ଥିଲି, ଏବେ କିନ୍ତୁ ମୋର କୋଡ଼ିଏ ବର୍ଷ ବୟସ ଓ ବିଶେଷତଃ ପତି ଓ ପିତାରୂପେ ସାମାନ୍ୟ କିଛି ଅନୁଭୂତି ମଧ୍ୟ ପାଇଛି ।

ମୋର ବିଲାତ ଅଧିବାସର ଶେଷ ବର୍ଷରେ (୧୮୯୦) ପୋର୍ଟସ୍ମାଉଥ୍ (Portsmouth) ଠାରେ ଗୋଟିଏ 'ନିରାମିଷ ଭୋଜୀ ସମ୍ମିଳନୀ' ହୋଇଥିଲା — ମୁଁ ଓ ମୋର ଜଣେ ଭାରତୀୟ ବନ୍ଧୁ ସେଠାକୁ ଆମନ୍ତ୍ରିତ ହୋଇଥିବା ମୋର ମନେ ଅଛି । ପୋର୍ଟସ୍ମାଉଥ ଗୋଟିଏ ବନ୍ଦର ଓ ସେଠାରେ ନୌକାଜୀବୀ ଲୋକମାନଙ୍କର ଅଧିକାଂଶ ଘର । ବ୍ୟଭିଚାରିଣୀ ସ୍ତ୍ରୀମାନଙ୍କ ବାସ ଘର ସଂଖ୍ୟା ମଧ୍ୟ ବେଶି । ଉକ୍ତ ସ୍ତ୍ରୀମାନେ ପ୍ରକୃତ ବେଶ୍ୟା ନୁହନ୍ତି, କିନ୍ତୁ ନିଜ ନୈତିକ ଜୀବନ ସକାଶେ ସେମାନଙ୍କର ବେଶି ଦୃଷ୍ଟି ନଥାଏ । ଏହି ଘର ମଧ୍ୟରୁ ଗୋଟିକରେ ଆମ୍ଭେମାନେ ବସା ପାଇଥିଲୁଁ ।

ଅଭ୍ୟର୍ଥନା ସମିତି ଯେ ସେ ସମ୍ବନ୍ଧେ କରୁ ଜାଣି ନଥିଲେ ଏକଥା କହିବା ଅନାବଶ୍ୟକ । ଆମ୍ଭମାନଙ୍କ ପରି ସାମୟିକ ପଥିକମାନଙ୍କ ପକ୍ଷେ ପୋର୍ଟସ୍-ମାଉଥ୍ ପରି ସହରରେ କେଉଁଠା ଭଲ ବସା ଓ କେଉଁଠା ମନ୍ଦବସା ବାଛିବା ବଡ଼ କଷ୍ଟକର କଥା ।

ସନ୍ଧ୍ୟା ସମୟରେ ଆମ୍ଭେମାନେ ସମିତିରୁ ଫେରି ଗୃହ ଭୋଜନ ପରେ ବ୍ରିଜ୍ ( Bridge ) ତାସ ଖେଳ ଆରମ୍ଭ କଲୁ। ଯେଉଁ ସ୍ତ୍ରୀ ଘରେ ଆମ୍ଭେ ବସା କରିଥିଲୁଁ ସେ ମଧ୍ୟ ଆମ୍ଭ ସହିତ ଖେଳିଲେ ! ଇଂଲଣ୍ଡରେ ମାନ୍ୟଗଣ୍ୟ ପରିବାରର ଲୋକେ ମଧ୍ୟ ଖେଳରେ ଏହିପରି ଯୋଗ ଦେବା ଏକ ପରମ୍ପରା ରୀତି । ସାଧାରଣତଃ ପ୍ରତ୍ୟେକ ଖେଳାଳି ଅନ୍ୟୋନ୍ୟରେ ନିର୍ଦ୍ଦୋଷ ଉପହାସ କରିଥାନ୍ତି, କିନ୍ତୁ ସେତେବେଳେ ମୋର ବନ୍ଧୁ ଓ ଆତିଥ୍ୟଦାତ୍ରୀଙ୍କ ମଧ୍ୟରେ ଅଭଦ୍ର ଉପହାସ ଆରମ୍ଭ ମଧ୍ୟ ହୋଇଥିଲା । ମୋର ବନ୍ଧୁ ଯେହି କଳାରେ ଏତେ ଧୁରନ୍ଧର ବୋଲି ମୁଁ ଜାଣିନଥିଲି । ସେଭାବ ମୋତେ ମଧ୍ୟ ଆକ୍ରମଣ କରି ପକାଇଥିଲା—ମୁଁ ମଧ୍ୟ ସେଥିରେ ଯୋଗ ଦେଲି । ଠିକ୍ ଯେତେବେଳେ ମୁଁ ସୀମା ଲଙ୍ଘନ କରିବାକୁ ଯାଉଥିଲି ଓ ଖେଳ ଇତ୍ୟାଦି ଛାଡ଼ିବା ପାଇଁ ଉଦ୍ୟତ ହେଉଥିଲି, ଭଗବାନ ପରି ବନ୍ଧୁଙ୍କ ଭୁଣ୍ଡରେ ସେତେବେଳେ ମୋତେ ଏହି ମଙ୍ଗଳ ସୂଚକ ଚେତନା ବାକ୍ୟ କହିଲେ, "କେଉଁଠାରୁ ତୋର ଏହି ରାକ୍ଷସ ଭାବ ବାହାରି ଯାଅ ଶୀଘ୍ର ଯାଅ" ।

ମୁଁ ବଡ଼ ଲଜ୍ଜିତ ହେଲି । ତାଙ୍କ ଚେତନା ବାକ୍ୟ ଗ୍ରହଣ କଲି ଓ ତାଙ୍କ ପ୍ରତି ମନେ ମନେ କୃତଜ୍ଞତା ପ୍ରକାଶ କଲି । ମାଆଙ୍କ ଆଗରେ ଯେଉଁ ପ୍ରତିଜ୍ଞା କରିଥିଲି, ତାହା ମନେ ପକାଇ ଦୃଶ୍ୟସ୍ଥଳରୁ ହଠାତ୍ ବାହାରି ଗଲି । ଥରି ଥରି ଏବଂ ବୁକ ଦାଉଁ ଦାଉଁ ହେଉଥିଲା ମୁଁ ମୋର ବଖରା ଭିତରେ ପ୍ରବେଶ କଲି ।

ମୋର ସ୍ତ୍ରୀଙ୍କୁ ବାଦ୍ ଦେଲେ ଏହି ଜଣେ ନାରୀ ମାତ୍ର ପ୍ରଥମତଃ ମୋଠାରେ କାମ ଉଦ୍ରେକ କରାଇଥିବା ମୋର ସ୍ମରଣ ହୁଏ । ସେଦିନ ରାତ୍ରରେ ନାନା ଚିନ୍ତା ଆସି ମନକୁ ଅଥୟ କଲା, ସାରା ରାତ୍ର ଅନିଦ୍ରା ରହିଲି । ଏହି ଘରଟା କ'ଣ ଛାଡ଼ି ଦେବି ? ଏହିଠାରୁ କ'ଣ ଶୀଘ୍ର ବାହାରି ଯିବା ଉଚିତ ? ମୁଁ ଏବେ କେଉଁଠାରେ ? ନିଜକୁ ଯଦି ମୁଁ ଭୁଲି ଯାଇ ଥାନ୍ତି, ତାହାହେଲେ ମୋର ଅବସ୍ଥା କ'ଣ ହୋଇଥାନ୍ତା ? ଏହିପରି ନାନା ଚିନ୍ତା କରି ପରିଶେଷରେ ଠିକଣା କଲି କେବଳ ଯେ ସେ ଘର ଛାଡ଼ିବି ତାହା ନୁହେ, କପରି ହେଲେ ପୋର୍ଟସ୍‌ମାଉଥ୍ ଛାଡ଼ି ପଳାଇବି । ସଭାଟି ଦୁଇ ଦିନରୁ ବେଶି ସମୟ ବଳିବା କଥା ନଥିଲା ଏବଂ ମୋର ମନେଅଛି ପରଦିନ ସନ୍ଧ୍ୟା ସମୟରେ ମୁଁ ପୋର୍ଟସ୍‌ମାଉଥ୍ ପରିତ୍ୟାଗ କଲି—ମୋର ବନ୍ଧୁ ଆଉ କେତେଦିନ ପାଇଁ ସେଠାରେ ରହିଲେ ।

ଧର୍ମ କ'ଣ, ଈଶ୍ୱର କ'ଣ ଓ ଆମ୍ଭମାନଙ୍କ ହୃଦୟରେ ରହି ସେ ଅଲକ୍ଷିତ ଭାବରେ କପରି ସବୁ କାର୍ଯ୍ୟ କରନ୍ତି ମୁଁ ସେତେବେଳେ ଏସବୁର ସତ୍ତା ଜାଣି ନଥିଲି । ଭଗବାନ କେବଳ ମୋତେ ସେ ଘଟଣାରୁ ରକ୍ଷାକରି ଅଛନ୍ତି ବୋଲି ଅସ୍ପଷ୍ଟ ଭାବେ ବୁଝିଥିଲି । ମୋର ସମସ୍ତ ପରୀକ୍ଷା ସମୟରେ ମୋତେ ସେ ରକ୍ଷା କରି ଅଛନ୍ତି । "ଭଗବାନ ମୋତେ ରକ୍ଷା କଲେ" — ଏଥିରେ ଗୂଢ଼ ଅର୍ଥ ଅଛି ବୋଲି ମୁଁ ଆଜି କାଲି ହୃଦୟଙ୍ଗମ କରି ପାରୁଛି । ତଥାପି ମୁଁ ଜାଣୁଛି ତାହାର ସମ୍ପୂର୍ଣ୍ଣ ଅର୍ଥ ମୁଁ ଅଦ୍ୟାପି ବୁଝି ପାରିନାହିଁ । ବେଶି ଅନୁଭୂତ ହେଲେ ତାହାର ପ୍ରକୃତ ଅର୍ଥ ବୁଝିବା ପାଇଁ ସହଜ ହେବ । ଆଧ୍ୟାତ୍ମିକ କ୍ଷେତ୍ରରେ, ଓକାଲତି କାମରେ, କୌଣସି ଅନୁଷ୍ଠାନ ପରିଚାଳନାରେ, କିମ୍ବା ରାଜନୀତି କ୍ଷେତ୍ରରେ ମୋତେ ଯେଉଁ ସବୁ କଠିନ ପରୀକ୍ଷା ଦେବାକୁ ପଡ଼ୁଛି, ଭଗବାନ ସେ ସବୁରୁ ରକ୍ଷା କରିଅଛନ୍ତି ବୋଲି ମୁଁ ମୁକ୍ତ

କିଣ୍ଟରେ କହିପାରେ । ଯେତେବେଳେ ଆଶା ବିଲୁପ୍ତ ହୁଏ, ସାହାଯ୍ୟକାରୀ-ମାନେ କିଛି ସାହାଯ୍ୟ କରନ୍ତିନାହିଁ, ସୁଖ ସମ୍ଭୋଗ ବିଦୂରିତ ହୁଏ, କେଉଁ-ଠାରୁ କିପରି କେଜାଣି ମୋତେ ସାହାଯ୍ୟ ମିଳିବା ମୁଁ ଅନୁଭବ କରିଛି । ବିନୟ, ଉପାସନା ଓ ପ୍ରାର୍ଥନା ଇତ୍ୟାଦି ଅନ୍ଧ ବିଶ୍ୱାସ ନୁହେ । ତାହା ଖାଇବା, ପିଇବା, ବସିବା ଓ ଚାଲିବା ଠାରୁ ବଳି ବାସ୍ତବ, ଆଉ ସବୁ କେବଳ ଅସତ୍ୟ କହିଲେ ଅତ୍ୟୁକ୍ତି ହୋଇ ନପାରେ ।

ଏହିପରି ଉପାସନା ତଥା ପ୍ରାର୍ଥନା ମନର ଉଗ୍ରତା କିମ୍ବା ବାକ ପଟୁତାର ଚିହ୍ନ ନୁହେ ଏବଂ ତାହା କପଟ ପୂଜା ନୁହେ, ତାହା ହୃଦୟ ସମ୍ଭୂତ ପ୍ରାର୍ଥନା ବକ୍ତୃତାର ଆଶ୍ରୟ ଲୋଡ଼ ନଥାଏ, କୌଣସି ଇନ୍ଦ୍ରିୟ ଚେଷ୍ଟାର ଅଧୀ-ନତା ସ୍ୱୀକାର କରେ ନାହିଁ । ଉପାସନା ହୃଦୟ ନିର୍ମଳ କରିବା ପାଇଁ ଅବ୍ୟର୍ଥ ଉପାୟ—ଏଥିରେ ମୋର ଅଣୁମାତ୍ର ସନ୍ଦେହ ନାହିଁ, କିନ୍ତୁ ତାହା ନମ୍ରତା ସଙ୍ଗେ ସଂଯୁକ୍ତ ହେବା ଦରକାର ।



## ଦ୍ୱାବିଂଶ ପରିଚ୍ଛେଦ ।

( ନାରାୟଣ ହେମଚନ୍ଦ୍ର )



ଠିକ ଏହି ସମୟରେ ନାରାୟଣ ହେମଚନ୍ଦ୍ର ବିଲାତକୁ ଆସିଲେ । ସେ ଜଣେ ଲେଖକ ବୋଲି ମୁଁ ଶୁଣିଥିଲି । ନେସନଲ ଇଣ୍ଡିଏନ ଏସୋ-ସିଏନର ମେମ୍ବର କୁମାରୀ ମେନଙ୍କ ଘରଠାରେ ତାଙ୍କ ସହିତ ମୋର ଦେଖା ହୋଇଥିଲା । କୁମାରୀ ମେନଙ୍କ ଜାଣି ଥିଲେ ଯେ ମୁଁ ସ୍ୱଚ୍ଛନ୍ଦରେ କାହା ସହିତ ମିଳାମିଶା କରି ପାରୁନଥାଏ । ମୁଁ ଯଦି ତାଙ୍କ ଘରଠାକୁ

ଯାଏ, ପାଞ୍ଚ ବୁଢ଼ ବସି ରହେ; ମୋତେ ପ୍ରଥମେ ଏଏ କଥା କହିଲେ ମୁଁ ପାଞ୍ଚ ଫିଙ୍କାଏ । ସେହିଙ୍କ ମୋତେ ନାରାୟଣ ହେମଚନ୍ଦ୍ରଙ୍କ ସହିତ ପରି‐ଚିତ କରାଇ ଥିଲେ । ସେ ଇଂରେଜୀ ଭାଷା ଜାଣି ନଥିଲେ, ତାଂକ ପୋଷାକ ଅଦ୍ଭୁତ ଧରଣର,— ଅସୁନ୍ଦର ପେଣ୍ଟଲୁନ, ମଇଳା ଓ ଜୀର୍ଣ୍ଣ ମାଟିଆ କୋଟ, ବହୁ ଦିନର ଗୋଟିଏ ଲୋମ ସମ୍ବନ୍ଧ ଟୋପି; ଏବଂ ବେକରେ 'ନେକଟାଇ' ନଥିଲା । ସେ ଲମ୍ବା ଦାଢ଼ୀ ମଧ୍ୟ ରଖି ଥିଲେ ।

ସେ ଶୀର୍ଣ୍ଣକାୟ ଥିଲେ ଓ ତାଂକର ଉଚ୍ଚତା ମଧ୍ୟ ବେଶିନୁହେ । ତାଂକ ଗୋଲ ମୁଁହଟି ବସନ୍ତ ଚିହ୍ନରେ ପୂରି ଯାଇ ଥିଲା । ଆଉ ତାଂକ ନାକଟି ଦୋଜା ନୁହେ କମ୍ବା ଚେପଟା ନୁହେ । ସବୁବେଳେ ସେ ହାତରେ ଦାଢ଼ୀଟିକୁ ଆଉଁସୁ ଥାନ୍ତି ।

ଏପରି ଜଣେ ଲୋକ ପୋଷାକ ପ୍ରୀୟ ସମାଜରେ କଦାପି ଆଦୃତ ହୋଇ ନପାରନ୍ତି ।

ମୁଁ ତାଂକୁ କହିଲି,— "ମୁଁ ଆପଣଙ୍କ ସମ୍ବନ୍ଧେ ଅନେକ କଥା ଶୁଣିଛି । ଆଉ ଆପଣଙ୍କର କେତେ ଲେଖା ମଧ୍ୟ ପଢ଼ା ପଢି କରି ଅଛି । ଆପଣ ଯଦି ଦୟା ପୂର୍ବକ ମୋର ବସାକୁ ଆସନ୍ତି ତାହାହେଲେ ମୁଁ ବଡ଼ ତୃପ୍ତ ହେବି ।"

ନାରାୟଣ ହେମଚନ୍ଦ୍ରଙ୍କର ସ୍ୱର ଅତି କର୍କଶ । ହସଭରା ମୁଁହରେ ସେ ଉତ୍ତର କଲେ:—

"ହଁ, ଯିବି, ଆପଣ କେଉଁଠାରେ ରହନ୍ତି ?"

ମୁଁ:—"ଷ୍ଟୋର ସାହିରେ"

ସେ:—"ତେବେ ଅମ୍ଭେମାନେ ପଡ଼ୋଶୀ । ମୁଁ ଇଂରେଜୀ ଭାଷା ଶିଖିବାକୁ ଇଚ୍ଛା କରେ । ଆପଣ ମୋତେ ଶିଖାଇ ପାରିବେ ?"

ମୁଁ :—"ଆପଣଂଙ୍କୁ ଯାହା ଦରକାର, ମୋର ଶକ୍ତି ଅନୁସାରେ ମୁଁ ତାହା ଶିଖାଇବି । ଆପଣ ଯଦି ଇଚ୍ଛା କରନ୍ତି ମୁଁ ନିଜେ ଆପଣଂକ ଘର-ଠାକୁ ଆସିବି" ।

ସେ: — "ନା,ନା, ମୁଁ ଆପଣଂକ ନିକଟକୁ ଆସିବି । ମୁଁ ଖଣ୍ଡିଏ ଅନୁବାଦ ଶିକ୍ଷାବହି ମଧ୍ୟ ସାଙ୍ଗରେ ଆଣିଥିବି" । ପଢ଼ା ପାଇଁ ଏକ ସମୟ ନିଶ୍ଚୟ କଲୁ । ଆମ୍ଭ ଦୁହିଙ୍କ ମଧ୍ୟରେ ଅତି ଶୀଘ୍ର ଘନିଷ୍ଠ ବନ୍ଧୁତା ରହିଲା ।

ନାରାୟଣ ହେମଚନ୍ଦ୍ର ବ୍ୟାକରଣ ସମ୍ବନ୍ଧେ କିଛି ଜାଣି ନଥିଲେ, "ଘୋଡ଼ା" ଶବ୍ଦଟି ତାଂ'କ ଦୃଷ୍ଟିରେ କ୍ରିୟା, ଆଉ "ଧାଇଁବା" ଶବ୍ଦଟି ବିଶେଷ୍ୟ । ତାଙ୍କ ସମ୍ବନ୍ଧେ ଏହିପରି ଅନେକ କୁତୂହଳ ଘଟଣା ମୋର ମନେ ଅଛି । କିନ୍ତୁ ତାଂ'କ ନିର୍ବୋଧତା ଦୂର କରିବା ସହଜ ବ୍ୟାପାର ନୁହେଁ । ମୁଁ ଯାହା କିଛି ବ୍ୟାକରଣ ଜାଣିଥିଲି, ତାହା ତାଂଙ୍କୁ ଶିଖାଇଲି, କିନ୍ତୁ ତଦ୍ୱାରା ସେ କିଛି ବୁଝି ପାରିନଥିଲେ । ବ୍ୟାକରଣ ଆସୁନାହିଁ ବୋଲି ସେ କେବେହେଲେ ନିଜକୁ ଲଜ୍ଜିତ ମନେ କରୁ ନଥାନ୍ତି ।

ସେ:—"ଆପଣଙ୍କ ପରି ମୁଁ କେବେ ହେଲେ ସ୍କୁଲରେ ପାଠ ପଢ଼ି-ନାହିଁ । ମୋର ଭାବ ପ୍ରକାଶ କରିବାକୁ ଯାଇ ମୁଁ କେବେହେଲେ ବ୍ୟାକରଣର ଆବଶ୍ୟକତା ଅନୁଭବ କରିନାହିଁ । ଆଚ୍ଛା ଆପଣଂଙ୍କୁ ବଙ୍ଗାଳୀଭାଷା ଆସୁଛି ? ମୋତେ ତାହା ଆସୁଛି । ମୁଁ ବଙ୍ଗଳାରେ ବୁଲିଛି । କେବଳ ମୋଲାଗି ଗୁଜରାଟୀ ଲୋକେ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କର ଲେଖା ପଢି ପାରୁ ଅଛନ୍ତି । ଅନ୍ୟାନ୍ୟ ଭାଷାରୁ ଭଲ ୨ ଲେଖା ଦେଖି ଅନୁବାଦ କରିବା ପାଇଁ ମୁଁ ଇଚ୍ଛା କରି ଅଛି । ଆପଣ ଜାଣନ୍ତୁ ମୁଁ କେବେହେଲେ ଅକ୍ଷରକ ଅନୁବାଦ କରେ ନାହିଁ । ଭାବଟା ଦର୍ଶାଇ ପାରିଲେ ମୁଁ ନିଜକୁ କୃତାର୍ଥ ମନେ କରେ । ମୋ ଅପେକ୍ଷା ବେଶି ଜାଣିଥିବା ଲୋକେ ଭବିଷ୍ୟତରେ

ଅଧିକା ଲେଖି ପାରନ୍ତି । କିନ୍ତୁ ବ୍ୟାକରଣ ଶିକ୍ଷା ନପାଇ ମୁଁ ଯାହା କରି-ପାରିଛି ମୋର ସେଥିରେ ବଡ଼ ସନ୍ତୋଷ । ମରହଟ୍ଟୀ, ହିନ୍ଦି, ବଙ୍ଗାଳୀ ଏସବୁ ଭାଷା ମୁଁ ଜାଣିଛି, ଆଉ ଏବେ ଇଂରେଜୀ ଭାଷା ଶିଖିବାକୁ ଆରମ୍ଭ କରିଛି । ବହୁତ ଶୁଦ୍ଧ ଏ ପଦ ଜାଣିବା ମୋର ଅଭିଳାଷ । ଆଉ ମୋର ଆକାଂକ୍ଷା ଏହିଠାରେ ସୀମାବଦ୍ଧ ବୋଲି କଣ ଆପଣ ଭାବିଛନ୍ତି ? ତାହା ନୁହେଁ । ଫ୍ରାନସ୍‌କୁ ଯାଇ ଫରାସି ଭାଷା ଶିଖିବା ମଧ୍ୟ ମୋର ଇଚ୍ଛା ! ମୁଁ ଶୁଣି ପାରୁଛି ଯେ ସେ ଭାଷାର ସାହିତ୍ୟ ବଡ଼ ପ୍ରସାର ଲାଭ କରିଛି । ଯଦି ସୁବିଧା ହୁଏ ଜର୍ମାନ ଯାଇ ଜର୍ମାନ ଭାଷା ମଧ୍ୟ ଶିଖିବା ପାଇଁ ଭାବିଛି ।" ଏହିପରି ସେ ଅବିଚ୍ଛିନ୍ନ ଭାବରେ କହି ଗଲେ । ବିଦେଶ ଭ୍ରମଣ କରିବା ଓ ନାନା ପ୍ରକାର ଭାଷା ଶିକ୍ଷା କରିବା ପାଇଁ ତାଙ୍କର ବଳବତୀ ଆକାଂକ୍ଷା ଥାଏ !

ମୁଁ:—"ତେବେ ଆପଣ ଆମେରିକା ମଧ୍ୟ ଯିବେ ?"

ସେ:—"ନିଶ୍ଚୟ । ନୂତନ ପୃଥିବୀକୁ ନଦେଖି ଭାରତକୁ କିପରି ଫେରିବି ?"

ମୁଁ:—"କିନ୍ତୁ ପଇସା କେଉଁଠାରୁ ପାଇବେ ?"

ସେ:—"ମୋର ପଇସା କି ଦରକାର? ମୁଁ ତ ଆପଣଙ୍କ ପରି ରଙ୍ଗିଲା ଲୋକ ନୁହେଁ । ସାମାନ୍ୟ ପୋଷାକ ଓ ସାମାନ୍ୟ ଖାଦ୍ୟ ହେଲେ ମୋତେ ଯଥେଷ୍ଟ । ଏଥି ପାଇଁ ମୁଁ ମୋର ବହି ପତ୍ର ବିକାରୁ ଆଉ ମୋର ବନ୍ଧୁ-ମାନଙ୍କ ଠାରୁ ଯେଉଁ ପଇସା ପାଏ ସେତିକ ଯଥେଷ୍ଟ ହେବ । ମୁଁ ଗାଡ଼ି-ରେ ସବୁବେଳେ ନିମ୍ନ ଶ୍ରେଣୀରେ ବସେ । ଆମେରିକାକୁ ଯିବାବେଳେ ମଧ୍ୟ ମୁଁ ଜାହାଜ ପଟରେ ବସି ଯିବି" ।

ନାରାୟଣ ହେମଚନ୍ଦ୍ରଙ୍କର ଯେଉଁ ସରଳତା ତାହା ତାଙ୍କ ଠାରେ କେବଳ ସମ୍ଭବ ଥାଏ; ଆଉ ତାଙ୍କର ନିସ୍ପୃହତା ମଧ୍ୟ ଠିକ ସେହି

ପଡ଼େ । ତାଂକଠାରେ ଗର୍ବର ଲେଶ ଚିହ୍ନ ନଥାଏ, କିନ୍ତୁ ନିଜେ ଜଣେ ବଡ଼ କ୍ଷମତାପନ୍ନ ଲୋକଙ୍କ ବୋଲି ସେ ଅଯଥା ଅଭିମାନ କରୁ ଥାନ୍ତି ।

ଆମ୍ଭେ ଦୁହେଁ ପ୍ରତିଦିନ ମିଶି ଥାଉଁ । ଆମ୍ଭ ଭାବନା ଓ କାର୍ଯ୍ୟ ମଧ୍ୟରେ ବେଶି ସାମଞ୍ଜସ୍ୟ ମଧ୍ୟ ଥାଏ । ଦୁହେଁ ନିରାମିଷଭୋଜୀ ଓ ଅନେକ ସମୟରେ ଏକାଠି ଜଳଯୋଗ କରି ଥାଉଁ । ସେତେବେଳେ ମୁଁ ସପ୍ତାହକୁ ୧୭ ସିଲିଙ୍ଗ ଖରଚ କରୁଥିଲି; ଆଉ ନିଜେ ରାନ୍ଧି ଖାଉଥିଲି । ବେଳେ ବେଳେ ସେ ମୋ' ବସାକୁ ଆସୁ ଥାନ୍ତି, ବଳିସମୟରେ ମୁଁ ତାଂକ ବସାକୁ ଯାଉ ଥାଏ । ମୁଁ ଇଂରେଜୀ ଧରଣରେ ରନ୍ଧା ରନ୍ଧି କରେ । ସେ କିନ୍ତୁ ଭାରତୀୟ ଢଙ୍ଗର ରନ୍ଧାରେ ତୃପ୍ତି ଲାଭ କରିଥାନ୍ତି । ଡ଼ାଲି ନଥିଲେ ସେ ଖାଇ ପାରନ୍ତି ନାହିଁ । ମୁଁ ଝୋଳ କରିବା ଦେଖି ସେ ବଡ଼ ଦୁଃଖିତ ହେଉଥିଲେ । ପରେ ସେ କୌଣସି ଠାରୁ ମୁଗ ପାଇଥିଲେ — ତାହା ରାନ୍ଧି ମୋର ବସାକୁ ଧରି ଆସିଲେ । ଆନନ୍ଦର ସହିତ ମୁଁ ତାହା ଖାଇଲି । ସେହି ଦିନ ଠାରୁ ଆମ୍ଭେ ଦୁହେଁ ଅନ୍ୟୋନ୍ୟ ଘରେ ସବୁ ବେଳେ ଖାଇବା ଆରମ୍ଭ କଲୁ ଓ ବଳିସମୟରେ ନିଜ ନିଜର ଭଲ ଜିନିଷ ଦେବା ନେବା ଲାଗିଲା ।

ସେତେବେଳେ କାର୍ଡ଼ିନେଲ ମେନିଙ୍ଗ ସମସ୍ତଙ୍କର ପ୍ରୀତିପାତ୍ର । ଜନ୍ ବାରନ୍ସ୍ ଓ କାର୍ଡ଼ିନେଲ୍ ମେନିଙ୍ଗଙ୍କ ଯୋଗୁଁ କନ୍ଦର ତ୍ୟାଗୀ କୁଲି-ମାନେ ପୁନର୍ବାର ଆସି କାମ ଆରମ୍ଭ କରିଥିଲେ । କାର୍ଡ଼ିନେଲଙ୍କ ସରଳତା ସମ୍ବନ୍ଧେ ଡ଼ିଜରେଲି ଯେ କପରି ପ୍ରଶଂସା କରିଥିଲେ ସେ ସମ୍ବନ୍ଧେ ମୁଁ ନାରାୟଣ ହେମଚନ୍ଦ୍ରଂକୁ କହିଲି । ସେ କହିଲେ, "ତେବେ ମୁଁ ସେହି ଋଷିଙ୍କୁ ଯାଇ ଦେଖିବି ।"

ମୁଁ :— "ସେ ଜଣେ ବଡ଼ ଲୋକ । ତାଂକ ସହିତ ଦେଖା କରିବା ପାଇଁ ଆପଣ କପରି ଆଶା କରୁ ଅଛନ୍ତି?"

ସେ:—'କାହିଁକି ? ମୁଁ ତାହା ଜାଣିଛି । ଆପଣ ମୋ ସମ୍ବନ୍ଧେ ତାଙ୍କ ଠାକୁ ଲେଖନ୍ତୁ । ଆପଣ ଏହି କଥା ଲେଖିବେ ଯେ ମୁଁ ଜଣେ ଲେଖକ ଅଛି ତାଙ୍କର ଲୋକ ହିତକର କାମ ଦେଖି ମୁଁ ତାଙ୍କୁ ମୋର ଅନ୍ତରର ଧନ୍ୟ ଜଣାଇବାକୁ ଆସି ଅଛି । ମୋତେ ଇଂରେଜୀ ଭାଷା ଆସୁ ନଥିବା ଯୋଗୁଁ ଅପଣ ମୋର ଅନୁବାଦକ ସ୍ୱରୂପ ମୋ' ସହିତ ଯିବେ ବୋଲି ମଧ୍ୟ ଖବର ଦେଇଥାନ୍ତୁ" ।

ଉପରୋକ୍ତ ମର୍ମରେ ମୁଁ ତାଙ୍କ ଠାକୁ ଗୋଟିଏ ପତ୍ର ଲେଖିଲି । ଦୁଇ ତିନ ଦିନ ଭିତରେ କାର୍ଡ଼ିନେଲ ମେନିଙ୍ଗଙ୍କ ଠାରୁ ଉତ୍ତର ଆସିଲା । ତାଙ୍କ ସହିତ ଦେଖା କରିବା ପାଇଁ ସେ ଅନୁମତି ଦେଲେ । କର୍ଦ୍ଦିଷ୍ଟ ଦିନ ଯାଇ ଆମ୍ଭେ ଦୁହେଁ କାର୍ଡିନେଲଙ୍କ ଘରେ ପହୁଞ୍ଚିଲୁ । କାହାରକୁ ଦେଖିବାକୁ ଗଲାବେଳେ ମୁଁ ଯେଉଁ ପୋଷାକ ସାଧାରଣତଃ ପିନ୍ଧି ଥାଏ ତାହା ମୁଁ ପିନ୍ଧିଲି । ନାରାୟଣ ହେମଚନ୍ଦ୍ରଙ୍କ ପୋଷାକ ସବୁବେଳେ ସମାନ —ସେହି କୋଟ ଓ ସେହି ପେଣ୍ଟଲୁନ୍ । ମୁଁ ତାଙ୍କୁ ହାସ୍ୟ କରିବାରୁ ସେ ହସି ହସି କହିଲେ:—

"ଆପଣଙ୍କ ପରି ସମସ୍ତ ଶିକ୍ଷିତ ଲୋକେ ବଡ ଭୟାଳୁ । ବଡ ଲୋକ ମାନେ ମନୁଷ୍ୟର ବାହାର କଥା କେବେ ଦେଖନ୍ତି ନାହିଁ । ସେମାନେ ତା'ର ହୃଦୟ ପ୍ରତି ଦୃଷ୍ଟି ଦେଇ ଥାନ୍ତି"।

ଦୁହେଁ ମିଶି କାର୍ଡିନେଲଙ୍କ ଘରକୁ ଗଲୁଁ । ଆମ୍ଭେ ବସୁଁ ବସୁଁ ଜଣେ କ୍ଷୀଣକାୟ, ଉଚ୍ଚ ଓ ବୃଦ୍ଧ ବ୍ୟକ୍ତି ଆମ୍ଭ ନିକଟକୁ ଆସି ଆମ୍ଭର କର ମର୍ଦ୍ଦନ କଲେ । ନାରାୟଣ ହେମଚନ୍ଦ୍ର ବିନୟରେ ତାଙ୍କୁ ସମ୍ଭାଷଣ କରିବାକୁ ଯାଇ କହିଲେ:—

"ମୁଁ ଆପଣଙ୍କ ସମୟ ନଷ୍ଟ କରିବାକୁ ଚାହେଁ ନାହିଁ । ଆପଣଙ୍କ ସମ୍ବନ୍ଧେ ମୁଁ ଅନେକ କଥା ଶୁଣିଛି । ଆପଣ କର୍ମତ୍ୟାଗୀ କୁଲିମାନଙ୍କ ପାଇଁ ଯେ ମହତ୍ କାମ କରିଅଛନ୍ତି ସେଥି ଲାଗି ଆପଣଙ୍କୁ ଧନ୍ୟବାଦ ଦେବା ଉଚିତ ମନେ କରି ମୁଁ ଏଠାକୁ ଆସିଛି । ଜଗତର ବ୍ୟକ୍ତିମାନଙ୍କ ସହିତ ଦେଖା କରିବା ମୋର ଅଭ୍ୟାସ । ସେହେତୁ ଆପଣଙ୍କୁ ଦର୍ଶନ କରିବାକୁ ଆସିଛି ।"—ସେ ଏହାସବୁ ଗୁଜରାଟୀ ଭାଷାରେ କହିଲେ ମୁଁ ଇଂରେଜୀରେ ଅନୁବାଦ କରି ଥିଲି ।

କାର୍ଡିନେଲ:— "ବଡ ଆନନ୍ଦର କଥା ଆପଣ ଆସି ଅଛନ୍ତି । ମୋର ବିଶ୍ୱାସ, ଆପଣ ଲଣ୍ଡନରେ ସ୍ୱାସ୍ଥ୍ୟ ରକ୍ଷା କରି ପାରିବେ ଆଉ ଅନେକ ଲୋକଂକ ସଂସ୍ରବରେ ଆସିବେ । ଭଗବାନ ଆପଣଂକର ମଂଗଳ କରନ୍ତୁ"
—ଏହା କହି କାର୍ଡିନେଲ ଉଠି ପଡ଼ି ବିଦାୟ ପ୍ରଣାମ କଲେ ।

ଦିନେ ନାରାୟଣ ହେମଚନ୍ଦ୍ର ଖଣ୍ଡିଏ ଯୋଡ଼ି ଓ କୁରୁତା ପିନ୍ଧି ମୋ'ର ବସାକୁ ଆସିଲେ । ଘରର ମାଲିକ ତାଂକ ରୂପ ଦେଖି ଭୟରେ ମୋ ନିକଟକୁ ଧାଇଁ ଆସିଲେ । ଏ ନୂଆ ଜଣେ ନୂଆ ଘରର ମାଲିକ । ସେ ନାରାୟଣ ହେମଚନ୍ଦ୍ରଂକୁ ଚିହ୍ନି ନଥିଲେ । ସେ ଆସି ମୋତେ କହିଲେ;
"ବାତୁଳ ପରି ଜଣେ ଲୋକ ତୁମକୁ ଦେଖିବା ପାଇଁ ଆସି ଅଛନ୍ତି" । ମୁଁ ଆଶ୍ଚର୍ଯ୍ୟରେ ଦ୍ୱାର ପାଖକୁ ଯାଇ ଦେଖେତ ନାରାୟଣ ହେମଚନ୍ଦ୍ର ଆସି ମୋତେ ଅପେକ୍ଷା କରିଅଛନ୍ତି । ମୋତେ ବଡ ବାଧିଲା । କିନ୍ତୁ ତାଂକ ମୁହଁରେ ହସ ଛଡା ଆଉ କିଛି ଦେଖାଯାଉ ନଥିଲା ।

ମୁଁ:—" ପିଲାମାନେ ବାଟରେ ଆପଣଂକୁ ଦର୍ଶନ କରିନାହାନ୍ତି?"

ସେ:—"ହଁ, ସେମାନେ ମୋ' ପଛରେ ଗୋଡାଇଲେ । କିନ୍ତୁ ମୁଁ ତାଂକ ପ୍ରତି ଭ୍ରୂକ୍ଷେପ କଲିନାହିଁ । ସେମାନେ ନୀରବ ରହିଗଲେ" ।

ଅଳ୍ପ କେତେ ମାସ ପାଇଁ ଲଣ୍ଡନରେ ରହି ନାରାୟଣ ହେମଚନ୍ଦ୍ର, ପରେ ପାରିସ୍ ନଗରୀକୁ ଗଲେ । ସେଠାରେ ଫରାସୀ ଭାଷା ଶିଖିବା ଆରମ୍ଭ କଲେ ଓ କେତେ କେତେ ବହି ମଧ୍ୟ ଅନୁବାଦ କରିବାକୁ ଲାଗିଲେ । ତାଂ'କର ଅନୁବାଦ ଲେଖା ସବୁ ସଂଶୋଧନ କରିବା ପାଇଁ ମୋର ଶକ୍ତି ଥିଲା । ସ୍ବତନ୍ତ୍ରଂ ତାହା ପଢିବା ପାଇଁ ମୋତେ ସେ ଦେଇଥିଲେ । କିନ୍ତୁ ତାଂ'କର ଲେଖା ସବୁ ଅନୁବାଦ ନୁହେ—ସାରାଂଶ ମାତ୍ର ।

ଆମେରିକା ପରିଦର୍ଶନ କରିବା ପାଇଁ ସେ ଦୃଢ଼ ପ୍ରତିଜ୍ଞ ହୋଇ ଥିଲେ ଏବଂ ପରିଶେଷରେ ତାହା ସେ କାର୍ଯ୍ୟରେ ପରିଣତ କରିଥିଲେ । କିନ୍ତୁ ଜାହାଜର ପଛରେ ବସି ଯିବା ପାଇଁ ମଧ୍ୟ ବଡ କଷ୍ଟରେ ଟିକଟ ଖଣ୍ଡିଏ ମିଳିଥିଲା । ଆମେରିକାର ଯୁକ୍ତ-ରାଜଧାନୀ ( United States ) କୁ ସେ ଯେତେବେଳେ ଖଣ୍ଡିଏ ଧୋତି ଓ ଖଣ୍ଡିଏ କୁରୁତା ପିନ୍ଧି ଯାଆନ୍ତି ସେଠା ସରକାର ତାଂ'କ ପୋଷାକକୁ ଅଭଦ୍ର ମନେ କରି ତାଙ୍କୁ ଦୋଷୀ ସ୍ବରୂପ ହାଜତରେ ରଖିଲେ—କିନ୍ତୁ ମୋର ମନେ ଅଛି ସେ ଅଳ୍ପ ଦିନ ପରେ ଖଲାସ ପାଇଥିଲେ ।



# ତ୍ରୟୋବିଂଶ ପରିଚ୍ଛେଦ ।

( ବିଶ୍ୱୀୟ ପ୍ରଦର୍ଶନୀ । )

———o———

୧୮୯୦ ସାଲରେ ପାରିସ୍ ନଗରୀରେ ଗୋଟିଏ ବିଶ୍ୱୀୟ ପ୍ରଦର୍ଶନୀ ହୋଇଥିଲା । ପ୍ରଦର୍ଶନୀର ଯୋଗାଡ଼ ସମ୍ବନ୍ଧେ ମୁଁ ଅନେକ ବିଷୟ ପତ୍ରିକାରେ ପଢ଼ୁଥାଏ ଏବଂ ପାରିସ୍ ଦେଖିବା ପାଇଁ ମଧ୍ୟ ମୋର ବଡ ଇଚ୍ଛା ଥିଲା । ଏକଅଡେ ପ୍ରଦର୍ଶନୀ ଦେଖିବାକୁ ହେବ, ଅନ୍ୟଅଡ଼େ ମୋର ବହୁଦିନର ଆଶା ପୂରଣ କରିବାକୁ ହେବ ଭାବି ମୁଁ ଏହି ସମୟରେ ପାରିସ୍ ଯିବାକୁ ଠିକଣା କଲି । 'ଇଫେଲ ଦୁର୍ଗ' ପ୍ରଦର୍ଶନୀର ବଡ ଦ୍ରଷ୍ଟବ୍ୟ ଜିନିସ । ଦୁର୍ଗଟି ଯାକ ଲୁହାର କାମ ଓ ତାର ଉଚ୍ଚତା ଏକ ହଜାର ଫୁଟ । ଅନ୍ୟାନ୍ୟ କୌତୂହଳ ଜିନିସ ସେଠାରେ ଥିଲା ସତ, କିନ୍ତୁ ଦୁର୍ଗଟି ପ୍ରଧାନ — କାରଣ ସେ ସମୟ ଯାଏ ଲୋକଙ୍କର ଧାରଣା ଥିଲା ଯେ ଏତେ ଉଚ୍ଚରେ ଗୋଟିଏ ଦୁର୍ଗ ଠିଆ ରହି ନପାରେ ।

ପାରିସର ଗୋଟିଏ ନିରାମିଷ ହୋଟେଲ ସମ୍ବନ୍ଧେ ମୁଁ ଶୁଣିଥାଏ । ଗୋଟିଏ ବଖରା ଭଡ଼ା ରଖି ସାତ ଦିନ ପର୍ଯ୍ୟନ୍ତ ସେଠାରେ ରହିଲି । ପାରିସକୁ ଯିବା ପାଇଁ ଓ ସେଠାର ଦୃଶ୍ୟ ସବୁ ଦେଖିବା ପାଇଁ ମୁଁ ଅତି ଅଳ୍ପ ଧନ ଖରଚ କରିଥିଲି । ବୁଲି କରି ପାରିସ୍ ସହର ଦେଖି ଥିଲି । ପାରିସ୍ ସହରର ଗୋଟିଏ ମାନଚିତ୍ର ଓ ପ୍ରଦର୍ଶନୀର ଗୋଟିଏ ମାନଚିତ୍ର କିଣିଥିଲି । ଏ ଦୁଇଟି ପାଖରେ ଥିଲେ ଜଣେ ସହଜରେ ପାରିସର ବଡ଼ ବଡ଼ ରାସ୍ତା ଆଉ ସମସ୍ତ ଦ୍ରଷ୍ଟବ୍ୟ ସ୍ଥାନ ଦେଖି ପାରିବେ ।

ପ୍ରଦର୍ଶନୀର ବହୁ ବସ୍ତୁତ ଓ ନାନାବିଧ ଜିନିଷ ଛଡା ଆଉ ଗା' ସମ୍ବନ୍ଧେ ମୋର ବେଶି କିଛି ମନେଣ ନାହିଁ । ଦୁଇ ତିନଥର 'ଇଫେଲ ଦୁର୍ଗ' ଉପରେ ଚଢି ଥିଲି ବୋଲି ତାହା କିନ୍ତୁ ଏବେ ମୋର ମନେ ଅଛି । ପ୍ରଥମ ମହଲାରେ ଗୋଟିଏ ଜଳଖିଆ ଦୋକାନ ଥିଲା—ଏତେ ଉପରକୁ ଯାଇ ଜଳଖିଆ କରିଛି କହି ପାରିବି ବୋଲି ମୁଁ ସାତ ଶିଲିଙ୍ଗ ଖରଚ କରି ଜଳଖିଆ କରିଥିଲି ।

ପାରିସର ପୁରାତନ ଗିର୍ଜା ସବୁ ମୋର ସ୍ମରଣ ଅଛି । ସେ ଗୁଡି-କର ସୌନ୍ଦର୍ଯ୍ୟ ଓ ନିସ୍ତବ୍ଧତା ପାସୋରି ଯିବାର ନୁହେ । ନୋତ୍ରେ ଡେମର ସେ ଅଦ୍ଭୁତ କାରୁ କାର୍ଯ୍ୟ ଆଉ ଭିତରର ସେ ଯେ ଚିତ୍ର ବିଚିତ୍ର କମାଣ ତାହା ଭୁଲି ହେବ ନାହିଁ । ଯେଉଁମାନେ ଏହିପରି ଗିର୍ଜାମାନ ନିର୍ମାଣ କରିବା ପାଇଁ ଲକ୍ଷ ୨ ଟଙ୍କା ବ୍ୟୟ କରି ଅଛନ୍ତି ସେମାନଙ୍କର ହୃଦୟ ବାସ୍ତବିକ ଈଶ୍ୱର ପ୍ରେମ ପୂରିତ ବୋଲି ମୁଁ ସେତେବେଳେ ଭାବିଲି ।

ପାରିସ୍ ଲୋକଙ୍କ ତେଜସ୍ୱିତା ଓ ନିର୍ବୋଧତା ସମ୍ବନ୍ଧେ ମୁଁ ଅନେକ କଥା ପଢ଼ିଥିଲି । ପ୍ରତ୍ୟେକ ରାସ୍ତାରେ ତାର ଭୂରି ୨ ପ୍ରମାଣ ଦେଖିବାକୁ ମିଳେ, କିନ୍ତୁ ଗିରଜା ଗୁଡିକ ଏହିପରି ଦୃଶ୍ୟରୁ ବଞ୍ଚିତ । କୌଣସି ଏକ ଗିରଜା ଭିତରକୁ ଗଲେ ବାହାରର ସମସ୍ତ କୋଳାହଳ ବିସ୍ମୃତ ହୋଇ-ଯାଏ । ଗିରଜା ପ୍ରତିମାଂକ ଆଗରେ ଜଣେ ନତ ମସ୍ତକ ହୋଇ ଜାନୁ ପାତ କରି ପଡିଥିବା ଦୃଶ୍ୟ ଦେଖି କିଏ ନିଜ ୨ ବ୍ୟବହାର ବଳେ ୨ ନବଦଳାଇବ ? ଭକ୍ତି ଓ ଉଚ୍ଚ ଅଭିଳାଷରେ ହୃଦୟ ଓ ମନକୁ ପୂରାଇ ନଦେବ ? ସେତେବେଳେ ମୋର ଯେଉଁ ଅନୁଭୂତ ହୋଇଥିଲା ତାହା ଆଜିକାଲି ବଢ଼ୁଅଛି । ନତ ମସ୍ତକ ହୋଇ ଜାନୁ ପାତ ପୂର୍ବକ ଯେ ଉପା-

ଘନା କର୍‌ ଯାଏ ତାହା କଦାପି ଅନ୍ଧ ବିଶ୍ୱାସର ସୂଚନା ନୁହେ, ଆଉ ଭକ୍ତ-ମାନେ ଯେ ଉପାସ୍ୟ ପ୍ରତିମାଙ୍କ ସମ୍ମୁଖରେ ଜାନୁପାତ କରି ପ୍ରାର୍ଥନା କରନ୍ତି ତାହା କେବଳ ତୁଚ୍ଛ ପଥରର ଉପାସନା ନୁହେ ବୋଲି ମୁଁ ଅନୁଭବ କରିଥିଲି । ସେମାନେ ନିସ୍କପଟ ଭକ୍ତି ପ୍ରଣୋଦିତ ହୋଇ ଥାନ୍ତି ଆଉ କେବଳ ଯେ ପଥରକୁ ପୂଜା କରନ୍ତି ତାହା ନୁହେ ! ଉକ୍ତ ପଥର ଈଶ୍ୱରଙ୍କର ରୂପାନ୍ତର ମାତ୍ର । ସେହେତୁ ସେମାନେ ଈଶ୍ୱରଙ୍କ୍ର ସେବା ଓ ପୂଜା କରୁଥିଲେ । ଏହିପରି ଉପାସନା ଓ ପୂଜା କରି ଭଗବାନଂକ ମହିମା ବଢ଼ାଉଥିଲେ ବୋଲି ମୋର ସେତେବେଳେ ଧାରଣା ଥିଲା ।

'ଇଫେଲ ଦୁର୍ଗ' ସମ୍ବନ୍ଧେ ଏଠାରେ ଦୁଇ ଗୁଟିପଦ କହୁଛି । ଏବେ ତାହାର ଉପକାରିତା କଣ ମୁଁ କହି ନପାରେ । ମୁଁ ଶୁଣିଛି, ସେତେବେଳେ ଦଳେ ତାର ପ୍ରଶଂସା କରୁଥାନ୍ତି ଆଉଦଳେ ମଧ୍ୟ ନିନ୍ଦା କରୁଥାନ୍ତି । ନିନ୍ଦୁକମାନଙ୍କ ମଧ୍ୟରେ ଟାଲଷ୍ଟାଇ ସର୍ବ ପ୍ରଥମ । ସେ କହିଥିଲେ ଯେ ଇଫେଲ ଦୁର୍ଗଟା ମନୁଷ୍ୟର ନିର୍ବୋଧତାର ଚିହ୍ନ, କିନ୍ତୁ ଚତୁରତାର ନୁହେ । ମାଦକ ଦ୍ରବ୍ୟ ମଧ୍ୟରେ ଧୂଆଁ ଅତି ଭୟଙ୍କର ବୋଲି ସେ କହନ୍ତି — କାରଣ ଯେଉଁମାନଂକର ଧୂମ୍ର ପାନ କରିବା ଅଭ୍ୟାସ ଥାଏ ସେମାନେ ଏପରି ଗର୍ହିତ ପାପ କରିବାକୁ ପ୍ରଲୋଭିତ ହୁଅନ୍ତି ଯାହାକି ଜଣେ ସୁରାପାୟୀ ମଧ୍ୟ କରିବା ପାଇଁ ସାହସ କରି ନପାରେ । ମଦ ମନୁଷ୍ୟଙ୍କୁ ବାତୁଳ କରି ପକାଏ କିନ୍ତୁ ଧୂଆଁ ତାର ମସ୍ତିଷ୍କ ବିକୃତ କରିଦିଏ; ସୁତରାଂ ସେ ଆକାଶରେ କନକ-ଗଡ଼ ବାନ୍ଧିବସେ । ଏହି ପ୍ରେରଣା ଯୋଗୁ ଇଫେଲ ଦୁର୍ଗର ସୃଷ୍ଟି — କାରୁ କାର୍ଯ୍ୟ ବୋଲି ସେଥିରେ କିଛି ନାହିଁ । କୌଣସି ମତେ ତାହା ପ୍ରଦର୍ଶନୀର ପ୍ରକୃତ ସୌନ୍ଦର୍ଯ୍ୟ ବୃଦ୍ଧି କରି ଅଛି ବୋଲି କୁହା ଯାଇ ନପା-ରେ । ତାହା ଗୋଟିଏ ନୂତନ ଜିନିଷ ଆଉ ତାର ଆକାର ବଡ଼ ବୋଲି

ଲୋକେ ଦେଖିବାକୁ ଯାଆନ୍ତି ଆଉ ଉପରକୁ ଚଢ଼ନ୍ତି । ତାହା ପ୍ରଦର୍ଶନୀର ଖେଳ ଜିନିଷ । ଆମ୍ଭେମାନେ ଯେଉଁଦିନ ଯାଏ ପିଲା ହୋଇଥାଉଁ ଖେଳ କୁଣ୍ଡେଇ ଦେଖିଲେ ଆମର ମନ ସେଇ ଆଡେ ଯାଏ । —ଆମ୍ଭେମାନେ ବଡ଼ର ପିଲା, ଓ ଖେଳ କୁଣ୍ଡେଇ ଦେଖିଲେ କଟର ବାତୁଲ ପ୍ରାୟ ହେଉଁ, ଇଫେଲ ଦୁର୍ଗ ତାହାର ପୂର୍ଣ୍ଣ ପରିଚୟ ଦେଉଥିଲା । ଇଫେଲ ଦୁର୍ଗର ଉଦ୍ଦେଶ୍ୟ କେବଳ ସେଇକି ବୋଲି କୁହା ଯାଇ ପାରେ ।



# ଚତୁର୍ବିଂଶ ପରିଚ୍ଛେଦ ।

( ବାରିଷ୍ଟର ପାଶ, ତା ପରେ ? )



କି ଉଦ୍ଦେଶ୍ୟରେ ମୁଁ ବିଲାତ ଯାଇଥିଲି ସେ ସମ୍ବନ୍ଧେ ଏତେବେଳ ଯାଏ କିଛି କହିନାହିଁ । 'ବାରିଷ୍ଟର' ପରୀକ୍ଷା ଦେବା ପାଇଁ ମୁଁ ଯାଇଥିଲି, ସେ ବିଷୟ ନେଇ ଏବେ ସଂକ୍ଷିପ୍ତ ଭାବେ ଏଠାରେ କିଛି କହିବି ।

ଜଣେ ଛାତ୍ର ବାରିଷ୍ଟର ହେବା ସକାଶେ ଦୁଇଟି କଥା ପାଳିବାକୁ ହୋଇଥାଏ 'ନିର୍ଦ୍ଦିଷ୍ଟ କାଳ ରକ୍ଷା' ( Keeping terms ) ପ୍ରାୟ ତିନିବର୍ଷ ଏବଂ 'ପରୀକ୍ଷା ପାଶ ।' 'ନିର୍ଦ୍ଦିଷ୍ଟ କାଳ ରକ୍ଷା' ର ଅର୍ଥ ହେଉଛି ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଭୋଜନ କରିବା—ଏକ ସମୟରେ ଯେ ପ୍ରାୟ ୨୪ ଗୋଟି ଭୋଜନର ଯୋଗାଡ଼ ହୋଇଥାଏ ସେଥିରୁ ଅନ୍ତତଃ ଛଅଟିରେ ଯୋଗ ଦେବାକୁ ହୁଏ । ଭୋଜନରେ ଯୋଗ ଦେବା ଅର୍ଥ ଖାଦ୍ୟ ସାମଗ୍ରୀ ଖାଇବା ନୁହେ । ନିର୍ଦ୍ଦିଷ୍ଟ ସମୟରେ ସେଥିରେ ଉପସ୍ଥିତ ହୋଇ ତାହା ଶେଷ ହେବାଯାଏ ସେଠାରେ ରହିବା କଥା । ସାଧାରଣତଃ କେହି କେହି ଭଲ

ଭଲି ଜିନିଷ ଦେଖି ଖାଉଥାନ୍ତି ଓ ସୁରାପାନ କରୁଥାନ୍ତି । ଗୋଟିଏ ଭୋଜିରେ ପ୍ରାୟ ଦୁଇ ତିନି ଟଙ୍କା ଖରଚ ହୋଇଥାଏ, ଏହା କିନ୍ତୁ ମଧ୍ୟମ ଧରଣର କାରଣ ହୋଟେଲରେ କେବଳ ସୁରା ବାବତରେ ସେହି ଖରଚଟା ହୋଇ-ଥାଏ । ଖାଇବା ଅପେକ୍ଷା ପିଇବା ଖରଚଟା ଯେ ଅଧିକ ଏହା ଆମ୍ଭ ଭାର-ତବାସୀଙ୍କ ପକ୍ଷେ ( ଆମ୍ଭେ ଯଦି 'ଶିକ୍ଷିତ' ହୋଇଥାଉ ) ବଡ ଆଶ୍ଚର୍ଯ୍ୟର କଥା । ପ୍ରଥମେ ମୁଁ ବଡ ମର୍ମାହତ ହେଲି ଓ ଲୋକେ ଯେ ସୁରାପାନ ସକାଶେ ଏତେ ପଇସା ଖରଚ କରିବା ପାଇଁ ସାହସ କରନ୍ତି, ତାହା ଦେଖି ମୋତେ ବଡ ଆଶ୍ଚର୍ଯ୍ୟ ବୋଧ ହେଲା । କିନ୍ତୁ ଅନେକ ଦିନ ପରେ କଥାଟାର ଅର୍ଥ ବୁଝିପାରିଥିଲି । ଏସବୁ ଭୋଜିରେ ମୁଁ ଅନେକ ସମୟରେ କିଛି ଖାଇ ନଥାଏ । ମୁଁ କେବଳ ରୁଟି, ସିଝା ଗୋଲଆଳୁ ଓ କୋବି ଖାଏ । ଏସବୁ ମଧ୍ୟ ପ୍ରଥମେ ମୋତେ ଭଲଲାଗୁ ନଥାଏ ବୋଲି ମୁଁ ଖାଏ ନାହିଁ କିନ୍ତୁ କେତେ ଦିନ ପରେ ତାହା ଭଲ ଲାଗିବାରୁ ଖାଇଲି ଓ ଅନ୍ୟାନ୍ୟ ତରକାରି ମାଗିବା ପାଇଁ ମଧ୍ୟ ମୋର ସାହସ ହେଲା ।

ବର୍ତ୍ତରପତି ( Benchers ) ମାନଙ୍କ ପାଇଁ ଯେଉଁ ଖାଦ୍ୟ ସାମଗ୍ରୀ ଦିଆ ଯାଇ ଥାଏ ତାହା ଛାତ୍ର ମାନଙ୍କ ଅପେକ୍ଷା ଭଲ । ସେମାନଙ୍କ ପାଇଁ ଥରେ ଯେଉଁ ନିରାମିଷ ଜିନିଷ ପ୍ରସ୍ତୁତ ହୋଇଥିଲା ମୁଁ ଓ ଅନ୍ୟ ଜଣେ ପାର୍ଶି ଛାତ୍ର ତାହା ମଗାଇଲୁ । ଆମ୍ଭର ଅନୁରୋଧ ଗୃହୀତ ହେଲା ଓ ସେମାନଙ୍କ ମେଜରୁ ଆମ୍ଭେ ଦୁହେଁ ଫଳ ଓ ଅନ୍ୟାନ୍ୟ ନିରାମିଷ ଜିନିଷ ଆଣି ଖାଇବା ଆରମ୍ଭ କଲୁଁ ।

ଚାରିଜଣର ଏକ ସମଷ୍ଟି ସକାଶେ ଦୁଇଟି ମଦ ବୋତଲ ଦିଆଯାଇ-ଥାଏ, ମୁଁ ତାହା ସ୍ପର୍ଶ କରେ ନାହିଁ । ସୁତରାଂ ତିନି ଜଣ ମଧ୍ୟରେ ଦୁଇଟି

କାତ ବାନ୍ଧି ପିଇବା ସୁବିଧା ହେବ ବୋଲି ଅନେକ ସମୟରେ ତିନି ଚାରି ଜଣ ମିଶି ମୋତେ ଡାକଥାନ୍ତି । ପ୍ରତି 'ନିର୍ଦ୍ଦିଷ୍ଟ ସମୟ' ( Term ) ରେ 'ପ୍ରଧାନ ରାତ୍ର' ବୋଲି ଗୋଟିଏ ରାତ୍ର ଥାଏ । ସବୁ ଦିନ ମାନଙ୍କରେ ଯେଉଁ ସୁରା ପାନ କରାଯାଇଥାଏ ତାହା ଛଡା ସେତେବେଳେ ଆହୁରି ଉତ୍କୃଷ୍ଟ ଧରଣର ସୁରା ମଧ୍ୟ ପିଆହୁଏ । ସେଦିନ ମୋର ଉପସ୍ଥିତି ବେଶି ଦରକାର ପଡେ କାରଣ ସେହି 'ପ୍ରଧାନ ରାତ୍ର'ରେ ଯୋଗ ଦେବା ପାଇଁ ମୋତେ ଅନେକ ଅନୁରୋଧ କରଥାନ୍ତି ।

ଏସବୁ ଭୋଜନ ଯୋଗୁଁ ଛାତ୍ରମାନେ ଯେ କିପରି ବାରିଷ୍ଟର ପଦ ପାଇଁ ଉପଯୁକ୍ତ ହୁଅନ୍ତି ତାହା ମୁଁ ବୁଝି ପାରି ନଥିଲି ଏବଂ ଏବେ ମଧ୍ୟ ବୁଝି ପାରୁ ନାହିଁ । ବେଳେ ବେଳେ ଅତି ଅଳ୍ପ ଛାତ୍ର ଏହି ଭୋଜନରେ ଯୋଗ ଦେଇଥାନ୍ତି, ସେହେତୁ ବେଞ୍ଚରପତି ଓ ଛାତ୍ର ମାନଙ୍କ ମଧ୍ୟରେ ପରସ୍ପର କଥାବାର୍ତ୍ତା କରିବା ପାଇଁ ସୁବିଧାମିଳେ, ବକ୍ତୃତା ମଧ୍ୟ କୁହା ଯାଇଥାଏ । ସାମାଜିକ ଜ୍ଞାନ ସମ୍ବନ୍ଧେ ସାଧାରଣ କିଛି ଶିଖିବା ପାଇଁ ସେ ସମୟ ବଡ଼ ସାହାଯ୍ୟକାରୀ, ଓ ଛାତ୍ରମାନେ ନିଜ ନିଜର କହିବା ଶକ୍ତି ବଢାଇବା ପାଇଁ ମଧ୍ୟ ସୁବିଧା ହୁଏ । ମୁଁ ପଢ଼ିବା ବେଳେ ଏସବୁ କିଛି ହୋଇ ପାରୁ ନଥିଲା; ବେଞ୍ଚରପତିମାନେ ଛାତ୍ର ମାନଙ୍କଠାରୁ ସବୁବେଳେ ବହୁଦୂର ଅନ୍ତର ହୋଇ ବସୁଥିଲେ । କ୍ରମେ କ୍ରମେ ଅନୁଷ୍ଠାନଟିର ମର୍ଯ୍ୟାଦା ଓ ଅର୍ଥ ବିଲୁପ୍ତ ହେଲଣି ସତ, କିନ୍ତୁ ସେ ଯାହାହେଉ ରକ୍ଷଣଶୀଳ ବିଲାତ ତାହା ରଖିଛି ।

ନିର୍ଦ୍ଧାରିତ ପଢା ବିଷୟ ସବୁ ବଡ ସହଜ । ଉପହାସରେ ବାରିଷ୍ଟର ମାନଙ୍କୁ 'ଭୋଜ ବାରିଷ୍ଟର' ବୋଲି କୁହା ଯାଉଥାଏ । ପରୀକ୍ଷାରେ ଆଦୌ ମୂଲ୍ୟ ନାହିଁ ବୋଲି ସମସ୍ତେ ଜାଣି ଥିଲେ । ମୁଁ ଥିଲା ବେଳେ

"ରୋମର ଆଇନ" ଓ "ସାଧାରଣ ଆଇନ"—ଏହି ଦୁଇଟି ପରୀକ୍ଷା ହେଉଥାଏ । ଏହି ପରୀକ୍ଷା ସକାଶେ ପାଠ୍ୟ ବହି ସବୁ ନିର୍ଦ୍ଧାରିତ ହୋଇଥାଏ ଓ ଭାଗ ଭାଗ କରି ଦୁଇଥର ପରୀକ୍ଷା ଦେବା ପାଇଁ ମଧ୍ୟ ଅନୁମତି ମିଳେ । "ରୋମର ଆଇନ" ପରୀକ୍ଷା ସକାଶେ କେବଳ ଦୁଇମାସ ଓ 'ସାଧାରଣ ଆଇନ' ପରୀକ୍ଷା ପାଇଁ କେବଳ ତିନି ମାସ ମାତ୍ର ପଢି ଛାତ୍ରମାନେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ମୁଁ ଜାଣିଛି, ଏବଂ ପରୀକ୍ଷାର୍ଥୀ ମାନେ ମୂଳ ଗ୍ରନ୍ଥ ନପଢି କେବଳ ଟୀକା ବହି ପଢି ଥାନ୍ତି । ପ୍ରଶ୍ନ କାଗଜ ସବୁ ବଡ ସହଜ ଓ ପରୀକ୍ଷକମାନେ ଦୟାଳୁ । "ରୋମର ଆଇନ" ପରୀକ୍ଷାରେ ଶତକଡା ୯୫ ଠାରୁ ୯୯ ପର୍ଯ୍ୟନ୍ତ ଛାତ୍ର ଉତ୍ତୀର୍ଣ୍ଣ ହୋଇଥାନ୍ତି, ଓ 'ଶେଷ ପରୀକ୍ଷା' (Final Examination) ରେ ଶତକଡା ୭୫ କମ୍ବା ତଦପେକ୍ଷା ଅଧିକ ଛାତ୍ର ଉତ୍ତୀର୍ଣ୍ଣ ହୋଇଥାନ୍ତି । ଅକୃତକାର୍ଯ୍ୟ ହେବା ପାଇଁ ଆଦୌ ଭୟ ନଥାଏ ଓ ପରୀକ୍ଷା ସବୁ ଗୋଟିଏ ଥର ଯେ ହୁଏ ତାହା ନୁହେ ବର୍ଷକରେ ଚାରିଥର । ଏହି ସୁବିଧାଜନକ ପରୀକ୍ଷା ସବୁ କଠିନ ବିବେଚିତ ହେବା କଥା ନୁହେ ।

କିନ୍ତୁ ମୁଁ ଭାଗ ଭାଗ କରି ଦୁଇଥର ନପଢି ଗୋଟିଏଥର ପଢି ପରୀକ୍ଷା ଦେବା ପାଇଁ ନିଶ୍ଚୟ କଲି ଏବଂ ସବୁ ବହି ପଢିବା ଉଚିତ ମନେକଲି । ସବୁ ବହି ନପଢିବା କେବଳ ପ୍ରତାରଣା ବୋଲି ମୁଁ ଭାବିଲି । ତାହା ସବୁ କିଣିବାରେ ଅନେକ ପଇସା ଖରଚ ହେଲା । ଲାଟିନ ଭାଷାରେ 'ରୋମର ଆଇନ' ପଢିବା ପାଇଁ ମୁଁ ସ୍ଥିର କଲି । ଲଣ୍ଡନ ମାଟ୍ରିକ୍ୟୁଲେସନ ପରୀକ୍ଷା ସକାଶେ ଲାଟିନ୍ ଭାଷା ପଢି ମୁଁ ଯାହା କିଛି ଜ୍ଞାନ ଲାଭ କରିଥିଲି ତାହା ମୋର ବଡ ସହାୟତା କଲା । ଏସବୁ ପଢା କିଛି ନିରର୍ଥକ ହୋଇ ନଥିଲା । ଦକ୍ଷିଣ ଆଫ୍ରିକାରେ ତାହା ଅତି ଆବଶ୍ୟକ ହୋଇଥିଲା । ଯଷ୍ଟି-

ଜାଣୁନଙ୍କ ଆଇନ ବହି ପଢ଼ିଥିବା ଯୋଗୁଁ ଦକ୍ଷିଣ ଅଫ୍ରିକା ଆଇନ ବୁଝିବା ପାଇଁ ମୁଁ କିଛି ଅସୁବିଧା ଭୋଗି ନଥିଲି ।

ବିଲାତର ସାଧାରଣ ଆଇନ ପଢ଼ିବା ସକାଶେ ମୋତେ ୯ ମାସ କଠିନ ପରିଶ୍ରମ କରିବା ପାଇଁ ହୋଇଥିଲା । ବ୍ରୁମ୍ ( Broom ) ଲିଖିତ ଏକ ବୃହତ୍ ଅଥଚ ଚିତ୍ତାକର୍ଷକ 'ସାଧାରଣ ଆଇନ' ବହି ଖଣ୍ଡି ବେଶି ସମୟ ନେଇ ଶେଷ କରିଥିଲି । ସ୍ନେଲ ଲିଖିତ "ସ୍ୱାଭାବିକ ନ୍ୟାୟ" ( Equity ) ବହିଟି ପଢିବାକୁ ଭଲ ଲାଗେ କିନ୍ତୁ ବୁଝିବା କଠିନ । ହ୍ୱାଇଟ ଓ ଟ୍ୟୁଡର ସଙ୍କଳିତ 'ଆଦର୍ଶ ମାମଲା' ବହିରୁ ଅମ୍ପ ପଢ଼ା ସକାଶେ କେତୋଟି ମକଦମା ବଚ୍ଛାଚିତ ହୋଇଥିଲା । ସେ ବହିଟି ବଡ ଉପାଦେୟ ଓ ପଢ଼ିବାକୁ ଭଲ ଲାଗେ । ବଡ଼ୁ ଆଦରର ସହିତ ମୁଁ ଉଇଲିଏମ ଓ ଏଡ଼-ୱାର୍ଡ ଲିଖିତ "ପ୍ରକୃତ ସମ୍ପତ୍ତି" ( Real Property ) ଓ ଗୁଡଭ୍ ଲିଖିତ 'ବ୍ୟକ୍ତିଗତ ସମ୍ପତ୍ତି' ( Personal Property ) ବହି ଦୁଇଟି ମଧ୍ୟ ପଢ଼ିଥିଲି । ଉଇଲିଏମ୍ ଙ୍କର ବହିଖଣ୍ଡି ଉପନ୍ୟାସ ପରି ବୋଧ ହେଲା । ଭାର-ତକୁ ଆସିଲାପରେ ମୁଁ ମେଇନ୍ ଲିଖିତ 'ହିନ୍ଦୁ ଆଇନ' ବହି ଖଣ୍ଡି ମଧ୍ୟ ଠିକ ସେହିପରି ଆଦରର ସହିତ ପଢିଥିଲି । କିନ୍ତୁ ଭାରତୀୟ ଆଇନ୍ ବହି ସମ୍ବନ୍ଧେ ଏଠାରେ କହି ବସିବା ଅନାବଶ୍ୟକ ।

ମୁଁ ପରୀକ୍ଷାରେ ପାଶ କଲି ଓ ୧୮୯୧ ଜୁନ ୧୦ ତାରିଖରେ ବାରଷ୍ଟର ପଦ ପାଇ ତା ୧୧ ରିଖରେ ହାଇ କୋର୍ଟରେ ଭରତି ହେଲି । ତା ୧୨ ରିଖରେ ଭାରତ ଆସିବା ପାଇଁ ଜାହାଜରେ ଚଢିଲି । କିନ୍ତୁ ଏସ-ବୁ ପଢ଼ା ପଢି କରି ସୁଦ୍ଧା ମୁଁ ନିରୂପାୟ ହୋଇଥିଲି—ମୋର ଆଶଙ୍କାର ଶେଷ ନଥିଲା । ଓକାଲତି କରିବା ପାଇଁ ମୁଁ ନିଜକୁ ଉପଯୁକ୍ତ ମନେ କରି ନଥିଲି ।

ମହାତ୍ମା ଗାନ୍ଧୀଙ୍କ ଆତ୍ମଚରିତ ।

କିନ୍ତୁ ମୋର ଏହି ନିଃସହାୟତା ବର୍ଣ୍ଣନା କରିବା ପାଇଁ ଗୋଟିଏ ପୃଥକ ପରିଚ୍ଛେଦ ଆବଶ୍ୟକ ।



## ପଞ୍ଚବିଂଶ ପରିଚ୍ଛେଦ ।

( ନିଃସହାୟତା । )



ଅତି ସୁଲଭରେ ବାରିଷ୍ଟରର ପଦବୀ ଲାଭ କରି ହେଲା ସିନା, କିନ୍ତୁ କାର୍ଯ୍ୟ କ୍ଷେତ୍ରରେ କୃତିତ୍ୱ ଲାଭ କରିବା ସହଜ କଥା ନୁହେଁ । ମୁଁ ସବୁ ଆଇନ ପଢିଥିଲେହେଁ କିପରି ଓକାଲତି କରିବାକୁ ହେବ, ତାହା ପଢି-ନଥିଲି । ବଡ଼ ଆଦରର ସହିତ 'ଆଇନ ନୀତି' ସବୁ ପଢିଥିଲି, କିନ୍ତୁ ସେ ଗୁଡ଼ିକ ମଧ୍ୟ କିପରି କାର୍ଯ୍ୟରେ ଉପଯୋଗ କରିବାକୁ ହେବ ତାହା ମୋତେ ଜଣା ନଥିଲା । "ତୁମ୍ଭର ସମ୍ପତ୍ତିକୁ ଏହିପରି ବ୍ୟବହାର କରିବାକୁ ହେବ ଯଦ୍ୱାରା ଅନ୍ୟର ସମ୍ପତ୍ତିରେ କିଛି କ୍ଷତି ନଘଟେ" ଏହା ଆଇନ ନୀତିମାନଙ୍କ ମଧ୍ୟରୁ ଗୋଟିଏ । କିନ୍ତୁ ଜଣେ ଓକିଲ ତାର 'ପାର୍ଟିର' ଲାଭ ଉଦ୍ଦେଶ୍ୟରେ ଏହି ନୀତିଟି କିପରି ଖଟାଇ ପାରିବ ତାହା ମୁଁ ବୁଝିପାରି ନଥିଲି । ଏହି ନୀତି ସମ୍ପର୍କରେ ଅନେକ ଆଦର୍ଶ ମକଦ୍ଦମା ପଢିଲି କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ତାହା କିପରି ବ୍ୟବହାର କରିବାକୁ ହେବ ସେ ବିଷୟ ନେଇ ମୋର କିଛି ଶିକ୍ଷା ଲାଭ ହୋଇଥିଲା ବୋଲି ମୁଁ ବିଶ୍ୱାସ କରିପାରୁ ନାହିଁ ।

ଏବାଦ, ମୁଁ 'ଭାରତୀୟ ଆଇନ' ସମ୍ବନ୍ଧେ ଆଦୌ କିଛି ଶିଖି ନଥିଲି । ହିନ୍ଦୁ ଓ ମୁସଲମାନ ଆଇନରେ ମୋର ଲେଶ ସୁଦ୍ଧା ପ୍ରବେଶ ନଥିଲା । 'ଅଭିଯୋଗ ପତ୍ର', ( Plaint ) ର ନକଲ କରିବା ମଧ୍ୟ ମୋତେ ଆସୁ

ନଥାଏ । ସୁତରାଂ ମୋତେ ସମୁଦ୍ରରେ ପଶିଲା ପରି ଲାଗିଲା । ସର୍ ଫିରୋଜଶା ମେହଟା କଚେରୀରେ ସିଂହପରି ଗର୍ଜ୍ଜନ କରୁଥାନ୍ତି ବୋଲି ମୁଁ ଶୁଣିଥିଲି । ବିଲାତରେ ପଢ଼ି ସେ ଯେ କିପରି ଏହି କୃତିତ୍ୱ ଲାଭ କରିଥିଲେ ତାହା ମୋତେ ଆଶ୍ଚର୍ଯ୍ୟ ଲାଗିଲା । ତାହାଙ୍କ ପରି ମୁଁ କେବେହେଲେ ଓକାଲତିରେ ପାରଦର୍ଶିତା ଲାଭ କରିବି ବୋଲି ଭାବିବା କଥା ନୁହେଁ; କିନ୍ତୁ ଓକାଲତି କରି ଖାଦ୍ୟପାନର ବ୍ୟବସ୍ଥା କରିବା ସକାଶେ କିଛି ପଇସା ପଛ ମଧ୍ୟ ମିଳିବ କି ନାହିଁ ବୋଲି ମୋର ବେଶି ସନ୍ଦେହ ହେଉଥାଏ ।

ଆଇନ ପଢ଼ିଲା ବେଳେ ଏହିପରି ନାନା ଭାବନା ଓ ଅସ୍ଥିରତା ଘେନ ମୁଁ ବଡ଼ ବ୍ୟତିବ୍ୟସ୍ତ ହେଉଥିଲି । ଏହି ଅସୁବିଧା ସମ୍ବନ୍ଧେ ମୋର କେତେ ଜଣ ବନ୍ଧୁଙ୍କୁ କହିଲି । ସେମାନଙ୍କ ମଧ୍ୟରୁ ଜଣେ ମୋତେ କହିଲେ ଯେ ଦାଦାଭାଇ ନାଓରୋଜୀଙ୍କ ଉପଦେଶ ଗ୍ରହଣ କରିବା ଉଚିତ । ପୂର୍ବରୁ କହି ସାରିଛି ମୁଁ ଯେତେବେଳେ ବିଲାତ ଯାଏ ତାହାଙ୍କ ନିକଟକୁ ଖଣ୍ଡିଏ ପରିଚୟ ପତ୍ର ନେଇ ଯାଇଥିଲି । ବହୁଦିନ ପରେ ମୁଁ ସେହି ପତ୍ରର ସତ୍ ବ୍ୟବହାର କରିବାପାଇଁ ଠିକକଲି । ଦେଖା କରିବା ସକାଶେ ତାହାଙ୍କ ପରି ଜଣେ ମହାପୁରୁଷଙ୍କୁ ବ୍ୟସ୍ତ କରିବା ମୋ ପକ୍ଷେ ଅନଧିକାର ଚର୍ଚ୍ଚା ବୋଲି ମୁଁ ମନେ କରିଥିଲି । ସେ ସଭାରେ ବକ୍ତୃତା ଦେଲା ବେଳେ ମୁଁ ସେହି ସଭାରେ ଯୋଗଦିଏ, କୌଣସି ଏକ କୋଣରେ ରହି ବକ୍ତୃତା ଶୁଣେ ଓ ପରିଶେଷରେ ଆଖି ଓ କାନ ପରିତୃପ୍ତ କରି ଫେରି ଆସେ । ଛାତ୍ର ମାନଙ୍କର ଘନିଷ୍ଠ ସମ୍ପର୍କରେ ରହିବା ପାଇଁ ବୋଲି ସେ ଗୋଟିଏ ସମିତି ରଖିଥାନ୍ତି । ସମିତିର ପ୍ରତ୍ୟେକ ଅଧିବେଶନରେ ମୁଁ ଯୋଗ ଦେଉଥାଏ ଓ ଛାତ୍ର ମାନଙ୍କ ପ୍ରତି ଦାଦାଭାଇଙ୍କର ଯେ ଆଦର ଓ ସହାନୁଭୂତି ଏବଂ ବିନମ୍ରପୂର୍ବକ ତାହାଙ୍କ ପ୍ରତି ଛାତ୍ରମାନଙ୍କର ଯେ ଭକ୍ତି ତାହା ଦେଖି ମୁଁ ବଡ଼ ଆନନ୍ଦ

ହୋଇଥାଏ । କିଛି ଦିନ ପରେ ତାହାଙ୍କୁ ସେହି ପରିଚୟ ପତ୍ର ଦେବା ପାଇଁ ସାହସ ବାନ୍ଧିଲି । 'ତୁମର ଯେତେବେଳେ ଇଚ୍ଛା ହୁଏ ମୋଠାରୁ ଆସି ଉପଦେଶ ନେଇ ପାର' ବୋଲି ସେ କହିଲେ, କିନ୍ତୁ ମୁଁ କେବେ-ହେଲେ ତାହାଙ୍କ ଦାନ ଗ୍ରହଣ କରିପାରି ନଥିଲି । ନିତାନ୍ତ ଆବଶ୍ୟକ ନଥିଲା ବେଳେ ତାହାଙ୍କୁ ବ୍ୟସ୍ତ କରିବା ଅନୁଚିତ ହେବ ବୋଲି ମୁଁ ଭାବିଥିଲି । ସୁତରାଂ ସେ ସମୟରେ ମୋର ଅସୁବିଧା ସବୁ ତାହାଙ୍କ ଆଗରେ ବାଢିବା ପାଇଁ ସାହସ ହେଲା ନାହିଁ । ମୋର ଏବେ ମନେ ହେଉନାହିଁ ସେହି ଜଣଙ୍କ ବନ୍ଧୁ କିମ୍ବା ଅନ୍ୟ କେହି ଜଣେ ବନ୍ଧୁ ମିଃ ଫ୍ରେଡ୍ରିକ୍ ପିନକଟଙ୍କ ସହିତ ଦେଖା କରିବା ପାଇଁ କହିଥିଲେ । ସେ ରକ୍ଷଣଶୀଳ ଦଳର ଜଣେ ସ୍ୱଜାତିଙ୍କ କିନ୍ତୁ ଭାରତୀୟ ଛାତ୍ରମାନଙ୍କ ପ୍ରତି ତାହାଙ୍କର ପବିତ୍ର ଓ ଅକ-ପଟ ସ୍ନେହଥାଏ । ଅନେକ ଛାତ୍ର ତାଙ୍କଠାରୁ ଉପଦେଶ ନେଇଥାନ୍ତି—ମୁଁ ମଧ୍ୟ ତାଙ୍କ ସହିତ ଦେଖା କରିବା ପାଇଁ ପତ୍ର ଦେଲି, ସେ ମୋତେ ଅନୁମତି ଦେଲେ । ତାଙ୍କ ସହିତ ମୋର ଯେଉଁ ଦେଖା ହୋଇଥିଲା ତାହା ମୁଁ ପାଶୋରି ନପାରେ । ସେ ମୋତେ ଜଣେ ବନ୍ଧୁ ପରି ସମ୍ଭାଷଣ କରିଥିଲେ । ଜଗତଟା ନିରବଚ୍ଛିନ୍ନ ଦୁଃଖ-ଭଣ୍ଡାର ବୋଲି ଯେ ମୋର ଧାରଣା ଥିଲା ତାହା ସେ ହସି ଉଡେଇ ଦେଇଥିଲେ । 'ତୁମେ କଣ ଭାବୁଛ ସମସ୍ତେ ଫିରୋଜସା ମେହଟାଙ୍କ ଭଳି ହୋଇ ପାରିବେ ? ଫିରୋଜସା ଓ ବାଡ୍ରୁଡ଼ିନଙ୍କ ପରି ଆଇନଜ୍ଞ ଅତି ବିରଳ । ଏତିକି ବୁଝି ରଖ ଯେ ଜଣେ ସାଧାରଣ ଓକିଲ ହେବାପାଇଁ କିଛି ଅସାଧାରଣ ଶକ୍ତି ଆବଶ୍ୟକ ହୋଇନଥାଏ । ସାଧାରଣ ଭଦ୍ରତା ଓ ପରିଶ୍ରମ ସାହାଯ୍ୟରେ ସେ ସହଜରେ ଅନ୍ତତଃ ଖାଦ୍ୟ ପାନର ବ୍ୟବସ୍ଥା କରି ପାରନ୍ତି । ସବୁ ମକଦ୍ଦମାତ ଜଟିଳ ନୁହେ । ଆଚ୍ଛା ତୁମେ କେତେ ଦୂର ପଢା ପଢ଼ି କରିଛ ତାହା ମୁଁ ଜାଣିବା ଇଚ୍ଛା କରେ" ବୋଲି ମୋତେ ସେ କହିଲେ ।

ମୁଁ ଯେତେବେଳେ ମୋର ଅତି କମ ପଢା କଥା ତାଙ୍କୁ କହିଲି ସେ ତାହା ଶୁଣି ଅଭ୍ରପ୍ତ ହେଲାପରି ଦେଖାଗଲେ । କିନ୍ତୁ ସେହିକ୍ଷଣି ହସଭରା ମୁଖରେ କହିଲେ, "ମୁଁ ଆପଣଙ୍କ ଅସୁବିଧା କଥା ବୁଝିପାରୁଛି । ଆପଣଙ୍କର ସାଧାରଣ ପଢ଼ା ଅତି କମ; ସଂସାର ସମ୍ବନ୍ଧେ ଆପଣଙ୍କର ଆଦୌ ଜ୍ଞାନ ନାହିଁ । ଭାରତ ଇତିହାସ ମଧ୍ୟ ଆପଣ ପଢ଼ି ନାହାନ୍ତି । ମନୁଷ୍ୟର ସ୍ୱଭାବ ସମ୍ବନ୍ଧେ ଜଣେ ଓକିଲ କିଛି ଜାଣିବା ଦରକାର । ମୁହଁ ଦେଖି ଜଣକର ଚରିତ୍ର ନିରୂପଣ କରିବା ପାଇଁ ସେ ସମର୍ଥ ହେବା କଥା । ପ୍ରତ୍ୟେକ ଭାରତବାସୀ ଭାରତ ଇତିହାସ ଜାଣିବା ଉଚିତ । ଓକାଲତି କରିବା ସଙ୍ଗେ ଏହାର କିଛି ସଂପର୍କ ନାହିଁ ସତ, କିନ୍ତୁ ଆପଣ ତାହା ଜାଣିବା ଉଚିତ । ମୁଁ ଦେଖୁଛି 'କେ' ଓ 'ମାଲସନ' ଲିଖିତ ୧୮୫୭ ସାଲର "ଭାରତ ବିଦ୍ରୋହ" ବହିଟି ମଧ୍ୟ ଆପଣ ପଢି ନାହାନ୍ତି । ଶୀଘ୍ର ତାହା ପଢ଼ନ୍ତୁ ଓ ମନୁଷ୍ୟର ସ୍ୱଭାବ ଜାଣିବା ପାଇଁ ଆଉ ଦୁଇଖଣ୍ଡ ବହି ମଧ୍ୟ ଅଣାନ୍ତୁ । 'ଚରିତ୍ର ନିରୂପଣ' ସମ୍ବନ୍ଧେ ଲେଭେଟାର ଓ ଷେମଲ ପେନକଙ୍କର ଦୁଇଟି ବହି ପଢ଼ିବା ପାଇଁ ସେ କହିଲେ ।

ଏହି ପୂଜ୍ୟପାଦ ବନ୍ଧୁଙ୍କ ପ୍ରତି ମୁଁ ବଡ଼ କୃତଜ୍ଞ ହେଲି, ଦେଖିଲି ତାଙ୍କ ସମ୍ମୁଖରେ ମୋର ସବୁ ଆଶଙ୍କା ଦୂର ହୋଇଗଲା । କିନ୍ତୁ ଯେତେବେଳେ ମୁଁ ତାଙ୍କ ଠାରୁ ବିଦାୟ ନେଲି ପୁନରପି ନାନା ଆଶଙ୍କା ଆସି ମନରେ ପ୍ରବେଶ କଲା । 'ମୁହଁ ଦେଖି ଜଣକୁ ଚିହ୍ନିବା' ଏକଥା କେବଳ ଭାବିବାକୁ ଲାଗିଲି । ଏପରିକି ବାଟରେ ଆସୁ ଆସୁ ମଧ୍ୟ ସେହି କଥା ଭାବୁଥାଏ । ପରଦିନ ଲେଭେଟରଙ୍କ ବହିଖଣ୍ଡି କିଣିଲି । ଷେମଲ ପେନଙ୍କ ବହିଟି ଦୋକାନରେ ମିଳୁନଥିଲା । ସେଲଙ୍କ 'ସ୍ୱାଭାବିକ ନ୍ୟାୟ' ବହି ଅପେକ୍ଷା ଏହା ବେଶି କଷ୍ଟ ବୋଧ କଲି । ସେଥିରେ ଆଦର ଜନ୍ମିଲା ନାହିଁ ।

ସେକ୍ସ ପିଅରଙ୍କ 'ଜଗତ ନିରୂପଣ' ବହି ଖଣ୍ଡିକ ମଧ୍ୟ ପଢ଼ିଥିଲି କିନ୍ତୁ ଲଣ୍ଡନରେ ସାହୁମାନଙ୍କରେ ଯେ କେତେ ସେକ୍ସପିଅର ଯିବା ଆସିବା କରୁଥିଲେ ତାଙ୍କୁ କପଟ ଚଳିବାକୁ ହେବ ସେ ଶକ୍ତି ମୁଁ ପାଇ ପାରୁନଥିଲି ।

ଲେକ୍ଟରଙ୍କ ବହି ଖଣ୍ଡି ମୋତେ ବେଶି କିଛି ଶିକ୍ଷା ଦେଇ ପାରୁନଥିଲା । ପିନ୍କାଟଙ୍କର ଉପଦେଶ ମୋତେ ସାମାନ୍ୟ କିଛି ସାହାଯ୍ୟ କରିଥିଲା । କିନ୍ତୁ ତାଙ୍କର ସ୍ନେହ ଲାଗି ମୁଁ ବଡ଼ ଉପକୃତ ହୋଇଥିଲି । ତାଙ୍କର ସେହି ହସଭରା ମୁଖ ମୋର ମନରୁ ପାଶୋର ଯିବା କଥା ନୁହେ । ଫିରୋଜଶାଙ୍କ ପରି ମସ୍ତିଷ୍କ, କ୍ଷମତା ଓ ବୁଦ୍ଧି ଜଣେ ଓକିଲ ପକ୍ଷେ ନିତାନ୍ତ ଆବଶ୍ୟକ ନୁହେଁ; କେବଳ ଭଦ୍ରତା ଓ ପରିଶ୍ରମ ଥିଲେ ଯଥେଷ୍ଟ ବୋଲି ସେ ଉପଦେଶ ଦେଇଥିଲେ ତାହା ମୁଁ ବିଶ୍ୱାସ କଲି । ମୋଠାରେ ଶେଷ ଦୁଇଟି ଗୁଣରୁ କିଛି ଅଂଶ ଥିଲା ବୋଲି ଟିକିଏ ଆଶ୍ୱାସିତ ହେଲି ।

'କେ' ଓ 'ମାଲସନ'ଙ୍କ ବହିଟିମାନ ମୁଁ ବିଲାତ ଅଧିବାସ ସମୟରେ ପଢି ପାରୁନଥିଲି । ସମୟ ପାଇଲେ ପଢ଼ିବି ବୋଲି ନିଶ୍ଚୟ କରିଥିଲି, ଦକ୍ଷିଣ ଆଫ୍ରିକାଠାରେ ସୁବିଧା ଦେଖି ସେ ଦୁଇଟି ବହି ପଢ଼ିଲି ।

'ନୈଃସହାଯ୍ୟତା' ମଧ୍ୟରେ ଆଶାର କ୍ଷୀଣରେଖା ଦେଖି ମୁଁ ବୋମ୍ବାଇରେ ଉପସ୍ଥିତ ହେଲି । ବନ୍ଦରଠାରେ ସମୁଦ୍ର ବଡ଼ ଭୀଷଣାକାର ଧରିଥିଲା । ସୁତରାଂ ଜାହାଜଠାରୁ କୂଳକୁ ପହଞ୍ଚିବା ପାଇଁ ଗୋଟିଏ ନୌକାରେ ଆସିବାକୁ ହୋଇଥିଲା ।

( ପ୍ରଥମ ଭାଗ ସମାପ୍ତ । )



# ପ୍ରଥମ ପରିଚ୍ଛେଦ ।

( ସମୁଦ୍ର ଝଡ଼ । )



ମୁଁ ପୂର୍ବ ପରିଚ୍ଛେଦରେ କହିଛି ବୋମ୍ବାଇ ବନ୍ଦର ଠାରେ ସମୁଦ୍ର ବଡ ଭୀଷଣ ଆକାର ଧାରଣ କରିଥିଲା—ଜୁନ ଓ ଜୁଲାଇ ମାସରେ ଆରବ ସାଗରର ଏହିପରି ଅବସ୍ଥା ହେବା କିଛି ବିଚିତ୍ର ନୁହେ । ଏଡେନ ଠାରୁ ବୋମ୍ବାଇ ପର୍ଯ୍ୟନ୍ତ ବାଟଯାକ ବେଶି ଅସୁବିଧା ଭୋଗିବାକୁ ପଡ଼ିଥିଲା, ପ୍ରାୟ ସବୁ ଯାତ୍ରୀ ଅସୁସ୍ଥ ହୋଇ ଥିଲେ—ମୋର କିନ୍ତୁ କିଛି ବେମାରି ହୋଇ ନଥିଲା । ମୁଁ ଜାହାଜର ପଛ ପଟରେ ରହି ସମୁଦ୍ରର ଜୁଆର ଭଟ୍ଟା ଦେଖି ଆନନ୍ଦ ଅନୁଭବ କରୁଥିଲି । ମୋ ନିକଟରେ ଜଣେ ଦୁଇଜଣ ବସି ସକାଳ ଖିଆ ପାଇଁ ଯବଚୂନା ପିଠା ଖାଉଥାନ୍ତି । ପିଠାରୁ କିଛି ତଳେ ପଡ଼ିଯିବା ଭୟରେ ସେମାନେ ପାତ୍ର ଗୁଡ଼ିକ ପୋଟାଳ ଧରିଥାନ୍ତି ।

ସମୁଦ୍ରର ଯେ ଅସ୍ଥିର ଅବସ୍ଥା ତାହା ମୋର ଅନ୍ତର ଅବସ୍ଥାର ନିଦର୍ଶନ ମାତ୍ର ବୋଲି ମୁଁ ମନେ କରିଥିଲି; କିନ୍ତୁ ବାହ୍ୟ ଦୃଶ୍ୟ ଦେଖି ମୁଁ ଯେପରି ବ୍ୟଥିତ ହୋଇ ନଥିଲି, ଭିତରର ଅସ୍ଥିର ଅବସ୍ଥା ମଧ୍ୟ ସେହିପରି ମୋତେ ଅଥୟ କରିପାରି ନଥିଲା ବୋଲି ମୁଁ କହିପାରେ । କିନ୍ତୁ ଜାତିଭାଇ ମାନଙ୍କର ଯେ କଣ୍ଟକଣା, ତାହା ମୋର ବିରୁଦ୍ଧରେ ଛିଡ଼ା ହେବ ବୋଲି ଭୟ ହେଉଥାଏ । ମୋର କାର୍ଯ୍ୟ କ୍ଷେତ୍ରର ନିଃସହାୟତା ସମ୍ବନ୍ଧେ ମୁଁ କହି ସାରିଛି । ଏବାଦ ମୁଁ ଜଣେ ସଂସ୍କାରକ ଥିଲି—କିପରି ସାମାନ୍ୟ କିଛି

ସଂସାର ଆରମ୍ଭ କରିବାକୁ ହେବ ସେ ସମ୍ବନ୍ଧେ ମୁଁ ସବୁବେଳେ ଭାବୁଥାଏ, କିନ୍ତୁ ମୋର ଅଗୋଚରରେ ଆହୁରି ଏହାପରି ଅନେକ ଅସୁବିଧା ମୋ ପାଇଁ ଗଚ୍ଛିତ ଥିଲା ।

ମୋତେ ଭେଟିବା ପାଇଁ ମୋର ବଡ ଭାଇ ବୋମ୍ବାଇଠାକୁ ଆସିଥିଲେ । ଇତି ମଧ୍ୟରେ ସେ ଡାକ୍ତର ମେହେଠାଙ୍କ ଓ ତାଙ୍କ ବଡ ଭାଇଙ୍କର ପରିଚୟ ଲାଭ କରି ପାରିଥିଲେ । ଡାକ୍ତର ମେହେଠା ଧରିବସିଲେ ଯେ, ମୁଁ ତାଙ୍କ ଘରେ ଉତ୍ତରିବାକୁ ହେବ । ସୁତରାଂ ଆମ୍ଭେ ତାଙ୍କ ଘରକୁ ଗଲୁଁ । ବିଲାତରେ ତାଙ୍କ ସହିତ ମୋର ଯେଉଁ ପରିଚୟ ଆରମ୍ଭ ହୋଇଥିଲା ଭାରତରେ ତାହା ଅକ୍ଷୁନ୍ନ ରହିଲା ଓ ଦୁଇ ପରିବାର ମଧ୍ୟରେ ତାହା ଘନିଷ୍ଠ ବନ୍ଧୁତାରେ ପରିଣତ ହେଲା ।

ମାଆଙ୍କୁ ଦେଖିବା ପାଇଁ ମୁଁ ଝୁରି ହେଉଥିଲି । କିନ୍ତୁ ମୁଁ ଫେରିଲେ ମୋତେ କୋଳ କରି ଆଲିଙ୍ଗନ କରିବା ପାଇଁ ସେ ଆଉ ରକ୍ତ ମାଂସ ଶରୀର ଧରି ଇହ ଜଗତରେ ନାହାନ୍ତି ବୋଲି ମୁଁ ଶୁଣି ନଥିଲି । ମୋତେ ଏହି ଶୋକ ଖବର ବୋମ୍ବାଇ ଠାରେ ମିଳିଲା । କୁଳାଚାର ଅନୁସାରେ ମୁଁ ସ୍ନାନାଦି କଲି । ମୁଁ ବିଲାତରେ ଥିଲାବେଳେ ତାଙ୍କର 'କାଳ' ହୋଇ ଯାଇଥିଲା । ସେ ସମ୍ବନ୍ଧେ ଭାଇ ମୋତେ ସୂଚନା ମଧ୍ୟ ଦେଇ ନଥିଲେ । ବିଦେଶରେ ଏହି ଖବର ନଶୁଣିବା ଭଲବୋଲି ବୋଧହୁଏ ସେ ଭାବିଲେ । ଖବରଟା ମୋପକ୍ଷେ ଅବଶ୍ୟ ଅସହ୍ୟ କିନ୍ତୁ ସେ ସମ୍ବନ୍ଧେ ବେଶି କିଛି କହୁନାହିଁ । ପିତାଙ୍କ ମରଣ ଦୁଃଖ ଅପେକ୍ଷା ମାଆଙ୍କ ମୃତ୍ୟୁ ଖବର ବେଶି ଅସହନୀୟ ହୋଇଥିଲା । ମୁଁ ଯେଉଁ ଆଶା ପୋଷିଥିଲି ସେ ସବୁ ବିଚୂର୍ଣ୍ଣିତ ହୋଇଗଲା । କିନ୍ତୁ ମୋର ମନେ ଅଛି ମୁଁ ବେଶି କିଛି କାନ୍ଦା କନ୍ଦି କରି

ନଥିଲି । କାନ୍ଦ ଆସିଲେ ମଧ୍ୟ ବନ୍ଦ କରି ସତେ କିଛି ନଘଟିଲାପରି କାର୍ଯ୍ୟରେ ଲାଗିଲି ।

ଡାକ୍ତର ମେହଟା ତାଙ୍କର ଅନେକ ବନ୍ଧୁଙ୍କ ସହିତ ମୋତେ ପରିଚିତ କରାଇଥିଲେ । ସେମାନଙ୍କ ମଧ୍ୟରୁ ତାଙ୍କର ଭାଇ ରେବାଶଙ୍କର ଜଗଜ୍ଜୀବନ ଜଣେ । ତାଙ୍କ ସହିତ ମୋର ଯେ ବନ୍ଧୁତା ଆରମ୍ଭ ହେଲା, ତାହା ଆଜୀବନ ଅକ୍ଷୁଣ୍ଣ ରହିଥିଲା । କିନ୍ତୁ ଅନ୍ୟ ଜଣକର ପରିଚୟ ସମ୍ବନ୍ଧେ ବିଶେଷ କହିବା ମୋର ଉଦ୍ଦେଶ୍ୟ । ସେ ମେହଟାଙ୍କ ବଡ଼ ଭାଇଙ୍କ ଜ୍ୱାଇଁ — କବି 'ରାୟଚାନ୍ଦ' ଓରଫ 'ରାଜଚନ୍ଦ୍ର' । ସେତେବେଳେ ତାଙ୍କର ବୟସ ପଚିଶି ବର୍ଷରୁ ଅଧିକ ନୁହେଁ; କିନ୍ତୁ ତାଙ୍କ ସହିତ ପ୍ରଥମ ସାକ୍ଷାତରୁ ମୁଁ ବୁଝି ପାରିଥିଲି ଯେ ସେ ବଡ଼ ଚରିତ୍ରବାନ ଓ ପଣ୍ଡିତ । ସେ 'ଶତାବଧାନୀ' ରୂପେ ମଧ୍ୟ ପରିଚିତ ଥିଲେ; ଅର୍ଥାତ୍ ଏକ ସମୟରେ ଶହେକଥା ମନେ ରଖିବା କିମ୍ବା ଶହେ କଥାରେ ମନଯୋଗ କରିବା ଶକ୍ତି ତାଙ୍କର ଥାଏ । ତାଙ୍କର ମାନସିକ ଶକ୍ତିର ପରୀକ୍ଷା କରିବା ପାଇଁ ମେହଟା ମୋତେ କହିଲେ । ମୁଁ ଯେତେ ୟୁରୋପୀୟ ଭାଷା ଶିଖିଥିଲି ସେଥିରୁ ମୁଁ ଜାଣିବା ପଦ ଗୁଡ଼ିକ କହି ପୁନରାବୃତ୍ତି କରିବା ପାଇଁ ତାଙ୍କୁ ଅନୁରୋଧ କଲି । ମୁଁ ଯେପରି କହିଥିଲି, ସେ ଅବିକଳ ସେହିପରି ଗୋଟିକ ପରେ ଗୋଟିଏ ପଦ କହିଗଲେ । ତାଙ୍କର ଏହି ଶକ୍ତି ଦେଖି ମୁଁ ବିମୁଗ୍ଧ ନହେଲେହେଁ ତାଙ୍କ ପରି ମୋର କାହିଁକି ଶକ୍ତି ହେଲା ନାହିଁ ବୋଲି ଭାବିବାକୁ ଲାଗିଲି । ଯେଉଁ ଶକ୍ତି ମୋତେ ତାଙ୍କର ମନ୍ତ୍ର- ଜାଲରେ ପକାଇଥିଲା ସେ ସମ୍ବନ୍ଧେ ମୁଁ ପରେ ଜାଣିଲି । ତାହା ଆଉ କିଛି ନୁହେଁ, ଧର୍ମ୍ମ ଶାସ୍ତ୍ରରେ ତାଙ୍କର ବିସ୍ତୃତ ଜ୍ଞାନଲାଭ, କଳଙ୍କ ଶୂନ୍ୟ ଚରିତ୍ର ଓ ଆତ୍ମଜ୍ଞାନ ସକାଶେ ଏକାନ୍ତ ଅଭିଳାଷ । ଶେଷୋକ୍ତ ବିଷୟ ଲାଗି କେବଳ ସେ ଜୀବନ ଧରିଥିଲେ

ବୋଲି ମୁଁ ପରେ ବୁଝିଲି । ମୁକ୍ତାନନ୍ଦଙ୍କର ନିମ୍ନଲିଖିତ ପଂକ୍ତି ଗୁଡ଼ିକ ଯେପରି ତାଙ୍କ ହୃଦୟ ପଟରେ ଅଙ୍କିତ ହୋଇଥିଲା ଓ ସବୁବେଳେ ସେ-ସବୁଡ଼ିକ ସେ ଉଚ୍ଚାରଣ କରୁଥିଲେ— "ଯେତେବେଳେ ମୋର ଦୈନିକ କାର୍ଯ୍ୟ ଭିତରେ ମୁଁ ଭଗବାନଙ୍କୁ ଦେଖିପାରିବ ସେତେବେଳେ କେବଳ ନିଜକୁ ସୁଖୀ ମନେ କରିବି । ବାସ୍ତବ କଥା ଭଗବାନ ମୁକ୍ତାନନ୍ଦଙ୍କ ଜୀବନ-ନୌକା ଧରି ଅଛନ୍ତି" ।

ରାୟଚନ୍ଦ ଭାଇ ଗୋଟିଏ ବଡ଼ ଦୋକାନର ଅଂଶଦାର ଥିଲେ । ସେ ହଜାର ୨ ଟଙ୍କାର ବ୍ୟବହାର କରୁଥାନ୍ତି । ଯେ କୌଣସି ଜଟିଳ କାର୍ଯ୍ୟ ହେଲେ ମଧ୍ୟ ତାଙ୍କ ପକ୍ଷେ ତାହା କିଛି କଠିନ ନୁହେ । କିନ୍ତୁ ଏହା ସବୁ ଯେ ସ୍ତମ୍ଭ ସ୍ୱରୂପ ରହି ତାଙ୍କର ଜୀବନ-ଚକ୍ର ବୁଲାଉଥିଲା, ତାହା ନୁହେ । ତାଙ୍କର ଏକମାତ୍ର ଆକାଂକ୍ଷା ଭଗବାନଙ୍କୁ ନିଜର ସମ୍ମୁଖରେ ଦର୍ଶନ କରିବା । ତାଙ୍କ ମେଜା ଉପରେ ଅନ୍ୟାନ୍ୟ ଜିନିସ ମଧ୍ୟରେ ସବୁବେଳେ ଖଣ୍ଡେ ଧର୍ମ ଗ୍ରନ୍ଥ ଓ ଡ଼ାଇରି ରଖାଯାଇ ଥାଏ । କାର୍ଯ୍ୟରୁ ଅବ୍ୟାହତି ପାଇଲା କ୍ଷଣି ସେ ଉକ୍ତ ବହିଖଣ୍ଡି କିମ୍ବା ଡ଼ାଇରି ଖଣ୍ଡି ଖୋଲି ପଢ଼ୁଥାନ୍ତି । ତାଙ୍କର ଯେଉଁ ସବୁ ଲେଖା ପ୍ରକାଶ ପାଇଛି, ତାହା ସବୁ ତାଙ୍କ ଡ଼ାଇରିରୁ ବାହାର କରାଯାଇଛି । ଯେଉଁ ବ୍ୟବହାର ବିଷୟ ନେଇ ଅନେକ କଥାବାର୍ତ୍ତା ଶେଷ କରି କରି ଅନନ୍ତ ଓ ଅବ୍ୟକ୍ତ ବିଷୟ ଲେଖିବାକୁ ଆରମ୍ଭ କରନ୍ତି; ତାଙ୍କୁ କଦାପି ଜଣେ ବ୍ୟବହାରୀ ବୋଲି କୁହାଯାଇ ନପାରେ, ସେ ଜଣେ ସତ୍ୟର ଉପାସକ । ବ୍ୟବହାର ଜଞ୍ଜାଳରେ ଥାଇ ସୁଦ୍ଧା ସେ ଯେ ଭଗବାନଙ୍କ ତତ୍ତ୍ୱ ଅନ୍ୱେଷଣରେ ନିଜକୁ ନିମଜ୍ଜାଇ ଥାନ୍ତି, ତାହାଥରେ ଦୁଇଥର ନୁହେ ମୁଁ ଅନେକ ଥର ଦେଖିଛି । କେବେହେଲେ ସେ ମନର ସରସତା ହରାଇ ଥିବା ମୁଁ ଜାଣିନାହିଁ । ବ୍ୟବହାର କିମ୍ବା ଅନ୍ୟ କୌଣସି ସ୍ୱାର୍ଥ ନେଇ ଆମ୍ଭ

ଦୁହିଙ୍କ ମଧ୍ୟରେ ସମ୍ପର୍କ ନଥିଲେହେଁ ମୁଁ ତାଙ୍କର ପରମ ବନ୍ଧୁ ହୋଇ ପାରି ଥିଲି । ସେତେବେଳେ ମୁଁ ଜଣେ ସାମାନ୍ୟ କାର୍ଯ୍ୟଶୂନ୍ୟ ବାରିଷ୍ଟର ତଥାପି ମୁଁ ;ଯେତେବେଳେ ତାଙ୍କୁ ଦେଖେ, ସେ ମୋ ସହିତ ଧର୍ମ ବିଷୟ ନେଇ କଠିନ ପ୍ରଶ୍ନର ସମାଲୋଚନା କରିଥାନ୍ତି । ମୁଁ ସେତେବେଳେ ଧର୍ମ ଚର୍ଚ୍ଚା ପାଇଁ ଚେଷ୍ଟା ମାତ୍ର କରୁଥାଏ ଓ ଧର୍ମ ସମ୍ବନ୍ଧ ବାଦାନୁବାଦ କରିବାରେ ମୋର ବେଶି କିଛି ଅନୁରାଗ ନଥିଲେ ମଧ୍ୟ ତାଙ୍କର କଥାରେ ମୁଁ ବିମୁଗ୍ଧ ହୋଇ ଥାଏ । ମୁଁ ଅନେକ ଧର୍ମନେତା ତଥା ଶିକ୍ଷକ ଦେଖିଛି, ନାନା ମତର ଅଧ୍ୟକ୍ଷମାନଙ୍କ ସହିତ କଥାବାର୍ତ୍ତା କରିଛି କିନ୍ତୁ ମୋ ଦୃଷ୍ଟିରେ ସେମାନଙ୍କ ମଧ୍ୟରୁ କେହିହେଲେ ରାୟଚନ୍ଦ ଭାଇଙ୍କପରି ନୁହନ୍ତି । ସେ ଯାହା କହନ୍ତି ମୋର ମନରେ ଅଙ୍କିତ ହୋଇଯାଏ । ତାଙ୍କର ମେଧାଶକ୍ତି ଯେପରି ମୋର ସମ୍ମାନର ପାତ୍ର ନୈତିକ ଆନ୍ତରିକତା ମଧ୍ୟ ସେହିପରି ଏବଂ ମୋର ଏହି ଦୃଢ଼ ବିଶ୍ୱାସ ଥିଲା ଯେ, ଜାଣି ଜାଣି ସେ ମୋତେ କେବେହେଲେ କୁପଥଗାମୀ କରାଇବେ ନାହିଁ; କିନ୍ତୁ ତାଙ୍କ ଅନ୍ତରର ଭାବ ମୋଠାରେ ଫିଟାଇ କହିବେ। ଆଧ୍ୟାତ୍ମିକ ପ୍ରଶ୍ନ ସମାଧାନ କରିବା ପାଇଁ ଯେତେବେଳେ ଦରକାର ହୁଏ ମୁଁ ତାଙ୍କର ଆଶ୍ରୟ ନେଇ ଥାଏ ।

ରାୟଚନ୍ଦଙ୍କ ପ୍ରତି ମୋର ଏତେଦୂର ସମ୍ମାନ ଥିଲେ ମଧ୍ୟ ମୁଁ ତାଙ୍କୁ ଗୁରୁ ସ୍ୱରୂପ ମୋର ହୃଦୟ-ସିଂହାସନରେ ବସାଇ ପାରିନଥିଲି । ସିଂହାସନଟି ଖାଲି ପଡ଼ିଛି, କିନ୍ତୁ ମୁଁ ଆହୁରି ଗୁରୁ ଖୋଜି ବୁଲୁଛି ।

ହିନ୍ଦୁମାନେ ବିଶ୍ୱାସ କରନ୍ତି, ଆଧ୍ୟାତ୍ମିକ ଜ୍ଞାନ ଲାଭ କରିବାକୁ ହେଲେ ଗୁରୁ ଆବଶ୍ୟକ । ମୋର ମଧ୍ୟ ଏଥିରେ ଦ୍ୱୈଧ ମତ ନାହିଁ । ଗୁରୁ ବିନା ପ୍ରକୃତ ଜ୍ଞାନ ଲାଭ ଅସମ୍ଭବ ବୋଲି ଯେ କହନ୍ତି ସେଥିରେ ବେଶି ସତ୍ୟ ଅଛି । ସାଂସାରିକ ବିଷୟ ଶିକ୍ଷା କରିବାକୁ ହେଲେ ଜଣେ ସାଧାରଣ

ଶିକ୍ଷକ ଗ୍ରହଣ କରାଯାଇ ପାରନ୍ତି କିନ୍ତୁ ଆଧାତ୍ମିକ ଜ୍ଞାନଲାଭ କରିବା ପାଇଁ ଜଣେ କୁଶଳଙ୍କ ଶିକ୍ଷକ ଦରକାର । ତ୍ରୁଟି ଶୂନ୍ୟ ଜ୍ଞାନୀ ଜଣେ ମାତ୍ର ଗୁରୁର ଆସନ ପାଇଁ ଯୋଗ୍ୟ । ସୁତରାଂ ପବିତ୍ର ଜୀବନ ଲାଭ ସକାଶେ ନିରବଚ୍ଛିନ୍ନ ଚେଷ୍ଟା କରିବା ନିତାନ୍ତ ଆବଶ୍ୟକ କାରଣ ଯିଏ ଯେଉଁପରି ଗୁରୁ ପାଇବା ଅଧିକାରୀ ସେ ସେହିପରି ଗୁରୁ ପାଇଥାଏ । ପବିତ୍ର ଜୀବନ ଲାଭ ପାଇଁ ଅନବରତ ଚେଷ୍ଟା କରିବା ପ୍ରତ୍ୟେକଙ୍କର ଅଧିକାର ଅଛି । ସେହି ପବିତ୍ର ଜୀବନହିଁ ଉକ୍ତ ଚେଷ୍ଟାର ଯୋଗ୍ୟ ପୁରସ୍କାର । ଆଉ ସବୁ ଭଗବାନଙ୍କ ହାତରେ ନିର୍ଭର ।

ରାୟଚାନ୍ଦ ଭାଇଙ୍କୁ ଗୁରୁ ସ୍ୱରୂପ ମୁଁ ମୋର ହୃଦୟ-ସିଂହାସନରେ ବସାଇ ପାରୁ ନଥିଲେହେଁ ଅନେକ ସମୟରେ ସେ ଯେ କିପରି ମୋର ସାହାଯ୍ୟକାରୀ ଓ ପଥ ପ୍ରଦର୍ଶକ ତାହା ପରେ କହିବି । ତିନି ଜଣ ଆଧୁନିକ ବ୍ୟକ୍ତିଙ୍କ ସଂପର୍କରେ ଆସି ମୁଁ ବିମୁଗ୍ଧ ହୋଇ ଅଛି ଓ ମୋର ଜୀବନରେ ପରିବର୍ତ୍ତନ ଆସିଛି । ରାୟଚାନ୍ଦ ଭାଇଙ୍କ ଜୀବନ୍ତ ସଂସ୍ପର୍ଶ ସମ୍ବନ୍ଧ, ଟଲ୍‌ଷ୍ଟଇଙ୍କ ବହି 'ଭଗବାନଙ୍କ ରାଜ୍ୟ ତୁମ ଭିତରେ' (The Kingdom of God is within you) ଓ ରସ୍କିନଙ୍କ ବହି, 'ଶେଷଯାଏ' (Unto the Last) ଯୋଗୁଁ ମୋର ଗତି ରୀତି କିପରି ବଦଳି ଥିଲା ତାହା ଯଥା ସ୍ଥାନରେ କହିବି ।



# ଦ୍ୱିତୀୟ ପରିଚ୍ଛେଦ ।

( ବାରିଷ୍ଟର ଜୀବନ ଆରମ୍ଭ । )



ବଡ ଭାଇ ମୋଠାରେ ବେଶି ଆଶା ରଖି ଥିଲେ । ମୁଁ କିପରି ଧନ ଓ ଖ୍ୟାତି ଲାଭ କରିବି ତାଂକର ସେହି ଅଭିଳାଷ ଥିଲା । ସେ ବଡ଼ ଉଦାର ହୃଦୟ, କ୍ଷମାଶୀଳ ଓ ତାଂକ ସ୍ୱଭାବ ନିତାନ୍ତ ସରଳ । ଏସବୁ ଗୁଣ ଲାଗି ସେ ବହୁ ଲୋକଙ୍କର ପ୍ରୀତିଭାଜନ ହୋଇଥିଲେ ଏବଂ ସେମାନଂକ ଦ୍ୱାରା ମୋ ପାଇଁ କାର୍ଯ୍ୟ ସଂଗ୍ରହ କରିବେ ବୋଲି ଆଶା କରିଥିଲେ । ସେ ଭାବିଥିଲେ, ମୁଁ ଏଆଡେ ସେ ଆଡେ ଯାଇ ଓକାଲତି କରିବି । ସେହି ଭାବନାରେ ଘରର ଖରଚ ସବୁ ବଢ଼ାଇ ଦେଇଥିଲେ । ମୋର କାର୍ଯ୍ୟ ସମ୍ବନ୍ଧେ ଯାହା ଯୋଗାଡ କରିବା କଥା, ସବୁ ସେ କରି ନେଇ ଥିଲେ ।

ମୋର ବିଦେଶ ଯିବା ହେତୁ ଆମ୍ଭ ଜ୍ଞାତି ଭାଇଙ୍କ ମହଲରେ ଯେଉଁ ଚହଲ ପଡ଼ି ଥିଲା ତାହା ଆହୁରି ଶେଷ ହୋଇ ନଥିଲା । ଜ୍ଞାତି-ଲୋକ ସମସ୍ତେ ଦୁଇଭାଗ ହୋଇ ଯାଇ ଥିଲେ । ସେଥିରୁ ଗୋଟିଏ ଦଳ ମୋତେ ସେହିକ୍ଷଣି ଗ୍ରହଣ କଲେ, କିନ୍ତୁ ଅନ୍ୟ ଏକ ଦଳ ସବୁବେଳେ ଅଜାତିଆ କରି ରଖିବା ସକାଶେ ବଦ୍ଧପରିକର ହେଲେ । ପ୍ରଥମ ଦଳ-ଙ୍କୁ ସନ୍ତୁଷ୍ଟ କରିବା ପାଇଁ ଭାଇ ମୋତେ ରାଜକୋଟ ନେବା ପୂର୍ବରୁ ନାଶିକ ନେଇ ଥିଲେ । ମୁଁ ନଦୀରେ ସ୍ନାନ କରି ପବିତ୍ର ବିବେଚିତ ହୋଇ-ଥିଲି ଓ ଆମ୍ଭେ ରାଜକୋଟରେ ଯେତେବେଳେ ପହଞ୍ଚିଲୁ ଗୋଟିଏ ଜାତି ଭୋଜି ମଧ୍ୟ ହୋଇ ଥିଲା । ମୁଁ ଏସବୁ ଭଲ ମଣି ନଥିଲି । କିନ୍ତୁ ଭାଇଙ୍କର ମୋ ପ୍ରତି ଯେପରି ଅସୀମ ପ୍ରେମ ସେହି ଅନୁପାତରେ ତାଙ୍କ ପ୍ରତି ମୋର

ସମ୍ମାନ ଥାଏ । ସୁତରାଂ ତାଙ୍କର ଆଦେଶ ସବୁ ବାଧ୍ୟବାଧ ମନେ କରି ସେ ଯାହା କହନ୍ତି ମୁଁ ସେ ସବୁ ଯନ୍ତ୍ର ସ୍ୱରୂପ ପାଳନ କରିଥାଏ । ପୁନରପି ଜାତିରେ ମିଶିବା ଅସୁବିଧା ଏହିପରି ଦୂର ହୋଇଗଲା ।

ଯେଉଁ ଦଳ ମୋତେ ସମାଜରେ ପ୍ରବେଶ ନିଷେଧ କରିଥିଲେ ମୁଁ ତାଙ୍କ ସହିତ ମିଶିବା ପାଇଁ କେବେହେଲେ ଚେଷ୍ଟା କରି ନଥିଲି କିମ୍ବା ସେହି ଦଳର ପ୍ରଧାନ ଲୋକଙ୍କ ବିରୁଦ୍ଧରେ କିଛି ଭାବ ନଥିଲି । ସେମାନଙ୍କ ମଧ୍ୟରୁ ଅନେକ ମୋତେ ଘୃଣା କରୁଥାନ୍ତି ସତ, କିନ୍ତୁ ମୁଁ ତାଙ୍କ ପଥ ଅନୁସରଣ କରି ନଥାଏ । ଅଜାତିଆ ଲୋକ ବିରୁଦ୍ଧରେ ଯାହା ସବୁ କୁଳର ନିୟମ ଥାଏ, ମୁଁ ସେ ସବୁ ପାଳନ କରିଥିଲି । ଉକ୍ତ ନିୟମାନୁସାରେ ମୋର ସମସ୍ତ ବନ୍ଧୁ ବାନ୍ଧବ —ଏପରିକି ସାସୁ ଶ୍ୱଶୁର, କିମ୍ବା ଭଉଣୀ ଭଣୋଇଁ ସୁଦ୍ଧା ମୋତେ ଖାଇବାକୁ ଦେବା ନିଷେଧ । ସେମାନଙ୍କ ଘରେ ପାଣିପିଇବା ପାଇଁ ମଧ୍ୟ ମନା । ଗୋପନରେ ସେମାନେ ଏହି ନିବାରଣକୁ ଏଡ଼ି ଦେବା ସକାଶେ ଚେଷ୍ଟା କରି ବସନ୍ତି । କିନ୍ତୁ ଯାହା ମୁଁ ସ୍ୱଚ୍ଛନ୍ଦରେ କରିବା ପାଇଁ ନିଷେଧ, ତାହା ଗୋପନରେ କରିବା ପାଇଁ ମୋର ଇଚ୍ଛା ହୋଇ ନଥାଏ ।

ମୁଁ ସ୍ଥିର ଭାବରେ ସବୁ ବିଷୟ ଚଳାଇ ନେଉ ଥିବା ଯୋଗୁଁ କେବେ ହେଲେ କୁଳ ଲାଗି ଅସୁବିଧା ଭୋଗି ନାହିଁ । କେବଳ ତାହା ନୁହେ, ମୋତେ ଯେଉଁ ଦଳ ଆଜଯାଏ ସୁଦ୍ଧା ଅଜାତିଆ ବୋଲି ମନେ କରୁ ଅଛନ୍ତି, ସେମାନଙ୍କଠାରୁ ଆଦର ବିନା ମୁଁ ଆଉ କିଛି ଅନୁଭବ କରୁନାହିଁ । ସାଧାରଣତଃ ସମସ୍ତେ ମୋ ପ୍ରତି ଅନୁରକ୍ତ ଓ ଦୟାଳୁ । କୁଳ ପାଇଁ ବୋଲି ମୁଁ କେବେ କିଛି କରିବି ନାହିଁ ଜାଣି ସୁଦ୍ଧା ସେମାନେ ମୋର କାର୍ଯ୍ୟରେ ସାହାଯ୍ୟ କରିଥାନ୍ତି । ମୋର ବିଶ୍ୱାସ, ଏହି ଶୁଭ କଥା

ସବୁ କେବଳ ମୋର ଅନୁକୂଳ ଆଚରଣ ଯୋଗୁଁ । ମୁଁ ଯଦି ସ୍କୁଲରେ ମିଶିବା ପାଇଁ ଆନ୍ଦୋଳନ କରୁଥାନ୍ତି, ନୂଆ ନୂଆ ଦଳ ସୃଷ୍ଟି କରିବା ସକାଶେ ଚେଷ୍ଟା କରୁଥାନ୍ତି, ଏବଂ ଲୋକଙ୍କୁ ଠକେଇ ଥାନ୍ତି ତାହାହେଲେ ବିନାସ୍ତ୍ରମରେ ସେମାନେ ମୋତେ ହରଣ କରୁଥାନ୍ତେ । ବିଲାତରୁ ଫେରି ସେଥିରୁ ରକ୍ଷା ପାଇବା ପରିବର୍ତ୍ତେ ତାର କରାଳ ଚକ୍ରରେ ପଡନ୍ତି ଏବଂ ବୋଧ ହୁଏ ମୋତେ କପଟ ବୋଲି ମଧ ଲୋକେ କହନ୍ତେ ।

ମୋ' ସ୍ତ୍ରୀଙ୍କ ସହିତ ଯେପରି ସମ୍ପର୍କ ରଖିବା ଉଚିତ ମନେ କରୁଥିଲି, ଆହୁରି ସେହି ପରି ହୋଇ ପାରିନଥିଲା । ବିଲାତରେ ରହି ମଧ ତାଙ୍କୁ ସନ୍ଦେହ କରିବା ଅଭ୍ୟାସଟା ମୁଁ ଛାଡ଼ି ପାରି ନଥିଲି । ତାଙ୍କର ପ୍ରତି ସାମାନ୍ୟ କଥାରେ ମୁଁ ପୂର୍ବପରି ବ୍ୟସ୍ତ ଓ ସନ୍ଦିଗ୍ଧଚିତ୍ତ ହେଉଥାଏ । ସୁତରାଂ ମୋର ପୋଷିତ ଆଶା ସବୁ ଅପୂର୍ଣ୍ଣ ରହିଥିଲା । ମୁଁ ସ୍ଥିର କରିଥିଲି, ସେ ଲେଖାପଢା କରିବେ ଓ ତାଙ୍କ ପଢ଼ାରେ ମୁଁ ସାହାଯ୍ୟ କରିବି । କିନ୍ତୁ ମୋର କାମୁକଭାବ ତାର ଅନ୍ତରାୟ ହେଲା ଓ ମୋର ଏହି ଦୁର୍ବଳତା ଲାଗି ସେ କଷ୍ଟଗ୍ରସ୍ତା ହେଲେ । ଥରେ କ୍ରୋଧରେ ତାଙ୍କୁ ବାପ ଘରକୁ ମଧ ପଠାଇ ଦେଇଥିଲି ଓ ସେ ନିତାନ୍ତ ଶୋକ ବିହ୍ୱଳା ହେବା ଦେଖି ପୁନରପି ଗ୍ରହଣ କରିବାକୁ ସ୍ୱୀକାର କଲି । ଏସବୁ ମୋର ନିର୍ବୋଧ କାର୍ଯ୍ୟ ବୋଲି ମୁଁ ଅନେକ ଦିନପରେ ବୁଝିଲି ।

ଘରେ ପିଲାମାନଙ୍କ ପଢ଼ାର ସଂସ୍କାର କରିବାକୁ ଠିକ୍ କରିଥିଲି । ମୋର ଭାଇଙ୍କର ପିଲାମାନେ ଥିଲେ । ମୁଁ ବିଲାତ ଯିବା ବେଳେ ଘରେ ଯେଉଁ ଶିଶୁଟିକୁ ଛାଡ଼ି ଯାଇଥିଲି ସେ ଏବେ ପ୍ରାୟ ଚାରିବର୍ଷ ବୟସର ବାଳକ । ଏହି ଶିଶୁ ଗୁଡ଼ିକୁ ବ୍ୟାୟାମ ଓ କସରତ ଶିକ୍ଷା ଦେଇ ମୋଟା ମୋଟା କରାଇବା ଓ ନିଜେ ସେମାନଙ୍କର ତତ୍ତ୍ୱାବଧାନ କରିବା ମୋର

ଉଦ୍ଦେଶ୍ୟ । ଭାଇଙ୍କ ଠାରୁ ମଧ ସାହାଯ୍ୟ ପାଇଥିଲି ଓ ନ୍ୟୂନାଧିକ ପରି-ମାଣରେ ମୋର ଚେଷ୍ଟା ସଫଳ ହୋଇଥିଲା । ପିଲାଙ୍କ ସଙ୍ଗେ ରହିବା ପାଇଁ ମୋତେ ବଡ଼ ଭଲ ଲାଗେ ଓ ଏବେ ମଧ ସେମାନଙ୍କ ସହିତ ଖେଳ ପରିହାସ କରିବା ଅଭ୍ୟାସଟା ରହିଯାଇ ଅଛି । ସେହି ଦିନଠାରୁ ମୁଁ ଭାବିଲି ପିଲାମାନଙ୍କର ଶିକ୍ଷକ ହେବା ପାଇଁ କେବଳ ମୁଁ ଉପଯୁକ୍ତ ।

ଖାଦ୍ୟ ଜିନିସର ଯେ ସଂସ୍କାର ଆବଶ୍ୟକ, ତାହାତ ଜଣାଶୁଣା କଥା । ମୁଁ ବିଲାତରୁ ଫେରିଲା ବେଳକୁ ଘରର ଅବସ୍ଥା ସବୁ ବିଲାତି ଢଙ୍ଗରେ ଯୋଗାଡ଼ ରଖିଥିବା ପାଇଁ ଭାଇଙ୍କର ଇଚ୍ଛା । ସୁତରାଂ ଘରର ଅନେକ ଜିନିସ, ଯାହାକି ବେଳେ ବେଳେ ବ୍ୟବହାର କରିବା ସକାଶେ ରଖାଯାଇ ଥାଏ, ସେ ସବୁ ଏଥର ଦୈନିକ ବ୍ୟବହାରରେ ଲାଗିଲା । ଯବଚୂନା ପିଠା, କାଫି ଓ ଚା ପରିବର୍ତ୍ତେ ମୁଁ କୋକ ଖାଇଲି । କିନ୍ତୁ କାଫି ଓ ଚା ପୂର୍ବପରି ରହିଲା, କୋକ ଗୋଟିଏ ନୂଆଁ ଜିନିସ ରୂପେ ମିଶିଲା । ଚଟି ଓ ଜୋତାତ ପୂର୍ବରୁ ଥାଏ । ୟୁରୋପୀୟ ପୋଷାକ ମିଶାଇ ଦେଇ ମୁଁ ଘରର ୟୁରୋପୀୟ ଢଙ୍ଗଟା ପୂର୍ଣ୍ଣ କରିଦେଲି ।

ଘରର ଖରଚ ସବୁ ବଢିବାକୁ ଲାଗିଲା । ପ୍ରତିଦିନ ନୂଆ ନୂଆ ଜିନିସ ମିଶିଲା । ଐରାବତ ହାତୀକୁ ଆଣି ଘରେ ବାନ୍ଧିବା ପାଇଁ ଆମ୍ଭେ ସମର୍ଥ ହୋଇଥିଲୁ ସତ, କିନ୍ତୁ ତା ପାଇଁ ଖାଦ୍ୟ ଜିନିସ ଆସୁଛି କୁଆଡୁ ? ରାଜକୋଟରେ ଓକାଲତି କରିବା ସକାଶେ ଆରମ୍ଭ କରିବା କେବଳ ଲଜ୍ଜାର କଥା । ଜଣେ ଓକିଲର ଯାହା ଉପଯୁକ୍ତ ଜ୍ଞାନ ତାହା ମୋ' ଠାରେ ନଥାଏ, ତଥାପି ଅପେକ୍ଷାକୃତ ମୁଁ ଦଶ ଗୁଣ ପଇସା ଲୋଡ଼ିବସେ । କେହି ଯଦି ଅଧମ ହୋଇଥାନ୍ତି ତେବେ ମୋତେ ସେ ଓକାଲତି ଦେବା କଥା । ତଥାପି ଯଦି କେହି ମୋତେ କାର୍ଯ୍ୟ ଦିଅନ୍ତି, ତାହା

ଗ୍ରହଣ କରି ମୋର ମୂର୍ଖତାରେ ଗର୍ବ ଓ ବଞ୍ଚନା ମିଶାଇ ବା କଣ ଧର୍ମହୀନ ହେବ? ଓ ଜଗତରେ ଜନ୍ମହୋଇ ଜଗତଠାରେ ମୁଁ ଯେ ଋଣୀ ହୋଇ ସାରଛି, ଉକ୍ତ ଋଣରେ ଭାର ବଢ଼ାଇବା କଣ ଉଚିତ ହେବ ?

ବୋମ୍ବାଇକୁ ଯାଇ ସେଠା ହାଇ କୋର୍ଟରେ କେତେଦିନ ଅକାଶେ ଓକାଲତି କରିବା ସକାଶେ ବନ୍ଧୁ ମାନେ ଉପଦେଶ ଦେଲେ ସେଠାରେ ରହି ଭାରତୀୟ ଆଇନ ପଢ଼ିବା ଓ ଯାହା ପଇସା ମିଳିବ ସେଥିରେ ଚଳିବା ପାଇଁ ଚେଷ୍ଟା କଲେ ଭଲ ହେବ ବୋଲି ସେମାନଙ୍କର ଇଚ୍ଛା । ଏହି ଉପଦେଶ ଗ୍ରହଣ କରି ମୁଁ ବୋମ୍ବାଇକୁ ଗଲି ।

ମୋ' ଭଲଅ ଜଣେ ଅଯୋଗ୍ୟ ପାଚକ ନେଇ ଏଠାରେ ଗୋଟିଏ ବସା ଆରମ୍ଭ କଲି । ପାଚକଟି ବ୍ରାହ୍ମଣ । ମୁଁ ତାଙ୍କୁ ଚାକର ପରି ବ୍ୟବହାର ନକରି ପରିବାରର ଜଣେ ଲୋକ ବୋଲି ଦେଖୁଥାଏ । ସେ ସବୁବେଳେ ଦେହରେ ପାଣି ଅଜାଡ଼ି ଦେଉଥାନ୍ତି କିନ୍ତୁ ଘଷାଘଷି ହୁଅନ୍ତି ନାହିଁ । ତାଙ୍କର ଧୋତିଟି ଯେପରି ଅପରିଷ୍କୃତ ପଇତାଟି ମଧ୍ୟ ସେହିପରି । ଧର୍ମଶାସ୍ତ୍ର କ'ଣ ସେ କିଛି ଜାଣି ନଥିଲେ । କିନ୍ତୁ ମୁଁ କିପରି ଜଣେ ଭଲ ପାଚକ ପାଆନ୍ତି ?

ମୁଁ ତାଙ୍କୁ ପଚାରେ, "ଅଚ୍ଛା ରବିଶଙ୍କର, କପରି ଭଲ ଭାବେ ରାନ୍ଧିବାକୁ ହୁଏ ତାହା ତୁମେ ଜାଣି ନପାର କିନ୍ତୁ ସନ୍ଧ୍ୟା ( ଦୈନିକ ଉପାସନା ) ଇତ୍ୟାଦି ନିଶ୍ଚୟ ଜାଣିବାକୁ ହେବ ।" ସେ ଉତ୍ତର ଦେଇ କହିଲେ, "ସନ୍ଧ୍ୟା ! ମହାଶୟ, ଲଙ୍ଗଳ କେବଳ ଆମର ସନ୍ଧ୍ୟା, ଆଉ କୋଡ଼ ଯେ ଦୈନିକ ପୂଜାର ପ୍ରଥା, ମୁଁ ସେହି ଧରଣର ବ୍ରାହ୍ମଣ । ତୁମ ଦୟା ଓ ଧର୍ମ ଲାଗି ଏଠାରେ ରହିବା କଥା—ନଇଲେ ମୋରତ କୃଷି କାର୍ଯ୍ୟ ଅଛି ।"

ଯେହେତୁ ମୁଁ ଉଦ୍ଭିଦଭୋଜୀଙ୍କର ଶିକ୍ଷକତା କରିବାକୁ ପଡ଼ିଥିଲା । ମୋତେତ ଅନେକ ସମୟ ମିଳେ । ଉଦ୍ଧାର ପ୍ରାୟ ଅଧେକାଂଶ ମୁଁ କରୁଥାଏ ଓ ଇଂରେଜମାନେ ଯେପରି ନିରାମିଷ ଜିନିଷ ରାନ୍ଧନ୍ତି ମୁଁ ମଧ୍ୟ ସେହିପରି ରାନ୍ଧ ଥାଏ । ଷ୍ଟୋଭ ( ଏକପ୍ରକାର ଚୁଲି ) କିଣି ଉଦ୍ଭିଦଙ୍କର ସହିତ ରାନ୍ଧିବା ଆରମ୍ଭ କଲି । ତାଙ୍କ ସହିତ ଏକତ୍ର ଭୋଜନ କରିବାପାଇଁ ମୋର କିଛି ଆପତ୍ତି ନଥାଏ; କ୍ରମେ କ୍ରମେ ତାଙ୍କର ମଧ୍ୟ ଆଦୌ ଆପତ୍ତି ରହିଲା ନାହିଁ—ସୁତରାଂ ଦୁହେଁ ସୁଖରେ ଚଳିବାକୁ ଲାଗିଲୁଁ । କିନ୍ତୁ ଗୋଟିଏ ଅସୁବିଧା ମାତ୍ର ଥାଏ—ଅପରିଷ୍କୃତ ଭାବେ ଜୀବନ କଟାଇବା ଓ ଖାଦ୍ୟ ଜିନିଷ ଅଜାଡ଼ିଇ ରଖିବା ସବାଶେ ଉଦ୍ଭିଦଙ୍କର ବୋଧହୁଏ ଶପଥ କରିଥିଲେ ।

ଚାରିପାଞ୍ଚ ମାସ ଠାରୁ ଆଉ ଅଧିକା ସମୟ ପାଇଁ ବୋମ୍ବାଇରେ ରହିବା ମୋ ପକ୍ଷେ ଅସମ୍ଭବ ହୋଇ ପଡ଼ିଲା । ମୋର ବ୍ୟୟଟା ଦିନୁଁ ଦିନ ବଢ଼ୁଥାଏ କିନ୍ତୁ ଏଆଡ଼େ କିଛି ଆଦାୟ ହୁଏ ନାହିଁ ।

ଏହିପରି ମୁଁ ମୋର 'ବାରିଷ୍ଟର ଜୀବନ ଆରମ୍ଭ' କଲି । ଦେଖିଲି ବାରିଷ୍ଟର କାର୍ଯ୍ୟ ବଡ଼ ନିକୃଷ୍ଟ-ମାହାଙ୍କାଳ ଫଳ ସଦୃଶ୍ୟ-ବାହ୍ୟ ଚାକଚକ୍ୟଟା ବେଶି କିନ୍ତୁ ଭିତରେ ଜ୍ଞାନ ବୋଲି କିଛି ନାହିଁ । ମୋର ଦାୟିତ୍ୱ ଜ୍ଞାନ ମଧ୍ୟ ରହୁନାହିଁ ବୋଲି ମନେ କଲି ।



# ତୃତୀୟ ପରିଚ୍ଛେଦ ।

( ପ୍ରଥମ ମକଦ୍ଦମା । )

---

ବୋମ୍ବାଇରେ ଥିଲାବେଳେ ମୁଁ ଭାରତୀୟ ଆଇନ ପଢୁଥାଏ ଓ ମକଦ୍ଦମା ପ୍ରଭୃତି ଉପରେ ଗତିବାକୁ ହେବ ସେ ସବୁ ମଧ୍ୟ ଶିଖୁଥାଏ । ବୀରଚନ୍ଦ ଗାନ୍ଧୀ ନାମକ ମୋର ଜଣେ ବନ୍ଧୁ ମଧ୍ୟ ମୋ ସହିତ ଥାଆନ୍ତି । ମୋ ପାଇଁ କାର୍ଯ୍ୟ ସଂଗ୍ରହ କରିବା ସକାଶେ ଭାଇ ଯଥାସମ୍ଭବ ଚେଷ୍ଟା କରୁଥିଲେ ।

ଭାରତୀୟ ଆଇନ ବହି ପଢ଼ିବା ବଡ କଷ୍ଟର କଥା । 'ସିଭିଲ ପ୍ରୋସିଜର କୋଡ' ବହିଟି ମୁଁ ବହୁତ ଚେଷ୍ଟା ସତ୍ତ୍ୱେ ପଢ଼ି ପାରିଲି ନାହିଁ । ସେ ଯାହା ହେଉ 'ସାକ୍ଷ୍ୟ ଆଇନ' ( Evidence Act ) ବହିଟି ସେପରି କଠିନ ହୋଇ ନଥିଲା । ବୀରଚନ୍ଦ ଗାନ୍ଧୀ ମୁକ୍ତ୍ୟାର ପରୀକ୍ଷା ଦେବା ସକାଶେ ପଢ଼ୁଥିଲେ । ବାରିଷ୍ଟର ଓ ଓକିଲମାନଙ୍କ ସମ୍ବନ୍ଧେ ମୋତେ ସେ ଅନେକ କଥା କହୁଥାନ୍ତି । ସେ କହନ୍ତି, ' ସର ଫିରୋଜଶାଙ୍କର ଓକିଲାତି ବ୍ୟବସାୟରେ ଯେ ଏତେ ପ୍ରତିପତ୍ତି ତାହା ବହୁତ ଆଇନ ବହି ପଢିବା ଯୋଗୁଁ 'ସାକ୍ଷ୍ୟ ଆଇନ' ବହିଟି ଯାକ ସେ ମୁଖସ୍ଥ କରିଅଛନ୍ତି ଓ ୩୨ ସେକସନରେ ସମସ୍ତ ମକଦ୍ଦମା ସେ ଜାଣନ୍ତି । ବଦୃଦିନ୍ ତୟାବଜଙ୍କର ଯୁକ୍ତି ତର୍କ ଶକ୍ତି ଦେଖି ବିଚାରପତିମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇଥାନ୍ତି" ।

ଏମାନଙ୍କ ପରି ଯୋଦ୍ଧାମାନଙ୍କ ସମ୍ବନ୍ଧେ ନାନା କଥା ଶୁଣି ମୁଁ ବଡ଼ ଅଥୟ ହୋଇଥାଏ ।

ଅନ୍ୟ ସମୟରେ ସେ କହନ୍ତି, "ଭଲରୂପେ କାର୍ଯ୍ୟ ମିଳିବା ପୂର୍ବରୁ ଜଣେ ବାରିଷ୍ଟର ଯେ ଅନ୍ତତଃ ପାଞ୍ଚ ସାତ ବର୍ଷ ଏହିପରି ଚଳିବାକୁ ହେବ, ତାହା କିଛି ଅସ୍ୱାଭାବିକ ନୁହେ । ସେହେତୁ ମୁଁ ସଲିସିଟର ପଢ଼ିବା ସ୍ଥିରକଲି । ଯଦି ତିନି ବର୍ଷ ମଧ୍ୟରେ ତୁମେ ଭଲ କାର୍ଯ୍ୟ ପାଅ, ତାହାହେଲେ ନିଜକୁ ଭାଗ୍ୟବାନ ମନେ କରିବ" ।

ପ୍ରତି ମାସରେ ବ୍ୟୟବୃଦ୍ଧି ବଢୁଥାଏ । ଘରେଥାଇ ଏଆଡ଼େ ବାରିଷ୍ଟର କାର୍ଯ୍ୟ ଶିକ୍ଷା କରୁଥିଲି ବେଳେ ଘର ବାହାରେ ବାରିଷ୍ଟର—ପଟା ଟାଙ୍ଗିବା ପାଇଁ ମୋତେ ଅଡୁଆ ବୋଧ ହେଉଥାଏ । ସୁତରାଂ ମୁଁ ଧୀର ସ୍ଥିରଭାବେ ପଢ଼ା ପଢି କରିପାରେ ନାହିଁ । 'ସାକ୍ଷ୍ୟ ଆଇନ' ବହିଟା ପଢିବା ପାଇଁ ଟିକିଏ ଇଚ୍ଛା ହୋଇଥିଲା ଓ ମେଇନ୍‌ଲିଖିତ 'ହିନ୍ଦୁ ଆଇନ' ଶୀର୍ଷକ ବହିଟି ବହୁ ଆଦରର ସହିତ ପଢିଥିଲି--କିନ୍ତୁ ଗୋଟିଏ ହେଲେ ମକଦ୍ଦମା ଚଳାଇବା ପାଇଁ ମୋର ସାହସ ହୋଇପାରି ନଥିଲା । ନୂତନରେ ବୋହୂ ଶାଶୁ ଘରକୁ ଅସିଲେ ନିଜକୁ ଯେପରି ନିଃସହାୟ ମନେ କରିଥାଏ, ମୁଁ ମଧ ଠିକ ସେହିପରି ଅନୁଭବ କରିଥିଲି । ମୋର ନିଃସହାୟତା କହିଲେ ନସରେ ।

ଠିକ ଏହି ସମୟରେ ମାମିବାଯ୍ଇ ବୋଲି ଜଣେ ସ୍ତ୍ରୀଙ୍କର ଗୋଟିଏ ମକଦ୍ଦମା ଗ୍ରହଣ କଲି । ତାହା ଗୋଟିଏ 'ଛୋଟ ମକଦ୍ଦମା' । 'ତୁମ୍ଭେ ମକଦ୍ଦମା ଘଟାଇବା ଲୋକଙ୍କୁ କିଛି କମିଶନ ଦେବାକୁ ହେବ' ବୋଲି ମାମିବାଯ୍ଇଙ୍କ ଲୋକ କହିଲେ, କିନ୍ତୁ ମୁଁ ତାହା ଏକା ବେଳକେ ନାମଞ୍ଜୁର କଲି ।

ସେ—"କିନ୍ତୁ ଅମୁକ 'ଦଣ୍ଡନୀତଜ୍ଞ' ଓକିଲ ମାସକୁ ତିନ ଚାରି ହଜାର ଉପାର୍ଜନ କରି ମଧ୍ୟ କମିଶନ ଦେଉଛନ୍ତି" !

ମୁଁ ।—"ମୁଁ ତାଙ୍କ ସଙ୍ଗେ ପ୍ରତିଯୋଗିତା କରିବାକୁ ଚାହେଁ ନାହିଁ । ମାସକୁ ତିନିଶହ ଟଙ୍କା ହେଲେ ମୋତେ ଯଥେଷ୍ଟ । ବାପାଙ୍କ ଆଉ ବେଶି ପାଉ ନଥିଲେ" ।

ସେ—"କିନ୍ତୁ ସେ ଦିନତ ଆଉ ନାହିଁ । ବୋମ୍ବାଇରେ ରହିବା ଲୋକଙ୍କ ଖରଚ ବେଶି ବଢ଼ି ଗଲାଣି । ତୁମେ ବେପାର ପରି ବ୍ୟବହାର କରିବାକୁ ହେବ" ।

ମୁଁ କିନ୍ତୁ ଅଟଳ ରହିଲି । କମିଶନ ନଦେଇ ମଧ ମାମିବାଈଙ୍କ ମକଦ୍ଦମାଟି ପାଇଲି । ମକଦ୍ଦମାଟି ବଡ ସରଳ । ମୋର ପରିଶ୍ରମ ପାଇଁ ତିରିଶ ଟଙ୍କା ମାଗିଲି । ମକଦ୍ଦମାଟି ଗୋଟିଏ ଦିନରୁ ଅଧିକ ଲାଗିବା କଥା ନୁହେ ।

'ଛୋଟ ମକଦ୍ଦମା ଅଦାଲତ' ( Small Causes Court )ରେ ଏହା ମୋର ପ୍ରଥମ ପ୍ରବେଶ । ମୁଁ ପ୍ରତିବାଦୀ ସପକ୍ଷରେ ଥିଲି ସୁତରାଂ ବାଦୀ ପକ୍ଷର ସାକ୍ଷି ମାନଙ୍କୁ ଜଟିଳ ପ୍ରଶ୍ନ ପଚାରିବା କଥା । ଚୌକି ଉପରୁ ଉଠିଲି କିନ୍ତୁ କିଛି ପଚାରିବା ପାଇଁ ସାହସ ହେଲା ନାହିଁ — ଗୋଡ ତଳକୁ ଚାହିଁ ରହିଲି । ମୋର ମୁଣ୍ଡ ଘୂରିବାକୁ ଲାଗିଲା—ଅଦାଲତରେ ସମସ୍ତଙ୍କର ଅବସ୍ଥା ମୋର ପରି ବୋଲି ମନେକଲି । କି ପ୍ରଶ୍ନ ପଚାରିବି ତାହା ଭାବି ପାରିଲି ନାହିଁ । ବିଚାରପତି ବୋଧହୁଏ ହସିଥିବେ ଏବଂ ଓକିଲମାନେ ଦୃଶ୍ୟଟି ଦେଖି ଆନନ୍ଦିତ ହେବା କଥା । କିନ୍ତୁ ମୁଁ ଏସବୁ କିଛି ଦେଖିନଥିଲି ପରିଶେଷରେ ବସି ପଡ଼ିଲି ଓ ମାମିବାଈଙ୍କ ତରଫରେ ଯେଉଁ ଲୋକ ମୋତେ ମକଦ୍ଦମା ଦେଇଥିଲେ; ତାଙ୍କୁ କହିଲି "ମୁଁ ମକଦ୍ଦମାଟି ଚଳାଇ ପାରିବି ନାହିଁ, ମୋଠାରୁ ଟଙ୍କାତକ ଫେରାଇ ନେଇ ପଟେଲଙ୍କୁ ଦେବା ଉଚିତ" । ୫୧ ଟଙ୍କା ନେଇ ପଟେଲ ସେହିକ୍ଷଣେ ମକଦ୍ଦମାଟି ଗ୍ରହଣ କଲେ, ତାଙ୍କ ପକ୍ଷେ ତାହା ପିଲା ଖେଳ ପରି ।

ଅଦାଲତରୁ ଘରକୁ ଶୀଘ୍ର ବାହାର ଆସିଲି । ମାମିବାଈ ମକଦ୍ଦମାରେ ହାରଲେ କି ଜିଣିଲେ ମୁଁ ଜାଣି ନାହିଁ, ମୁଁ କିନ୍ତୁ ବଡ଼ ଲଜ୍ଜିତ ହେଲି ଓ ସେହି ଦିନଠାରୁ ନିଶ୍ଚୟ କଲି ଯେ ମକଦ୍ଦମା ଚଳାଇବା ପାଇଁ ସାହସ ହେବାଯାଏ ଆଉ ମକଦ୍ଦମା ଗ୍ରହଣ କରିବି ନାହିଁ । ଦକ୍ଷିଣ ଆଫ୍ରିକାକୁ ଯିବା ପର୍ଯ୍ୟନ୍ତ ସତେ ମୁଁ ଆଉ ଅଦାଲତକୁ ଗଲିନାହିଁ । ମୋର ଏହି ସିଦ୍ଧାନ୍ତ ଅବଶ୍ୟ ନୀତି ମୂଳକ ନୁହେ । ଆବଶ୍ୟକ ପଡ଼ିଲା ବୋଲି ମୁଁ ଏହି ସାଧୁ ଆଚରଣ କରିଥିଲି । ଅଧମ ନ ହୋଇଥିଲେ ମୋତେ କେହି ମକଦ୍ଦମା ଦେବା କଥା ନୁହେ—ମକଦ୍ଦମାରେ ହାରିବା ପାଇଁ ମୋତେ କିଏବା ନିଯୁକ୍ତ କରିବ ?

କିନ୍ତୁ ବୋମ୍ବାଇରେ ମୋ ପାଇଁ ଆଉ ଗୋଟିଏ ମକଦ୍ଦମା ଗଚ୍ଛିତ ଥିଲା । ସେ ସମ୍ପର୍କରେ ଗୋଟିଏ ଦରଖାସ୍ତ ଲେଖିବା କଥା । ପୋର ବନ୍ଦରର ଜଣେ ଗରିବ ମୁସଲମାନର ଭୂମି ଖଣ୍ଡି ରାଜ ସମ୍ପତ୍ତି ସ୍ୱରୂପ ଭୁକ୍ତ କରି ଯାଇଥିଲା । ମୋତେ ପିତାଙ୍କର ଯୋଗ୍ୟ ସନ୍ତାନ ମନେକରି ସେ ମୋ ନିକଟକୁ ଆସିଥିଲେ । ତାଙ୍କର ଅଭିଯୋଗଟା ଦୁର୍ବଳ ପରି ମୋତେ ଜଣା ଗଲା, କିନ୍ତୁ ଦରଖାସ୍ତ ଖଣ୍ଡିଏ ଲେଖି ଦେବା ପାଇଁ ମୁଁ ସ୍ୱୀକାର କଲି । ଦରଖାସ୍ତ ଛପାଇବା ବ୍ୟୟ ଭାରଟା ସେ ନିଜେ ବହିଲେ । ନକଲଟି ଲେଖି ସାରି ମୁଁ ବନ୍ଧୁମାନଙ୍କୁ ଶୁଣାଇଲି । ସେମାନେ ତାହା ମନୋନୀତ କଲେ । ସେଥିରୁ ମୁଁ ବୁଝିଲି ଯେ ଦରଖାସ୍ତ ନକଲ ଲେଖିବା ସକାଶେ ମୋର ପୂର୍ଣ୍ଣ ଯୋଗ୍ୟତା ଅଛି—ବାସ୍ତବିକ ମୋର ସେହି ଶକ୍ତି ଥିଲା ।

କିନ୍ତୁ ପଇସା ନ ନେଇ ଯଦି ମୁଁ ଦରଖାସ୍ତ ଲେଖୁଥାନ୍ତି ତାହାହେଲେ ମୋର ବ୍ୟବସାୟଟା ଭଲ ହୋଇଥାନ୍ତା କିନ୍ତୁ ତହିଁରୁ ଲାଭ ବା କଣ ? ମାଣ୍ଡିଆ ଥିଲେ ସିନା ଘୋଡ଼ାଣି ବୁଲିବା କଥା । ସୁତରାଂ ଶିକ୍ଷକତା

କଲେ ଭଲ ହେବ ବୋଲି ମନେ କଲି । ମୁଁ ଭଲରୂପେ ଇଂରେଜୀ ପଢ଼ିଥିଲି ଏବଂ କୌଣସି ସ୍କୁଲର ମାଟ୍ରିକ୍ୟୁଲେସନ ଛାତ୍ରମାନଙ୍କୁ ଇଂରେଜୀ ପଢ଼ାଇବା ପାଇଁ ଆନନ୍ଦିତ ହୋଇଥାନ୍ତି । ତଦ୍ଵାରା ମୋର ଖରଚ ପାଇଁ ପଇସା ପଣ୍ଡ ମଧ୍ୟ ମିଳନ୍ତା । ଏହିପରି ଭାବନା ମନରେ ଆସିଛି; ଦିନେ ପତ୍ରିକାମାନଙ୍କରେ ଗୋଟିଏ ବିଜ୍ଞାପନ ଦେଖିଲି,-"ଇଂରେଜୀ ପଢ଼ାଇବା ସକାଶେ ଜଣେ ଶିକ୍ଷକ ଦରକାର । ପ୍ରତ୍ୟହ ଘଣ୍ଟାଏ ପାଇଁ ପଢ଼ାଇବାକୁ ହେବ । ମାସିକ ଦରମା ୭୫ ଟଙ୍କା" ବିଜ୍ଞାପନଟି ଗୋଟିଏ ବିଖ୍ୟାତ ସ୍କୁଲ ପକ୍ଷରୁ ଦିଆ ଯାଇଥିଲା । କାର୍ଯ୍ୟଟି ପାଇଁ ଦରଖାସ୍ତ ଦେଲି । ମୁଁ ନିଜେ ଯାଇ ଦେଖା କରିବାପାଇଁ ଆଦେଶ ପାଇଲି । ଆଶା ପୂର୍ଣ୍ଣମନରେ ମୁଁ ସେଠାକୁ ଗଲି କିନ୍ତୁ ଯେତେବେଳେ ପ୍ରିନ୍‌ସିପାଲ ବୁଝିଲେ ଯେ ମୁଁ ବି: ଏ: ପାସ କରି ନାହିଁ, ମୋତେ କାର୍ଯ୍ୟରେ ନିଯୁକ୍ତ କରିବା ପାଇଁ ସେ ଅସ୍ଵୀକୃତ ହେଲେ ।

ମୁଁ କହିଲି :—"କିନ୍ତୁ ମୁଁ ତ ଲଣ୍ଡନ ମାଟ୍ରିକ୍ୟୁଲେସନ ପରୀକ୍ଷା ପାଶ କରିଛି । ଦ୍ଵିତୀୟ ଭାଷା ସ୍ଵରୂପ ଲାଟିନ ମଧ୍ୟ ପଢ଼ିଛି" ।

ସେ:—"ତାହା ସତ, କିନ୍ତୁ ଆମେ ଜଣେ ବି: ଏ: ପାଶ କରିଥିବା ବ୍ୟକ୍ତି ଚାହୁଁ "। ମୁଁ ଫେରି ଆସିଲି; ସେ ସମ୍ବନ୍ଧେ ଆଉ କିଛି କହିବା ପାଇଁ ନଥିଲା । ହତୋତ୍ସାହ ହୋଇ କର କଚାଡିଲି । ଭାଇ ମଧ୍ୟ ବଡ଼ ବ୍ୟଥିତ ହେଲେ । ବୋମ୍ବାଇରେ ରହି ଆଉ ବେଶି ସମୟ ବୃଥା ବ୍ୟୟ କରିବା ଉଚିତ ନୁହେଁ ବୋଲି ଦୁହେଁ ଯାକ ଠିକ କଲୁ । ରାଜକୋଟରେ ରହିବା ଠିକ ହେଲା । ଭାଇ ସେଠାରେ ଜଣେ ସାଧାରଣ ଓକିଲ । ଆବେଦନ ଓ ଦରଖାସ୍ତ ପ୍ରସ୍ତୁତ ଲେଖିବା ଛୋଟ ଛୋଟ କାର୍ଯ୍ୟସବୁ ମୁଁ ତାଙ୍କ ସକାଶେ କରିବାକୁ ନିଷ୍ପତ୍ତି କଲି । ରାଜକୋଟ ଠାରେ ଗୋଟିଏ ବସା ମଧ୍ୟ

ଥିଲି । ବୋମ୍ବାଇର ବସା ଖଣ୍ଡି ଭାଙ୍ଗି ଦେଲେ ଅନେକ ଖରଚ ମଧ୍ୟ ଊଣା ହେବ କଥା । ପ୍ରସ୍ତାବଟା ମୁଁ ଗ୍ରହଣ କଲି । ଛଅ ମାସ ପରେ ବୋମ୍ବାଇର ବସା ଖଣ୍ଡି ଭାଙ୍ଗି ଦେଲି ।

ବୋମ୍ବାଇରେ ଥିଲାବେଳେ ମୁଁ ପ୍ରତିଦିନ 'ହାଇ କୋର୍ଟକୁ' ଯାଉଥାଏ—କିନ୍ତୁ ସେଠାରେ ମୁଁ ବେଶି କିଛି ଶିକ୍ଷା କରୁଛି ବୋଲି କହି ନପାରେ । ଶିଖିବା ପାଇଁ ମଧ୍ୟ ମୋର ଉପଯୁକ୍ତ ଜ୍ଞାନ ନଥିଲା । ଅନେକ ସମୟରେ ମୁଁ ମକଦ୍ଦମା ଗୁଡ଼ିକ ଆମୂଳାନ୍ତ ବୁଝିପାରି ନଥାଏ—ସେହେତୁ ଶୋଇ ପଡ଼େ । ମୋପରି ଆହୁରି ଅନେକ ମଧ୍ୟ ଶୋଉଥାନ୍ତି—ସୁତରାଂ ଲଜ୍ଜାଟା ବାଣ୍ଟି ହୋଇ ଯାଏ । କେତେ ଦିନ ପରେ ମୁଁ ଯେତେବେଳେ ଶୁଣିଲି ଯେ ହାଇ କୋର୍ଟରେ ବସି ଢୋଳେଇବା ଏକ ପ୍ରକାର ସଭ୍ୟତାର ଚିହ୍ନ ବୋଲି ସମସ୍ତଙ୍କର ଧାରଣା ହୋଇ ସାରିଛି, ମୋଠାରେ ଆଉ ଲଜ୍ଜାର ଚିହ୍ନ ସୁଦ୍ଧା ଦେଖା ଗଲା ନାହିଁ ।

ଏବେ ମଧ୍ୟ ବୋମ୍ବାଇରେ ମୋପରି ପଇସାପତ୍ର ନପାଇ ଯଦି ବାରିଷ୍ଟରମାନେ ଥାଆନ୍ତି ସେମାନଙ୍କ ଜୀବନ ଯାପନ ପାଇଁ ସହଜ ସାଧ୍ୟ ଉପଦେଶ କିଛି ଦେବା ମୋର ଇଚ୍ଛା । ମୁଁ ଗିର୍ ଗାମ୍‌ରେ ରହୁଥିଲେ ମଧ୍ୟ କେବେହେଲେ ଘୋଡା ଗାଡ଼ିରେ କିମ୍ବା ଟ୍ରାମରେ ବସି କଚେରିକୁ ଯାଇ ନାହିଁ । ପ୍ରତିଦିନ ଚାଲିକରି ହାଇକୋର୍ଟକୁ ଯିବା ମୁଁ ନିୟମ କରିଥାଏ । କଚେରିକୁ ଯିବା ପାଇଁ କେବଳ ୪୫ ମିନଟ ଲାଗେ ଓ ପ୍ରତିଦିନ ଫେରିଲା ବେଳେ ମଧ୍ୟ ମୁଁ ଚାଲି ଆସି ଥାଏ । ଖରାରେ ଚାଲିବା ମୋର ଅଭ୍ୟାସ ହୋଇ ଯାଇ ଥିଲା । ଚାଲି କରି କୋର୍ଟକୁ ଯିବା ଆସିବା କରିବା ଯୋଗୁଁ ମୋର ବେଶି ପଇସା ଖରଚ ହୋଇ ନଥିଲା ଓ ମୋର ବନ୍ଧୁମାନେ ପ୍ରାୟ ସମସ୍ତେ ଅସୁସ୍ଥ ହେଉ ଥାନ୍ତି କିନ୍ତୁ ମୁଁ ଥରେ ହେଲେ କୌଣସି ରୋଗ—

କ୍ଲାନ୍ତ ହୋଇ ଥିବା ମୋର ମନେ ନାହିଁ । ବେଶି ପଇସା ଉପାର୍ଜନ କଲେ ମଧ୍ୟ ଚାଲି କରି ଯିବା ଆସିବା ଅଭ୍ୟାସଟା ଛାଡ଼ି ନଥିଲି । ସେହି ଅଭ୍ୟାସର ଉପକାର ଆଜି କାଲି ମଧ୍ୟ ମୁଁ ଅନୁଭବ କରୁଅଛି ।



# ଚତୁର୍ଥ ପରିଚ୍ଛେଦ ।

( ପ୍ରଥମ ଅଧ୍ୟାୟ । )



ହତୋତ୍ସାହରେ ବୋମ୍ବାଇ ଛାଡ଼ି ରାଜକୋଟଠାରେ ଆସି ମୋର ନିଜ କଚେରି ଖୋଲିଲି । ଏଠାରେ ବହୁ ଯେ କୌଣସି ଭାବେ ସୁଖରେ ଚଳିବାକୁ ଲାଗିଲି । ଆବେଦନ ପତ୍ର ଓ ଦରଖାସ୍ତ ନକଲ ଲେଖିବା ବାବତରୁ ହାରାହାରିରେ ମାସିକ ମୋଟେ ତିନି ଶହ ଟଙ୍କା ମିଳେ । ଏହା ଯେ ମୋର କୃତିତ୍ୱରୁ ନୁହେ, ମୋର ବନ୍ଧୁମାନଙ୍କ ଯୋଗୁଁ । ସେମାନେ କେବଳ ଧନ୍ୟ ବାଦର ପାତ୍ର । ମୋର ଭାଇଙ୍କ ସହକର୍ମୀଙ୍କର ଆଦାୟଟା ସବୁବେଳେ ସମାନ । ଯେଉଁସବୁ ଆବେଦନ ପତ୍ରର ଗୁରୁତା ବେଶି, ସେଗୁଡ଼ିକ ବଡ଼ ବଡ଼ ବାରିଷ୍ଟର ମାନଙ୍କଠାକୁ ସେ ପଠାଇ ଦେଉଥାନ୍ତି । ଗରିବ 'ପାର୍ଟି' ମାନଙ୍କର ଦରଖାସ୍ତ ଲେଖିବା ପାଇଁ ମୋ ଭାଗ୍ୟରେ ଘଟୁ ଥାଏ ।

କମିଶନ ନଦେବା ନୀତିମୂଳକ ଭାବ ବୋମ୍ବାଇରେ ଥିଲାବେଳେ ମୁଁ କାହାରିକୁ କମିଶନ ଦେଇନାହିଁ । କିନ୍ତୁ ଏଠାକୁ ଆସି ସେହି ନୀତିରେ ବ୍ୟାଘାତ ଘଟିଲା । ମୁଁ ଶୁଣିଲି ଏ ଦୁଇ ସ୍ଥାନର ଅବସ୍ଥା ଭିନ୍ନ ପ୍ରକାର । ବୋମ୍ବାଇରେ ମଧ୍ୟସ୍ଥ ଲୋକଙ୍କୁ କମିଶନ ଦେବାକୁ ପଡ଼େ, କିନ୍ତୁ ରାଜକୋଟଠାରେ ଯେଉଁ ଓକିଲ ମାନେ ଅନ୍ୟ ଓକିଲଙ୍କୁ କାର୍ଯ୍ୟ ଦିଅନ୍ତି

ସେମାନେ କମିଶନ ନେଉଥାନ୍ତି । ବୋମ୍ବାଇପରି ଏହିଠାରେ ମଧ୍ୟ ସବୁ ବାରିଷ୍ଟରମାନେ ତାଙ୍କ ଆୟରୁ ଶତକଡ଼ା କେତେ ଅଂଶ କମିଶନ ସ୍ୱରୂପ ଦେବାକୁ ହୋଇଥାଏ । କମିଶନ ସମ୍ବନ୍ଧେ ଭାଇ ଯେଉଁ ଯୁକ୍ତି କରିଥିଲେ ମୁଁ ତାର ଉତ୍ତର ଦେଇ ପାରିନଥିଲି । ସେ କହିଲେ, "ଦେଖୁଛୁ, ମୁଁ ଅନ୍ୟ ଜଣେ ଓକିଲଙ୍କର ସହକର୍ମୀ, ତୁ ଯେଉଁ ସବୁ ମକଦ୍ଦମା ଚଳାଇ ପାରିବୁ ସେ ସବୁଡ଼ିକ ତୋତେ ଦେବା ସକାଶେ ମୋର ଇଚ୍ଛା । ଏପରି ସ୍ଥଳେ ତୁ ଯଦି ମୋର ସହକର୍ମୀଙ୍କୁ କମିଶନ ଦେବାକୁ ଅସ୍ୱୀକାର କରୁ ତାହାହେଲେ ମୋ କାର୍ଯ୍ୟରେ ବାଧା ଦେବୁ । ଆମେ ଦୁହେଁ ଗୋଟିଏ ଘରେ ଅଛେ । ତୁ ଯାହା ପଇସା ପାଉ ଆମ ଦୁଇ ଜଣଙ୍କ ଆୟରେ ତାହା ମିଶେ । ସୁତରାଂ ମୋର ସେଥିରେ ଭାଗ ରହେ । କିନ୍ତୁ ମୋର ସହକର୍ମୀ କ'ଣ ପାଆନ୍ତି ? ବିଚାର କରି ସେ ଅନ୍ୟ ବାରିଷ୍ଟରଙ୍କୁ ଯଦି ମକଦ୍ଦମା ଦିଅନ୍ତି, ତାହାହେଲେ ନିଶ୍ଚୟ ସେ ତାଙ୍କଠାରୁ କମିଶନ ପାଇବେ ।" ଏହି ଯୁକ୍ତିରେ ମୁଁ ହାର ମାନିଲି । ଯଦି ବାରିଷ୍ଟର ସ୍ୱରୂପ କାର୍ଯ୍ୟ କରିବାକୁ ହେବ, ତାହାହେଲେ କମିଶନ ଦେବାଟା ଅନୀତିମୂଳକ ବୋଲି ଧରି ବସିଲେ ଚଳିବ ନାହିଁ ବୋଲି ମନେ କଲି । ଏପରି ଯୁକ୍ତି ଦ୍ୱାରା ନିଜକୁ ତୃପ୍ତ କଲି—ତଥା ମୁକ୍ତ କଣ୍ଠରେ କହିବାକୁ ଗଲେ ନିଜକୁ ଠକିଲି । ସେ ଯାହାହେଉ ଅନ୍ୟ ମକଦ୍ଦମା ସମ୍ପର୍କରେ ମୁଁ କେବେହେଲେ କମିଶନ ଦେବା ମୋର ମନେ ନାହିଁ ।

ଯେ କୌଣସି ପ୍ରକାରେ ଆମ୍ଭ ଓ ବ୍ୟବସ୍ଥା ଚଳାଇବା ଆରମ୍ଭ କଲି ସତ, କିନ୍ତୁ ଠିକ ଏହି ସମୟରେ ମୋ ଜୀବନର 'ପ୍ରଥମ ଆଘାତ' ଅନୁଭବ କରିବାକୁ ହୋଇଥିଲା । ଇଂରେଜ କର୍ମଚାରୀମାନେ କିପରି ଧରଣର ଲୋକ ତାହା ମୁଁ ଆଜି ପର୍ଯ୍ୟନ୍ତ କେବଳ ଶୁଣିଥାଏ, କିନ୍ତୁ କାହା ସହିତ ସାକ୍ଷାତ କରିନଥାଏ ।

ପୋରବନ୍ଦରର ରାଣା ସାହେବ ରାଜ ଗାଦିରେ ବସିବା ପୂର୍ବରୁ ମୋର ଭାଇ ତାଙ୍କର ସେକ୍ରେଟାରୀ ଓ ଉପଦେଶକ ସ୍ୱରୂପ ନିଯୁକ୍ତ ହୋଇ ଥିଲେ । ସେ କାର୍ଯ୍ୟରେ ଥିଲାବେଳେ ରାଣା ସାହେବଙ୍କୁ ଅନୁପଯୁକ୍ତ ଉପଦେଶ ଦେଇଥିବା ଦୋଷ ଏବେ ତାଙ୍କଠାରେ ଆରୋପିତ ହେଲା । ଏ ବିଷୟଟି ରାଜକୀୟ ପ୍ରତିନିଧିଙ୍କ କାନକୁ ଯାଇଥିବାରୁ ସେ ଭାଇଙ୍କ ପ୍ରତି କ୍ରୁଦ୍ଧ ହୋଇଥିଲେ । ବିଲାତରେ ଥିଲାବେଳେ ମୁଁ ଏହି କର୍ମଚାରୀଙ୍କୁ ଜାଣିଥିଲି ଏବଂ ମୋ ସହିତ ତାଙ୍କର ବନ୍ଧୁତା ଥିଲା ବୋଲି ମଧ୍ୟ କୁହାଯାଇପାରେ । ସୁତରାଂ ଭାଇ ଭାବିଲେ ଯେ ମୁଁ ତାଙ୍କ ସପକ୍ଷରେ ପଦେ ଅଧେ କହି ତାଙ୍କ ଠାରେ ପ୍ରତିନିଧିଙ୍କର ଯେ ଭୁଲ ଧାରଣା ଅଛି, ତାହା ଦୂର କରିବାକୁ ଚେଷ୍ଟା କରିବି । ଏହା ମୋତେ ଭଲ ଲାଗିଲା ନାହିଁ । ବିଲାତରେ ଥିଲା ବେଳେ ତାଙ୍କ ସହିତ ଯେ ସାମାନ୍ୟ ବନ୍ଧୁତା ଲାଭ କରିଥିଲି ସେଥିରୁ ତାଂକଠାରୁ ଏବେ ଉପକାର ଆଶା କରିବା ଅନୁଚିତ ହେବ ବୋଲି ମନେ କଲି । ଭାଇ ଯଦି ପ୍ରକୃତରେ ଦୋଷୀ ତାହା ହେଲେ ମୋର ସୁପାରିଶରେ କି ଲାଭ ? ଯଦି ନୁହନ୍ତି, ତେବେ ସେ ନିୟମାନୁସାରେ ଦରଖାସ୍ତ ଲେଖି ଯେ କୌଣସି ଫଳ ଭୋଗ କରିବା ପାଇଁ ପ୍ରସ୍ତୁତ ହେବା ଉଚିତ ବୋଲି, ମୁଁ ଭାବିଲି । ମୋର ଏହି ଉପଦେଶଟି ଭାଇଙ୍କୁ ସୁଖ ଲାଗିଲା ନାହିଁ । ସେ କହିଲେ, "ତୁ ଜାଣୁନାହୁଁ ଯେ କାଥିଆୱାଡ଼ କପରି ଧରଣର ସ୍ଥାନ ଏବଂ ତୁ ଜଗତ ସମ୍ବନ୍ଧରେ ଆହୁରି ଶିଖିବାକୁ ହେବ । ଏଠାରେ ବଡ଼ ବଡ଼ ଲୋକଙ୍କ ସହିତ ସମ୍ପର୍କ ରଖି ପାରିଲେ ସବୁ କଥା କରି ହେବ । ତୁ ଜାଣିଥିବା ଜଣେ କର୍ମଚାରୀଙ୍କ ଆଗରେ ମୋ ପାଇଁ ପଦେ ଅଧେ କହିବା ପାଇଁ ଯଦି ସୁବିଧା ଅଛି, ତେବେ ତୁ ସାନ ଭାଇର କର୍ତ୍ତବ୍ୟ ନକରିବା ଅନୁଚିତ ।

ମୁଁ ତାଙ୍କ କଥା ଅସ୍ୱୀକାର କରି ପାରିଲିନାହିଁ । ମୁଁ ଜାଣିଥିଲି ଯେ ତାଙ୍କୁ ସାକ୍ଷାତ କରିବା ପାଇଁ ମୋର ଅଧିକାର ନଥିଲା ଏବଂ ତାଙ୍କ ଠାକୁ ଯାଇ ଆତ୍ମ ସମ୍ମାନ ହରାଉଅଛି ବୋଲି ମଧ୍ୟ ମୋର ସମ୍ପୂର୍ଣ୍ଣ ବିଶ୍ୱାସ ଥିଲା । ସେ ଯାହା ହେଉ ସାକ୍ଷାତ କରିବା ପାଇଁ ଅନୁମତି ମଗାଇଲି ଓ ଅନିଚ୍ଛା ସତ୍ତ୍ୱେ ତାଙ୍କ ଠାକୁ ଗଲି । ଆମ୍ଭର ପୂର୍ବ ପରିଚୟ ସମ୍ବନ୍ଧେ ତାଙ୍କୁ ମନେ ପକାଇଲି, କିନ୍ତୁ ମୁଁ ଶୀଘ୍ର ଦେଖି ପାରିଲି ଯେ କାଥିଆବାଡ଼ ଓ ବିଲାତ ମଧ୍ୟରେ ପ୍ରଭେଦ ବେଶି — ଛୁଟି ଯୋଗୁଁ ବିଲାତରେ ଥିବା କର୍ମଚାରୀ ଓ ଭାରତରେ ଥାଇ କାର୍ଯ୍ୟ କରୁଥିବା କର୍ମଚାରୀ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଆମ୍ଭ ଦୁହିଁଙ୍କର ପରିଚୟ ଥିଲା ବୋଲି ସେ ସ୍ୱୀକାର କଲେ ସତ, କିନ୍ତୁ ମୁଁ ତାଙ୍କୁ ସେହି କଥା ମନେ ପକାଇବା ଯୋଗୁଁ ସେ ଗମ୍ଭୀର ଆକାର ଧାରଣ କଲେ । "ତୁମେ ସେହି ପରିଚୟର ଅସତ୍ ବ୍ୟବହାର କରିବା ପାଇଁ ନିଶ୍ଚୟ ଆସିନାହିଁ, କି ତାହା ତ ?" ଏହା ତାଙ୍କ ଗମ୍ଭୀର ମୁଖ ଭଙ୍ଗିରୁ ଜଣା ପଡୁଥିଲା ଏବଂ ମୁଁ ଭାବିଲି ସତେ ଯେପରି ସେହି ପ୍ରଶ୍ନ ତାଙ୍କ କପାଳରେ ଲେଖା ହୋଇଥିଲା । ସେ ଯାହାହେଉ ମୁଁ ମୋର ବିଷୟଟି ଉତ୍ଥାପନ କଲି । 'ସାହେବ' ବଡ଼ ଅସ୍ଥିର ହେଲେ ଓ କହିଲେ, "ତୁମ ଭାଇ ଜଣେ ଷଡ଼ଯନ୍ତ୍ରକାରୀ, ତୁମଠାରୁ ମୁଁ ଆଉ ବେଶି ଶୁଣିବା-ଇଚ୍ଛା କରୁନାହିଁ । ତୁମ ଭାଇ ଯଦି କିଛି କହିବାକୁ ଚାହାନ୍ତି, ତାହାହେଲେ ନିୟମାନୁଯାୟୀ ଆବେଦନ କରନ୍ତୁ"; ତାଙ୍କ ଉତ୍ତରଟା ଯଥେଷ୍ଟ ଓ ପ୍ରକୃତ ମଧ୍ୟ । କିନ୍ତୁ ସ୍ୱାର୍ଥ ମନୁଷ୍ୟକୁ ଅନ୍ଧ କରିଥାଏ । ସୁତରାଂ ନୀରବ ନରହି ମୁଁ ଆହୁରି କହିବାକୁ ଲାଗିଲି । ସାହେବ ଉଠି କହିଲେ, "ତୁମେ ଏଥର ବାହାରି ଯିବାକୁ ହେବ ।"

"କିନ୍ତୁ ଦୟାପୂର୍ବକ ସବୁ ଶୁଣନ୍ତୁ" ବୋଲି ମୁଁ ପୁନରପି କହିଲି ।

ତାହା ଶୁଣି ସେ ଅତ୍ୟନ୍ତ ଅଧିକ ଚଡ଼ିଲେ । ଗୃହକରଙ୍କୁ ଡାକାଇ ବାହାରକୁ ଯିବା ସକାଶେ ମୋତେ ବାଟ ଦେଖାଇ ଦେବା ପାଇଁ ତାଙ୍କୁ କହିଲେ । ଗୃହକର ଆସି ମୋ କାନ୍ଧରେ ହାତ ପକାଇ ଘର ବାହାରକୁ ଠେଲି ଦେବା ଯାଏ ମୁଁ ଯାହା କହିବାକୁ ଥିଲି ସବୁ କହୁଥାଏ ।

'ସାହେବ' ଓ ଗୃହକର ଦୁହେଁ ଯାକ ବାହାରି ଗଲେ । କ୍ରୋଧରେ ହାତ କଡ଼ମଡ଼ କରି ମୁଁ ମଧ୍ୟ ଫେରିଲି । ହଠାତ୍ କର୍ମ୍ମୋକ୍ତ ମର୍ମରେ ତାଙ୍କ ଠାକୁ ଖଣ୍ଡିଏ ପତ୍ର ଲେଖିଲି—"ତୁମେ ମୋତେ ଅପମାନିତ କରିଛ । ଗୃହକର ଦ୍ୱାରା ମୋତେ ମାଡ଼ ମଧ୍ୟ ଦେଇଛ । ତୁମେ ଯଦି କ୍ଷତି ପୂରଣ ନକର ତାହାହେଲେ ମୁଁ ତୁମ ବିରୁଦ୍ଧରେ ନାଲିସ କରିବା ପାଇଁ ବାଧ୍ୟ ହେବି ।"

ସେହିକ୍ଷଣି ତାଙ୍କର ଗୃହକର ଖଣ୍ଡିଏ ଉତ୍ତର ଧରି ଆସିଲା । ସେଥିରେ ଲେଖା ଅଛି, "ତୁମେ ମୋ ପ୍ରତି ଅଭଦ୍ର ବ୍ୟବହାର କରିଛ । ମୁଁ ତୁମକୁ ବାହାରି ଯିବା ପାଇଁ ବାରମ୍ବାର କହିଲି, କିନ୍ତୁ ତୁମେ ଗଲନାହିଁ । ଗୃହକର ଦ୍ୱାରା ତୁମକୁ ବାହାରକୁ ଠେଲି ଦେବା ଛଡ଼ା ମୁଁ ଉପାୟାନ୍ତର ଦେଖି ପାରି ନଥିଲି । ସେ ଆସି ତୁମକୁ ବାହାରି ଯିବା ପାଇଁ କହିଲେ ମଧ୍ୟ ତୁମେ ଚାଲିଲ ନାହିଁ । ସୁତରାଂ ତୁମକୁ ପଦାକୁ ବାହାର କରିଦେବା ସକାଶେ ଯାହା ଦରକାର ସେ ତାହା କରିବାକୁ ପଡ଼ିଥିଲା । ତୁମେ ଯାହା ଇଚ୍ଛା ତାହା କରିପାର, ମୋର କିଛି ଆପତ୍ତି ନାହିଁ ।"

ଉତ୍ତର ଖଣ୍ଡି ପକେଟରେ ଧରି ନତ ମସ୍ତକରେ ଘରକୁ ଫେରିଲି ଓ ଭାଇଙ୍କ ଆଗରେ ଘଟଣାଟି ନେଇ ସବୁ କହିଲି । ସେ ମର୍ମାହତ ହେଲେ; କିନ୍ତୁ ମୋତେ କିପରି ସାନ୍ତ୍ୱନା ଦେବେ, ତାଙ୍କୁ ଉପାୟ ଦିଶିଲା ନାହିଁ । ସେ ତାଙ୍କ ଓକିଲ ସଙ୍ଗୀମାନଙ୍କୁ ଘଟଣା ସମ୍ବନ୍ଧରେ କହିଲେ । ଉକ୍ତ

ସାହେବଙ୍କ ହଜୁରରେ କଣ କରିବାକୁ ହେବ, ମୁଁ ତାହା ଜାଣିନଥିଲି । କୌଣସି ମକଦ୍ଦମା ସମ୍ପର୍କରେ ସର୍ ଫିରୋଜସା ମେହେଟା ସେତେବେଳେ ରାଜକୋଟରେ ଥିଲେ । କିନ୍ତୁ ମୋ ଭଳିଆ ଜଣେ ଛୋଟିଆ ବାରିଷ୍ଟର ତାଙ୍କୁ ଦେଖିବା ସକାଶେ କିପରି ବା ସାହସ କରିବ ? ସୁତରାଂ ତାଙ୍କୁ ଯେଉଁ ଓକିଲ ଡ଼କାଇ ଆଣିଥିଲେ ତାଙ୍କ ଦ୍ୱାରା ମୋର ମକଦ୍ଦମାର ସମସ୍ତ କାଗଜ ପତ୍ର ତାଙ୍କ ଠାକୁ ପଠାଇ ତାଙ୍କର ଉପଦେଶ ଇଚ୍ଛା କଲି । ସବୁ ଦେଖି ସେ କହିଲେ, "ଗାନ୍ଧୀଙ୍କୁ କହ ଯେ ଏହିପରି ଅନୁଭୂତି ସାଧାରଣତଃ ଅନେକ ଓକିଲ ଓ ବାରିଷ୍ଟରଙ୍କ ଜୀବନରେ ଘଟିଥାଏ । ସେ ଅଳ୍ପ ଦିନ ହେଲା ବିଲାତରୁ ଆସିଛନ୍ତି ଓ ତାଙ୍କ ରକ୍ତ ମଧ୍ୟ ଗରମ ଅଛି । ଇଂରେଜ କର୍ମଚାରୀମାନଙ୍କ ସମ୍ବନ୍ଧେ ସେ କିଛି ଜାଣି ନାହାନ୍ତି । ଯଦି ଏଠାରେ କିଛି ଉପାର୍ଜନ କରି ସୁଖରେ କାଳ ଯାପନ କରିବା ତାଙ୍କର ଇଚ୍ଛା, ତାହା ହେଲେ ସାହେବଙ୍କ ଚିଠି ଖଣ୍ଡି ଚିରି ଦିଅନ୍ତୁ ଓ ଅପମାନଟା ସହି ଯାଆନ୍ତୁ । ସାହେବଙ୍କ ବିରୁଦ୍ଧରେ ଯାଇ ସେ କିଛି ଲାଭବାନ ହେବେ ନାହିଁ; ପକ୍ଷାନ୍ତରେ ନିଜର ଅମଙ୍ଗଳ ଘଟାଇବା ସମ୍ପୂର୍ଣ୍ଣ ସମ୍ଭବ । ତାଙ୍କୁ କହ ଯେ ସଂସାରରେ କିପରି ଚଳିବାକୁ ହୁଏ ତାହା ସେ ଶିଖିବାକୁ ହେବ ।"

ସେ ଯେଉଁ ଉପଦେଶ ଦେଇଥିଲେ ତାହା ମୋତେ ବିଷ ପରି ଲାଗିଲା—ତଥାପି କଣ କରିବି, ତାହା ଗ୍ରହଣ କଲି; ଅପମାନଟା ସହିଲି । ତଦ୍ୱାରା ମୋର ଅଶେଷ ମଙ୍ଗଳ ହେଲା । ମନେ ମନେ ଭାବିଲି ଯେ ଆଉ ଏହିପରି ସଙ୍କଟରେ କେବେହେଲେ ପଡ଼ିବି ନାହିଁ—ବନ୍ଧୁତାର ଅସତ୍ ବ୍ୟବହାର କରିବି ନାହିଁ । ସେହିଦିନ ଠାରୁ ମୁଁ କେବେହେଲେ ପ୍ରତିଜ୍ଞା-ଭଙ୍ଗ ଦୋଷରେ ଦୋଷୀ ହୋଇନାହିଁ । ଏହି 'ଆଘାତ' ମୋର ଜୀବନର ଗତି ପରିବର୍ତ୍ତନ କରିଦେଇଥିଲା ।

# ପଞ୍ଚମ ପରିଚ୍ଛେଦ ।

( ଦକ୍ଷିଣ ଅଫ୍ରିକା ଯାତ୍ରାର ଯୋଗାଡ଼ । )



ପୋଲିଟିକେଲ ଏଜେଣ୍ଟଙ୍କୁ ଦେଖା କରିବାକୁ ଯାଇ ମୁଁ ବାସ୍ତବିକ ଦୋଷ କରିଥିଲି, କିନ୍ତୁ ତାଙ୍କର ଯେତେ ଦୂର ଅସହିଷ୍ଣୁତା ଓ ଦୁର୍ବାର କ୍ରୋଧ ସେ ଦୃଷ୍ଟିରେ ମୋର ଦୋଷଟା କିଛି ନୁହେଁ । ବହିଷ୍କୃତ ହେବା ଭଳି ଦୋଷତ ମୁଁ କରି ନଥିଲି । ମୋ ଲାଗି ସେ ପାଞ୍ଚ ମିନିଟରୁ ଅଧିକ ସମୟ ବ୍ୟୟ କରି ନଥିବେ, ମୋର କଥା କେବଳ ତାଙ୍କ ପକ୍ଷେ ଅସହ୍ୟ ହୋଇ ଥିଲା । ବାହାରି ଯିବା ସକାଶେ ଭଦ୍ର ଭାବରେ ମୋତେ କହିଥିଲେ ହୋଇଥାନ୍ତା; କିନ୍ତୁ କ୍ଷମତା—ମଦରେ ମତ୍ତ ହୋଇ ସେ ସୀମା ଲଙ୍ଘନ କରିଥିଲେ ଏବଂ ପରେ ମୁଁ ବୁଝିଲି ଯେ ସହନଶୀଳତା କଣ ତାହା ସେ ଆଦୌ ଜାଣି ନଥିଲେ । ଦର୍ଶକମାନଙ୍କୁ ଅପମାନ ଦେବା ତାଙ୍କ ଅଭ୍ୟାସର କଥା । ଟିକିଏ ବିରକ୍ତ ହେଲେ ସେ ଏକାବେଳକେ ନିଜକୁ ଭୁଲି ଯାଆନ୍ତି ।

ଏଥର ମୋର କାର୍ଯ୍ୟ ସବୁ ସାଧାରଣତଃ ତାଙ୍କର କୋର୍ଟରେ ହେବା କଥା । କିପରି ତାଙ୍କୁ ତୃପ୍ତ କରିବି, ତାହା ମୁଁ ଭାବି ପାରି ନଥିଲି । ତାଙ୍କର ଅନୁଗ୍ରହ ଭିକ୍ଷା କରିବା ପାଇଁ ମୋର ଇଚ୍ଛା ନଥିଲା । କିନ୍ତୁ ଥରେ ତାଙ୍କ ବିରୁଦ୍ଧରେ ଯିବା ପାଇଁ ଭୟ ଦେଖାଇ ନୀରବ ରହିବା ସକାଶେ ମୋତେ ଭଲ ଲାଗିଲା ନାହିଁ ।

ଇତିମଧ୍ୟରେ ମୁଁ ଦେଶର ରାଜନୀତି ନେଇ ସାମାନ୍ୟ କିଛି

ଶିଖିବା ଆରମ୍ଭ କଲି । କାଥିଆବାଡ଼ ଅନେକ ଗୁଡ଼ିଏ ରାଜଧାନୀର ସମଷ୍ଟି ହୋଇଥିବା ଯୋଗୁଁ ସେଠାରେ ରାଜନୀତି ଚର୍ଚ୍ଚା ପାଇଁ ସାମଗ୍ରୀ ବେଶି । ପ୍ରଭୁତ୍ୱଲାଭ ପାଇଁ ରାଜଧାନୀମାନଙ୍କରେ ନାନା ଷଡ଼ଯନ୍ତ୍ର ଲାଗିଥାଏ ଓ କ୍ଷମତା ପାଇବା ଉଦ୍ଦେଶ୍ୟରେ ରାଜ କର୍ମଚାରୀମାନେ ସବୁ ବେଳେ କଳ କୌଶଳ କରୁଥାନ୍ତି । ରାଜପୁତ୍ରମାନେ ସବୁବେଳେ ଅନ୍ୟ ଉପରେ ନିର୍ଭର କରନ୍ତି ଓ ଖୋସାମଦିଆମାନେ ଯାହା କହନ୍ତି ସେ ସବୁ ଶୁଣନ୍ତି । "ସାହେବ" ( Political Agent ) ଙ୍କ ଚାକରଙ୍କୁ ମଧ୍ୟ ଖୋସାମଦ କରିବାକୁ ହୋଇଥାଏ ଏବଂ ତାଙ୍କ ସିରସ୍ତାଦାରଙ୍କ କଥାତ ଛାଡ଼, ସେ ସାହେବଙ୍କଠାରୁ ବଡ଼—ସେ ସାହେବଙ୍କ ଆଖି, କାନ ଓ ଭାଷା କହିଲେ ଚଳେ । ସିରସ୍ତାଦାରଙ୍କର ଯାହା ଇଚ୍ଛା ତାହା କେବଳ ଆଇନ ଓ ସାହେବଙ୍କ ଆଦାୟ ଅପେକ୍ଷା ତାଙ୍କର ଆଦାୟ ସବୁବେଳେ ଅଧିକ ବୋଲି ଶୁଣା ଯାଉ ଥିଲା । ଏହା ଅବଶ୍ୟ ଅତିଶୟୋକ୍ତି ହୋଇ ପାରେ କିନ୍ତୁ ତାଂଙ୍କ ବେତନ ଦୃଷ୍ଟିରେ ସେ ଅତି ଭଲ ଭାବେ ଜୀବନ ଅତି ବାହିତ କରୁ ଥିଲେ । ସେ ସ୍ଥାନର ଅବସ୍ଥା ମୋତେ ବଡ଼ ଖରାପ ବୋଧ ହେଲା । ସେଠାରେ କପରି ଯେ ନିଷ୍କଳଂକ ଭାବେ ରହିବାକୁ ହେବ ଏହି କଥା ନେଇ ମୁଁ ଅନବରତ ଭାବିବାକୁ ଲାଗିଲି ।

ମୁଁ ସବୁବେଳେ ନିତାନ୍ତ ଚିନ୍ତିତ ଓ ସ୍ଫୂର୍ତ୍ତିହୀନ ହେଲି ଏବଂ ଭାଇ ମଧ୍ୟ ମୋର ସେ ଅବସ୍ଥା ଦେଖିଥିଲେ । ଯଦି କୌଣସି ଠାରେ ମୋ ପାଇଁ ଗୋଟିଏ ଚାକରୀ ମିଳେ ତାହାହେଲେ ମୁଁ ଏହି ଚକ୍ରାନ୍ତରୁ ରକ୍ଷା ପାଇବି ବୋଲି ଆମ୍ଭେ ଦୁହେଁ ମନେ କଲୁଁ । କିନ୍ତୁ ବିନା ଚକ୍ରାନ୍ତରେ ମନ୍ତ୍ରୀ ପଦ କିମ୍ବା ବିଚାରପତି ପଦ ପାଇବା ଅସମ୍ଭବ କଥା । ଏଆଡ଼େ ସାହେବଙ୍କ ସହିତ ମନୋମାଳିନ୍ୟ ଘଟିବାରୁ ମୋର ଓକାଲତି କାର୍ଯ୍ୟରେ ମଧ୍ୟ ବାଧା ପଡ଼ିଲା ।

ପୋରବନ୍ଦରରେ ଯେତେବେଳେ ବନ୍ଦୋବସ୍ତ କାର୍ଯ୍ୟ ଚାଲିଥିଲା । ରାଣୀଙ୍କ ପାଇଁ କେତେକାଂଶ ଅଧିକ କ୍ଷମତା ରକ୍ଷିବା ସକାଶେ ମୁଁ ସେହି କାର୍ଯ୍ୟରେ କିଛିଏ ହାତ ଦେଇଥିଲି । 'ମେର' ମାନଙ୍କ ଠାରୁ ଯେଉଁ ଉତ୍ପୀଡ଼କ କର ଅଦାୟ କରା ଯାଉଥିଲା, ସେ ସମ୍ବନ୍ଧେ ପଦେ ଅଧେ କହିବା ପାଇଁ ମୁଁ ବନ୍ଦୋବସ୍ତ ହାକିମଙ୍କୁ ଦେଖିବାକୁ ଯାଇଥିଲି । ହାକିମ ଜଣଙ୍କ ଭାରତୀୟ ହେଲେହେଁ ସାହେବଙ୍କ ଅପେକ୍ଷା ବେଶି ଉଦ୍ଧତ ନଥିଲେ । ସେ ବଡ଼ କାର୍ଯ୍ୟଦକ୍ଷ ସତ, କିନ୍ତୁ ରଇତମାନଙ୍କର ଦୁରବସ୍ଥା ଯୋଗୁଁ ସକାଶେ କୌଣସି ପ୍ରତିକାର କରି ପାରୁଥିଲେ ବୋଲି ମୋର ଅନୁମାନ ହେଉନାହିଁ । ରାଣୀଙ୍କ ପାଇଁ ଅଧିକ କ୍ଷମତା ଲାଭ କରିବାରେ କେବଳ ମୁଁ ସଫଳକାମ ହୋଇଥିଲି—କିନ୍ତୁ 'ମେର' ମାନଙ୍କର ଅସୁବିଧା ଦୂର କରିବାକୁ କିଛି କରି ପାରିଲିନାହିଁ । ସେମାନଙ୍କର ବିଷୟଟିମା ଭଲମତେ ତଦନ୍ତ ମଧ୍ୟ କରା ଗଲାନାହିଁ ବୋଲି ମୋତେ ବଡ଼ ଦୁଃଖ ଲାଗିଲା ।

ରଇତମାନଙ୍କୁ ପ୍ରକୃତ ନ୍ୟାୟ ଦିଆ ଯାଉନାହିଁ ବୋଲି ଜାଣିଲି ସତ, କିନ୍ତୁ କି ଉପାୟରେ ନ୍ୟାୟ ପାଇବାକୁ ହେବ ତାହା ମୁଁ ଜାଣିନଥିଲି । ସ୍ୱୟଂ ରାଜକୀୟ ପ୍ରତିନିଧି ( Political Agent ) କିମ୍ବା ଗଭର୍ଣ୍ଣର ସାହେବଙ୍କ ଠାରୁ ଏ ବିଷୟ ନେଇ ମୁଁ ଆବେଦନ କରିଥାନ୍ତି କିନ୍ତୁ ଫଳରେ ବା କଣ ହୁଅନ୍ତା ? "ଆମ୍ଭେ ଏ ବିଷୟ ବୁଝିବାକୁ ଇଚ୍ଛୁକ ନାହୁଁ"—କହି ଆବେଦନ ପତ୍ର ସେମାନେ ଫେରାଇ ଦିଅନ୍ତେ ସିନା ! ଏହିପରି ନ୍ୟାୟ ଯଦି କୌଣସି ନୀତି କିମ୍ବା ଆଇନ ମୂଳକ ହୋଇଥାନ୍ତା ତାହାହେଲେ ସେ ଭିନ୍ନ କଥା; କିନ୍ତୁ ସାହେବଙ୍କ ଇଚ୍ଛାଉପରେ ସବୁ ଆଇନ ନିର୍ଭର କରେ । ସୁତରାଂ ମୁଁ ନିତାନ୍ତ ହତୋତ୍ସାହ ହୋଇ ପଡ଼ିଲି ।

ଇତିମଧ୍ୟରେ ଗୋଟିଏ ବ୍ୟବହାର କମ୍ପାନି ପୋରବନ୍ଦରଠାରୁ ଭାଇଙ୍କଠାକୁ ଖଣ୍ଡିଏ ପତ୍ର ଲେଖିଲେ, ଚିଠିରେ ଲେଖା ଅଛି, "ଦକ୍ଷିଣ ଆଫ୍ରିକାରେ ଆମର ଗୋଟିଏ ବଡ କମ୍ପାନି ଅଛି । କମ୍ପାନିର କାରବାର ବେଶି । ସେଠା ଅଦାଲତରେ ଆମର ଗୋଟିଏ ବଡ ମକଦ୍ଦମା ଅଛି—୪୦୦୦୦ ପାଉଣ୍ଡ ଧନ ସକାଶେ ମକଦ୍ଦମା ହୋଇଅଛି । ଅନେକ ଦିନହେଲା ମକଦ୍ଦମାର ବିଚାର ଲାଗିଛି—ବଡ ବଡ ଓକିଲ ଓ ବାରିଷ୍ଟରମାନେ ଆମ ପକ୍ଷରେ କାର୍ଯ୍ୟ କରୁଛନ୍ତି । ତୁମେ ଯଦି ତୁମ ଭାଇଙ୍କୁ ସେଠାକୁ ପଠାନ୍ତୁ, ତାହାହେଲେ ଏକ ଆଡେ ଆମର ସୁବିଧା ଓ ପକ୍ଷାନ୍ତରେ ତାଙ୍କର ମଧ୍ୟ ମଙ୍ଗଳ ହୁଅନ୍ତା । ଆମର ଓକିଲଙ୍କୁ ମକଦ୍ଦମାର ସମସ୍ତ ବିଷୟ ଭଲ ରୂପେ ବୁଝାଇବା ସକାଶେ ସେ ସମର୍ଥ ହୁଅନ୍ତେ । ଗୋଟିଏ ନୂତନ ଦେଶ ଦେଖିବା ପାଇଁ ସୁବିଧା ହୁଅନ୍ତା ଓ ନୂତନ ପରିଚୟ ମଧ୍ୟ ଲାଭ କରନ୍ତେ ।"

ଏ ବିଷୟ ନେଇ ଭାଇ ମୋ ସହିତ କଥାବାର୍ତ୍ତା କଲେ । ମୁଁ ଯେ ସେଠାର ଓକିଲଙ୍କୁ ମକଦ୍ଦମାର ସମସ୍ତ ବିଷୟ କେବଳ ବୁଝାଇ କହିବାକୁ ହେବ କିମ୍ବା ନିଜେ ଅଦାଲତକୁ ଯିବାକୁ ହେବ ମୁଁ ଭଲରୂପେ ବୁଝି ପାରିନଥିଲି । କିନ୍ତୁ ସେଠାକୁ ଯିବା ପାଇଁ ମୋର ବଡ ଆକାଂକ୍ଷା ରହିଲା ।

କମ୍ପାନିଟିର ନାମ "ଦାଦା ଅବଦୁଲ୍ଲା କଂପାନି ।" ସେଠ ଅବଦୁଲ କରିମ ଜବାରୀ ନାମକ କଂପାନିର ଜଣେ ଅଂଶୀଦାରଙ୍କ ସହିତ ଭାଇ ମୋତେ ପରିଚିତ କରାଇଥିଲେ । ସେଠ ଅବଦୁଲ୍ ମୋତେ କହିଲେ, "କାର୍ଯ୍ୟଟି ଆଦୌ କଷ୍ଟକର ନୁହେ । ଆମର ଅନେକ ୟୁରୋପୀୟ ବନ୍ଧୁ ସେଠାରେ ଅଛନ୍ତି । ସେମାନଙ୍କ ସହିତ ପରିଚୟ ଲାଭ କରିବ । ଆମ ଦୋକାନ କାର୍ଯ୍ୟରେ ମଧ୍ୟ ସାହାଯ୍ୟ କରିବ । ଆମର ଚିଠି ପତ୍ର ସବୁ

ଇଂରେଜରେ ଲେଖା ଲେଖି ହୁଏ, ସେଥିରେ ମଧ୍ୟ ସାହାଯ୍ୟ କରିବ । ତୁମେ ଆମର ବନ୍ଧୁ ସ୍ୱରୂପ ରହିବ; ସୁତରାଂ ତୁମର କଷ୍ଟ ହେଲେ ଖରଚ ହେବନାହିଁ ।"

ସବୁ ଶୁଣି ସାର ତାଙ୍କୁ ପଚାରିଲି, 'ମୁଁ କେତେ ଦିନ ସକାଶେ ରହିବାକୁ ହେବ ଓ ମୋତେ କେତେ ଦରମା ଦେବ" ?

ସେ:—"ବର୍ଷକ ଠାରୁ ଅଧିକ ନୁହେ । ମୋଟ ଉପରେ ୧୦୫ ପାଉଣ୍ଡ ଦରମା ଓ ଜାହାଜର ପ୍ରଥମ ଶ୍ରେଣୀରେ ଯିବା ଅସିବା ସକାଶେ ଯାହା ଖରଚ ଲାଗିବ ସେ ସବୁ ପାଇବ" ।

ଏଥିରୁ ଜଣା ଗଲାଯେ ମୁଁ ବାରିଷ୍ଟର ସ୍ୱରୂପ ନଯାଇ କଂପାନିର ଜଣେ ଚାକର ପରି ଯିବାକୁ ହେବ । କିନ୍ତୁ ସେ କୌଣସି ଭାବରେ ହେଉ ମୁଁ ଭାରତରୁ ପଳାଇବା ପାଇଁ ଇଚ୍ଛା କରି ଥିଲି । ନୂତନ ଦେଶ ଦେଖିବା ଓ ନୂତନ ଅନୁଭୂତ ପାଇବା ପ୍ରଲୋଭନ ମଧ୍ୟ କମ ନଥିଲା । ଭାଇଙ୍କି ଯେ ଘର ଖରଚ ସକାଶେ ୧୦୫ ପାଉଣ୍ଡ ମଧ୍ୟ ଭାଇଙ୍କ ଠାକୁ ପଠାଇ ପାରିବ । ସେହେତୁ କଂପାନିର ଯାଚଞ୍ଚା ଗ୍ରହଣ କଲି ଓ ଆଉ ବେଶି କିଛି ଭାବନା ନକରି ଦକ୍ଷିଣ ଆଫ୍ରିକା ଯିବା ସକାଶେ ସବୁ ଠିକଣା କଲି ।



## ଷଷ୍ଠ ପରିଚ୍ଛେଦ ।

( ନେଟାଲ ପ୍ରବେଶ । )

———o———

ବିଲାତ ଯିବାବେଳେ ମୁଁ ଯେପରି ବିଚ୍ଛେଦ-ଦୁଃଖ ଅନୁଭବ କରିଥିଲି ଦକ୍ଷିଣ ଆଫ୍ରିକା ଗଲାବେଳେ ସେହିପରି ଅନୁଭୂତ ଆସି ନଥିଲା ।

ମୋର ମାଆ ଆଉ ଜୀବିତାବସ୍ଥାରେ ନଥିଲେ । ବିଦେଶ ଭ୍ରମଣ ଓ ସଂସାରର ବାର ବାର ସମ୍ବନ୍ଧେ ସାମାନ୍ୟ ଜ୍ଞାନ ଲାଭ ମଧ୍ୟ କରିଥିଲି । ରାଜକୋଟ ଠାରୁ ବୋମ୍ବାଇ ଠାକୁ ଯିବାତ ଏବେ ଆଉ ଅସମ୍ଭବ କଥା ନୁହେ ।

ଏଥର ମୋର ସ୍ତ୍ରୀଙ୍କ ଅନ୍ତର-ଦୁଃଖ କେବଳ ଅନୁଭବ କରୁଥିଲି । ବିଲାତରୁ ଫେରିଲା ପରେ ମୋର ଆଉ ଗୋଟିଏ ସନ୍ତାନ ଜନ୍ମ ହୋଇ ଥିଲା । ଆମ୍ଭର ପ୍ରେମ ଅଦ୍ୟାପି କାମଶୂନ୍ୟ ହୋଇ ନଥିଲେହେଁ ତାହା କ୍ରମେ କ୍ରମେ ପବିତ୍ର ହୋଇ ଆସୁଥିଲା । ବିଲାତରୁ ଅସିଲା ପରେ ଆମ୍ଭେ ଦୁହେଁ ଅଳ୍ପ ସମୟ ପାଇଁ ଏକତ୍ର ରହିଥିଲୁଁ । ମୁଁ ଏବେ ତାଙ୍କର ଶିକ୍ଷକତା କରୁଥିଲି ଓ ତାଙ୍କ ଜୀବନ ସଂସ୍କାର ଚେଷ୍ଟାରେ ତାଙ୍କୁ ସାହାଯ୍ୟ ମଧ୍ୟ କରୁଥିଲି । ଯଦି ସେହି ସଂସ୍କାର ଶେଷ କରିବାକୁ ହୁଏ ତାହାହେଲେ ଆମ୍ଭେ ଦୁହେଁ ଏକତ୍ର ରହିବା ଦରକାର । କିନ୍ତୁ ଦକ୍ଷିଣ ଆଫ୍ରିକା ଯିବା ପାଇଁ ଯେ ପ୍ରଲୋଭନ ତା ଆଗରେ ଏହି ଅନ୍ତର୍-ଦୁଃଖ ସହନୀୟ । ତାଙ୍କୁ ସାନ୍ତ୍ୱନା ଦେବାକୁ ଯାଇ "ଆମେ ବର୍ଷେକ ପରେ ନିଶ୍ଚୟ ମିଳିବା" କହି ମୁଁ ରାଜକୋଟ ଠାରୁ ବୋମ୍ବାଇକୁ ଅସିଲି ।

"ଦାଦା ଅବଦୁଲା କମ୍ପାନି"ର ପ୍ରତିନିଧିଙ୍କ ଠାରୁ ବୋମ୍ବାଇ-ଠାରେ ମୁଁ ଜାହାଜ ଟିକଟ ପାଇବା କଥା । କିନ୍ତୁ ସେତେବେଳେ ଜାହାଜରେ ସ୍ଥାନର ଅଭାବ । ଯଦି ମୁଁ ସେହି ଦିନ ଜାହାଜରେ ନଗଲେ ତାହା ହେଲେ ବୋମ୍ବାଇରେ ବାଧ୍ୟ ହୋଇ ରହିବାକୁ ହେବ । ପ୍ରତିନିଧି କହିଲେ, "ଆମେ ଆପଣଙ୍କ ସକାଶେ ପ୍ରଥମ ଶ୍ରେଣୀର ଟିକଟ ପାଇଁ ଯଥାସାଧ୍ୟ ଚେଷ୍ଟା କରି ତାହା ପାଇଲୁ ନାହିଁ—ଜାହାଜର ତଳେ ବସି ଯଦି ଯିବାକୁ ଇଚ୍ଛା କରନ୍ତି, ତାହା ହେଲେ ଟିକଟ ପାଇବେ । ଆପଣଙ୍କର ଖାଇବା ବନ୍ଦୋବସ୍ତ ସବୁ 'ସେଲୁନ' (ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ଯାତ୍ରୀଙ୍କର ଖାଇବା

ସ୍ଥାନ ) ରେ ଠିକଣା କରିବା”। ଯେତେବେଳେ ମୁଁ ପ୍ରଥମ ଶ୍ରେଣୀରେ ଯିବା ଅସିବା କରୁଥାଏ—ଏବଂ ବାରିଷ୍ଟର ଜଣେ କପର ବା ତଳେ ବସି ଯାତ୍ରା କରିବ ? ସୁତରାଂ ମୁଁ ସେଥିପରି ଯିବା ପାଇଁ ଅସ୍ୱୀକାର କଲି । ପ୍ରତିନିଧିଙ୍କ କଥାରେ ମୋର ସନ୍ଦେହ ହେଲା । ପ୍ରଥମ ଶ୍ରେଣୀର ଟିକଟ ମିଳୁ ନଥିଲା ବୋଲି ମୁଁ ବିଶ୍ୱାସ କରି ପାରିଲି ନାହିଁ । ତାଙ୍କର ଅନୁମତି ନେଇ ମୁଁ ନିଜେ ଟିକଟ ଆଣିବା ପାଇଁ ଗଲି । ଜାହାଜ ଭିତରକୁ ଯାଇ ଜାହାଜର ପ୍ରଧାନ କର୍ମଚାରୀଙ୍କ ସହିତ କଥା ବାର୍ତ୍ତା କଲାବେଳେ ସେ କହିଲେ, “ସାଧାରଣତଃ ଏତେ ଯାତ୍ରୀ କେବେ ବସନ୍ତି ନାହିଁ—କିନ୍ତୁ ମୋଜାମବିକ (Mozambique) ର ବଡଲାଟ ସାହେବ ଏହି ଜାହାଜରେ ଯାଉଥିବା ଯୋଗୁଁ ସେ ସବୁ ସ୍ଥାନ ପାଇଁ ଟିକଟ କିଣି ନେଇ ଅଛନ୍ତି ।”

“ମୁଁ—କୌଣସି ଉପାୟରେ ହେଉ ମୋତେ ସ୍ଥାନ ଟିକିଏ ଦେବା କ’ଣ ଅସମ୍ଭବ ହେବ ?” ଉକ୍ତ କର୍ମଚାରୀ ମୋର ଗୋଡଠାରୁ ମୁଣ୍ଡ ପର୍ଯ୍ୟନ୍ତ ଚାହିଁଲେ ଓ ହସି ହସି କହିଲେ, “ତେବେ ଗୋଟିଏ କଥା କଲେ ହେବ—ମୋର ବଖରାରେ ଗୋଟିଏ ବଳକା ସ୍ଥାନ ଅଛି । ସାଧାରଣତଃ ତାହା ଯାତ୍ରୀ ମାନଙ୍କୁ ଦିଆ ଯାଇ ନଥାଏ, କିନ୍ତୁ ମୁଁ ଆପଣଙ୍କୁ ତାହା ଦେବା ପାଇଁ ପ୍ରସ୍ତୁତ ।” ମୁଁ ତାଙ୍କୁ ଧନ୍ୟବାଦ ଦେଇ ଫେରିଲି ଓ କମ୍ପାନିର ପ୍ରତିନିଧିଙ୍କୁ କହି ଟିକଟ କିଣିଲି । ୧୮୯୩ ସାଲର ଅପ୍ରେଲ ମାସରେ ମୁଁ ଦକ୍ଷିଣ ଆଫ୍ରିକାକୁ ଯାତ୍ରା କଲି ।

୧୩ ଦିନ ପରେ ଆମ୍ଭେମାନେ ଲମୁ ନାମକ ବନ୍ଦରଠାରେ ପହୁଞ୍ଚିଲୁ । ଇତିମଧ୍ୟରେ ଉକ୍ତ ଜାହାଜର କପ୍ତାନଙ୍କ ସହିତ ମୋର ବନ୍ଧୁତା ହୋଇ ସାରିଛି । ତାଙ୍କର ‘ଚେସ’ ( ଏକ ପ୍ରକାର ଖେଳ ) ଖେଳରେ ବଡ଼ ଶ୍ରଦ୍ଧା । କିନ୍ତୁ ସେ ଭଲ ରୂପେ ତାହା ଶିଖି ନଥିଲେ । ସୁତରାଂ ତାଙ୍କ

ଅପେକ୍ଷା କମ ଜାଣିଥିବା ସଙ୍ଗୀଙ୍କ ସହିତ ଖେଳିବା ତାଙ୍କର ଇଚ୍ଛା । ମୋତେ ସେ ଦିନେ ଡ଼ାକିଲେ । ସେ ଖେଳ ସମ୍ବନ୍ଧେ ମୁଁ ଅନେକ କଥା ଶୁଣିଥିଲି । କିନ୍ତୁ ସେଥିରେ ହାତ ଦେଇ ନଥାଏ । ଖେଳାଳିମାନେ କହନ୍ତି ଯେ, ମାନସିକ ଶକ୍ତି ବ୍ୟବହାର କରିବା ସକାଶେ ଏହି ଖେଳରେ ବେଶି ସୁବିଧା ମିଳେ; ମୋତେ ଖେଳଟି ଶିଖାଇବା ପାଇଁ ସେ ସ୍ୱତଃପ୍ରବୃତ୍ତ ହେଲେ ମୁଁ ସହର୍ଷ ଭାବରେ ସବୁ ଶୁଣିଲି । ମୁଁ ଯେତିକି ହାରୁଥାଏ ସେତିକି ଉତ୍ସାହରେ ସେ ମୋତେ ଶିଖାଉଥାନ୍ତି । ଖେଳଟି ମୋତେ ଭଲ ଲାଗିଲା କିନ୍ତୁ ଜାହାଜରୁ ଓହ୍ଲାଇଲା ପରେ ଆଉ କେବେ ଖେଳ ନଥିଲି ଏବଂ ଚଳ ଗୁଡ଼ିକ ଏଆଡେ ସେଆଡ଼େ ଘୁଞ୍ଚାଇବା ଛଡ଼ା ଆଉ ବେଶି କିଛି ଶିଖି ନଥିଲି ।

ଜାହାଜଟି ଲମୁ ଠାରେ ତିନି ଚାରି ଘଣ୍ଟା ସକାଶେ ରହିଲା । ସୁତରାଂ ମୁଁ ବନ୍ଦରଟି ଦେଖିବା ପାଇଁ ଓହ୍ଲାଇଲି । କପ୍ତାନ ମଧ୍ୟ କୂଳକୁ ଯାଇଥିଲେ; କିନ୍ତୁ ସେଠାରେ ସମୁଦ୍ରର ଅବସ୍ଥା ହଠାତ୍ ଭୀଷଣାକାର ଧାରଣ କରିଥାଏ ବୋଲି ଶୀଘ୍ର ଫେରି ଆସିବା ପାଇଁ ମୋତେ ସେ ସତର୍କ କରାଇଥିଲେ ।

ସ୍ଥାନଟି ଅତି ଛୋଟ । ଯେଠା ଡ଼ାକ ଘରକୁ ଯାଇ ଭାରତୀୟ କିରାଣିମାନଙ୍କ ସହିତ କଥା ବାର୍ତ୍ତା କରି ମୁଁ ଆନନ୍ଦିତ ହେଲି । କେତେଜଣ ଆଫ୍ରିକା ଅଧିବାସୀଙ୍କୁ ମଧ୍ୟ ଦେଖିଲି ଓ ସେମାନଙ୍କର ଆଚାର ବ୍ୟବହାର ସମ୍ବନ୍ଧେ ଯାହା ଶୁଣିଲି ମୋତେ ବଡ ଭଲ ଲାଗିଲା । ଏଆଡେ ସେଆଡ଼େ ବୁଲୁବୁଲୁ କେତେକାଳ କଟିଗଲା । କେତେ ଜଣ ଯାତ୍ରୀ ରାନ୍ଧି ଖାଇବା ସକାଶେ ଜାହାଜରୁ ଓହ୍ଲାଇ ଥିଲେ । ମୁଁ ସେମାନଙ୍କ ସହିତ ପରିଚିତ ହୋଇଥିଲି । ଜାହାଜରେ ଚଢ଼ିବା ସମୟ ହେଲାକ୍ଷଣି ସେମାନେ ନାଆରେ

ବସିବା ସକାଶେ ଯୋଗାଡ଼ କରିବା ଦେଖି ମୁଁ ମଧ ସେମାନଙ୍କ ସହିତ ବାହାରିଲି । ସମସ୍ତେ ମିଶି ନାଆରେ ଚଢିଲୁଁ । ସେତେବେଳେ ଜୁଆର ଭଟ୍ଟା ଅତି ଭୟଙ୍କର ହୋଇଥିଲା । ଏଆଡେ ମଧ ନାଆରେ ସବୁ ଦିନ ଅପେକ୍ଷା ବେଶି ଜନସ ଲଦି ଦେଇଥିଲେ । ଜାହାଜର ନିଶୁଣୀ ନିକଟକୁ ନାଆଟି ନେବା ଅସମ୍ଭବ ହୋଇ ପଡ଼ିଲା । ବଡ କଷ୍ଟରେ ନାଆ ସେ ନିକଟକୁ ଯାଉଥାଏ କି ନାହିଁ ଜୁଆର ଲାଗି ପୁନରପି ପଛକୁ କମ୍ପା ପଖାକୁ ବାହାରି ଯାଏ । ବନ୍ଦର ଠାରୁ ଜାହଜ ଛାଡିବା ସକାଶେ ପ୍ରଥମ ଘଣ୍ଟା ହୋଇ ଯାଇ ଥିଲା । ସୁତରାଂ ମୁଁ ବଡ ବ୍ୟଥିତ ହେଲି । ଜାହାଜ ଉପରୁ ମୋର କପ୍ତାନ ବନ୍ଧୁ ଆମର ଏହି ଦୁର୍ଦ୍ଦଶା ଦେଖୁଥାନ୍ତି । ଆଉ ପାଞ୍ଚ ମିନଟ ସକାଶେ ଜାହାଜ ବନ୍ଦ କରିବା ପାଇଁ ସେ ଆଦେଶ ଦେଲେ । ଜାହାଜ ନିକଟରେ ଅନ୍ୟ ଏକ ନାଆ ଥିଲା, ମୋର ଜଣେ ବନ୍ଧୁ ମୋପାଇଁ ତାହା ଦଶ ଟଙ୍କା ଦେଇ ଭଡାକଲେ । ଏହି ନାଆର ନାଉରି ଆସି ମୋତେ ପ୍ରଥମ ନାଆରୁ ନେଇଥିଲେ । ମୁଁ ଜାହାଜ ପାଖକୁ ଗଲାବେଳକୁ ନିଶୁଣିଟି ବାହାର କରି ଯାଇଥିଲା । ସୁତରାଂ ଗୋଟିଏ ଦଉଡ଼ି ସାହାଯ୍ୟରେ ମୋତେ ଜାହାଜ ଉପରକୁ ଓଟାରି ନେବାକୁ ପଡ଼ିଥିଲା । ମୁଁ ଉପରେ ପହଞ୍ଚିବାକ୍ଷଣି ଜାହାଜ ବନ୍ଦର ଛାଡିଲା; ଅନ୍ୟ ଯାତ୍ରୀମାନେ ରହିଗଲେ । ମୁଁ ସେତେ- ବେଳେ କପ୍ତାନଙ୍କର ସତର୍କ ବାଣୀକୁ ପ୍ରଶଂସା କରିଥିଲି ।

ଲାମୁ ପରେ ମୋମ୍ବାସା ବନ୍ଦର ପଡିଲା । ସେଠାରୁ ଯାଇ ଜାଞ୍ଜି- ବାର ବନ୍ଦରଠାରେ ପ୍ରାପ୍ତ ଆଠ ଦଶ ଦିନ ରହି ପରେ ଅନ୍ୟ ଏକ ଜାହାଜରେ ବସିଲୁଁ ।

କପ୍ତାନ ମୋତେ ଭଲ ପାଉଥାନ୍ତି ସତ, କିନ୍ତୁ ତାଙ୍କର ସେହି ଆଦରଟା ସାଧାରଣ ଆକାର ଧାରଣ କରିବାକୁ ଲାଗିଲା । ଦିନେ ସେ

ଭ୍ରମଣ କରିବା ସକାଶେ ମୋତେ ଓ ତାଙ୍କର ଅନ୍ୟ ଏକ ବିଲାତ ବନ୍ଧୁଙ୍କୁ ଡାକିଲେ । ଆମ୍ଭେମାନେ କୂଳକୁ ଗଲୁ । ଏହି 'ଭ୍ରମଣ'ର ଉଦ୍ଦେଶ୍ୟ କଣ ମୁଁ ଆଦୌ ଜାଣି ନଥିଲି । ମୁଁ ଏହିପରି ବିଷୟରେ ଯେ କିପରି ମୂର୍ଖ ଥିଲି କପ୍ତାନ ମଧ୍ୟ ତାହା ଜାଣି ନଥିଲେ । ଜଣେ ଘଟକ ଆସି ଆମ୍ଭମାନଙ୍କୁ 'ନିଗ୍ରୋ' ( ଏକ ପ୍ରକାର ଅଶିକ୍ଷିତ ଓ ଅସୁନ୍ଦର ଜାତି ) ସ୍ତ୍ରୀମାନଙ୍କ ଘରକୁ ନେଲା ଓ ତିନି ଜଣଯାକ ତିନି ଗୋଟି ବଖରାକୁ ଯିବାପାଇଁ ଦେଖାଇଲା । ମୁଁ ଲଜ୍ଜିତ ହୋଇ ସେଠାରେ ମୂକ ପରି ଛିଡା ହୋଇ ରହିଲି । ମୋ ସମ୍ବନ୍ଧେ ସେହି ନାରୀ ଅବଳା ଯେ କଣ ଭାବିଥିବ ଭଗବାନ କେବଳ ଜାଣନ୍ତି । କପ୍ତାନ ଡାକିବା କ୍ଷଣି ମୁଁ ଘର ଭିତରୁ ବାହାରି ଆସିଲି । ସେ ଦେଖିଲେ ଯେ ମୁଁ ନିର୍ଦ୍ଦୋଷୀ । ପ୍ରଥମେ ମୋତେ ବଡ ଲଜ୍ଜା ବୋଧ ହେଲା କିନ୍ତୁ ମୁଁ ସେ ବିଷୟ ନେଇ ଭାବିଲା କ୍ଷଣି ମୋର ଦେହ ଉପରେ ଥରିବାକୁ ଲାଗିଲା । ସୁତରାଂ ଆଉ ଲଜ୍ଜା ବୋଧ କଲି ନାହିଁ । ସ୍ତ୍ରୀଟିର ଦୃଶ୍ୟ ଦେଖି ମୁଁ ଯେ ବିଚଳିତ ହୋଇ ନଥିଲି, ସେଥି ପାଇଁ ଭଗବାନଂକୁ ଧନ୍ୟବାଦ ଦେବାକୁ ଲାଗିଲି । ମୋର ଦୁର୍ବଳତା ଲାଗି ମୁଁ ବଡ଼ ବ୍ୟଥିତ ହେଲି । ଘର ଭିତରକୁ ନଯିବା ସକାଶେ କହିବା ପାଇଁ ମୋର ଯେ ସାହସ ହୋଇ ନଥିଲା, ସେହେତୁ ମୁଁ ନିଜକୁ ଅଭାଗା ମନେ କରିଥିଲି ।

ମୋ ଜୀବନରେ ଏହା ତୃତୀୟ ପରୀକ୍ଷା । ଅନେକ ନିର୍ଦ୍ଦୋଷୀ ଯୁବକ କୃତ୍ରିମ ଲଜ୍ଜା ଅନୁଭବ କରି ପାପରେ ପଡ଼ି ଯାଇଥାନ୍ତି । ମୁଁ ନିଷ୍କଳଙ୍କରେ ସେଥିରୁ ରକ୍ଷା ପାଇଛି ବୋଲି ଗର୍ବ କରି ନପାରେ— ସ୍ତ୍ରୀର ଘର ଭିତରକୁ ଯିବା ସକାଶେ ମୁଁ ଯଦି ଅସ୍ୱୀକାର କରିଥାନ୍ତି ତାହା ହେଲେ ନିଜକୁ ସମ୍ମାନିତ ମନେ କରନ୍ତି । କିନ୍ତୁ ମୋତେ ଯେ ସେହି ସର୍ବ କ୍ଷମାଶୀଳ ଭଗବାନ ଏହି ପାପରୁ ରକ୍ଷା କରି ଅଛନ୍ତି ତାଙ୍କୁ କେବଳ

ଅନ୍ତରର ସହିତ ଧନ୍ୟବାଦ ଦେଉଅଛି । ଏହି ଘଟଣା ଯୋଗୁଁ ଭଗବାନଙ୍କ ଠାରେ ମୋର ବିଶ୍ୱାସ ବଢିଲା ଓ ସେଥିଲାଗି ମୁଁ କେତେ ଦୂର ଯାଏ କୃତ୍ରିମ ଲଜ୍ଜା ଦୂର କରିବା ଶିକ୍ଷା କରିଥିଲି ।

ଏଡ଼େନ୍ ବନ୍ଦର ଠାରେ ଆମ୍ଭେମାନେ ସପ୍ତାହକ ପାଇଁ ରହିବାକୁ ହୋଇଥିଲା । ସେହେତୁ ମୁଁ ସହରରେ ଘର ଭଡ଼ା ରଖି ପାଖ ପଡ଼ୋଶୀ ସ୍ଥାନ ସବୁ ବୁଲି ଦେଖିଲି । ମାଲବାର କେବଳ ଜଞ୍ଜିବାରର ଫଳଫୁଲ ନେଇ ପଟାନ୍ତର ହୋଇପାରେ । ବଡ଼ ବଡ଼ ଗଛ ଓ ଫଳର ଆକାର ଦେଖି ମୁଁ ବିମୁଗ୍ଧ ହୋଇଗଲି ।

ଜଞ୍ଜିବାର ଛାଡ଼ି ମୋଜାମବିକ୍ ଠାରେ ଅଳ୍ପ କେତେଦିନ ରହିଲୁ ଓ ମଇ ମାସ ଶେଷ ଆଡ଼କୁ ନେଟାଲରେ ଯାଇ ପ୍ରବେଶ କଲୁଁ ।



## ସପ୍ତମ ପରିଚ୍ଛେଦ ।

( ଅନୁଭୂତିର କମ୍ପନା । )



ଦରବାନ ନେଟାଲର ବନ୍ଦର । ତାକୁ 'ନେଟାଲ ବନ୍ଦର' ବୋଲି ମଧ୍ୟ କହନ୍ତି । ମୋତେ ଭେଟିବା ପାଇଁ ଅବଦୁଲା ସେଠ ସେଠାରେ ଥିଲେ । ଜାହାଜ ଯେତେବେଳେ କୂଳରେ ପହଞ୍ଚିଲା ବନ୍ଧୁମାନଙ୍କୁ ଦେଖିବା ସକାଶେ ଅନେକ ଲୋକ ଆସିଲେ । ମୁଁ ଦେଖିଲି ସେଠାରେ ଭାରତୀୟମାନେ ଆଦୌ ସମ୍ମାନ ପାଉ ନଥିଲେ । ଅବଦୁଲା ସେଠଙ୍କୁ ଜାଣିଥିବା ଲୋକେ ତାଙ୍କ ପ୍ରତି ଯେ କପଟ ଅଭଦ୍ର ବ୍ୟବହାର କରୁଥିଲେ ତାହା ଦେଖି ମୁଁ ମର୍ମାହତ ହେଲି । ଅବଦୁଲା ସେଠଙ୍କ ପକ୍ଷେ ତାହା ନୂତନ ନୁହେ ।

କୁତୂହଳାକ୍ରାନ୍ତ ହୋଇ ମୋଆଡ଼େ ଅନେକ ଲୋକ ଚାହିଁଥାନ୍ତି । ଅନ୍ୟାନ୍ୟ ଭାରତୀୟଙ୍କ ଠାରୁ ମୋର ପୋଷାକଟା ଭିନ୍ନ ହୋଇଥିଲା । ମୁଁ ଖଣ୍ଡିଏ ହୁଗୁଲା କୋଟ ପିନ୍ଧିଥିଲି ଓ ବଙ୍ଗାଳୀ ପାଗଟିଏ ବାନ୍ଧିଥିଲି ।

କମ୍ପାନକୁ ମୁଁ ଗଲାପରେ ଅବଦୁଲ୍ଲା ସେଠଙ୍କ ବଖରା ପାଖରେ ମୋ ସକାଶେ ଯେଉଁ ବଖରାଟି ରଖା ଯାଇଥିଲା ତାହା ମୋତେ ଦିଆ ଗଲା । କିନ୍ତୁ ଅବଦୁଲ୍ଲା ମୋତେ ଜାଣି ପାରିଲେ ନାହିଁକି ମୁଁ ମଧ୍ୟ ତାଙ୍କୁ ଚିହ୍ନି ପାରିଲି ନାହିଁ । ମୋ ହାତରେ ତାଙ୍କର ଭାଇ ଯେଉଁ କାଗଜପତ୍ର ପଠାଇ ଥିଲେ ତାହା ପଢି ସେ ଆହୁରି ଚିନ୍ତିତ ହେଲେ । ତାଙ୍କ ଭାଇ ଗୋଟିଏ ଐରାବତ ହସ୍ତୀ ସେଠାକୁ ପଠାଇ ଅଛନ୍ତି ବୋଲି ସେ ଭାବିଲେ । ମୋର ପୋଷାକ ଓ ଚଳିବା ଢଙ୍ଗ ଦେଖି ତାଙ୍କର ଭୟ ହେଲା ଯେ ମୁଁ ୟୁରୋପୀୟମାନଙ୍କ ପରି ବେଶି ଖରଚ କରିବି । ମୋପାଇଁ ସେତେବେଳେ କିଛି ସ୍ୱତନ୍ତ୍ର କାର୍ଯ୍ୟ ନଥିଲା । ଟ୍ରାନ୍ସଭାଲ ଠାରେ ତାଙ୍କ ମକଦ୍ଦମାର ବିଚାର ଲାଗି ଥାଏ । ହଠାତ୍ ମୋତେ ସେଠାକୁ ପଠାଇବା ଆବଶ୍ୟକ ନଥିଲା । ମୋର କ୍ଷମତା ଓ ସାଧୁତା ପ୍ରତି ତାଙ୍କର କପରି ବିଶ୍ୱାସ ରହିବ ? ମୋତେ ପହରା ଦେବା ସକାଶେ ସେତ ପ୍ରିଟୋରିଆରେ ରହି ପାରିବେ ନାହିଁ । ପ୍ରତିବାଦୀମାନେ ପ୍ରିଟୋରିଆରେ ଥିଲେ । ସେମାନେ ମୋ ସହିତ ଅସଙ୍ଗତ ସମ୍ବନ୍ଧ ରଖି ପାରନ୍ତି । ବିଚାରଣା ହେଉଥିବା ମକଦ୍ଦମାର କାର୍ଯ୍ୟ ଭାର ଯଦି ମୋତେ ଦିଆ ନଯାଏ ମୁଁ ବା ଆଉ କି କାର୍ଯ୍ୟ କରିବି ? ଅନାନ୍ୟ କାର୍ଯ୍ୟ ସବୁତ ତାଙ୍କର କିରାଣିମାନେ ସୁନ୍ଦର ପରିଚାଳନ କରି ପାରନ୍ତି । ଯଦି ସେମାନେ କିଛି ଭୁଲ କରନ୍ତି, ତାହାହେଲେ ଦଣ୍ଡ ପାଇବା କଥା । କିନ୍ତୁ ମୁଁ ଯଦି ସେହିପରି କରେ ମୁଁ କଣ ଦଣ୍ଡ ଭୋଗିବାକୁ ନେବ ? ସୁତରାଂ ମକଦ୍ଦମା ସମ୍ପର୍କରେ ଯଦି ମୋତେ କିଛି କାର୍ଯ୍ୟ ଦିଆ ନଯାଏ, ତାହାହେଲେ ମୋତେ କେବଳ ବୃଥାରେ ରଖିବା କଥା ।

ଅବଦୁଲ୍ଲା ସେଠ କିଛି ପଢ଼ି ନଥିଲେ, କିନ୍ତୁ ତାଙ୍କର ଅନୁଭୂତି ବେଶି। ତାଙ୍କର ମେଧା ଶକ୍ତି ମଧ୍ୟ ବଡ଼ ତୀକ୍ଷ୍ଣ। କଥାବାର୍ତ୍ତା କରିବା ପାଇଁ ସାମାନ୍ୟ କିଛି ଇଂରେଜୀ ଭାଷା ମଧ୍ୟ ସେ ଶିଖିଥିଲେ। ସେହି ଜ୍ଞାନରେ ସେ ବ୍ୟାଙ୍କ (Bank) ମାନେଜରଙ୍କ ସହିତ କମ୍ପା ସାହେବ ବେପାରିଙ୍କ ସହିତ ଅଥବା ତାଙ୍କର ଓକିଲଙ୍କ ସହିତ ସମସ୍ତ କାର୍ଯ୍ୟ ଚଳାଇ ପାରୁ ଥିଲେ। ଭାରତୀୟମାନେ ତାଙ୍କୁ ବଡ଼ ସମ୍ମାନ ଦେଉଥିଲେ। ଭାରତୀୟ କମ୍ପାନିମାନଙ୍କ ମଧ୍ୟରେ ତାଙ୍କର କମ୍ପାନିଟି ବୃହତ୍ତମ;- ଏସବୁ ଗୁଣ ସତ୍ତ୍ୱେ ତାଙ୍କ ଠାରେ ଗୋଟିଏ ମାତ୍ର ଦୁର୍ଗୁଣ ଥାଏ—ସ୍ୱଭାବତଃ ସେ କାହାରିକୁ ବିଶ୍ୱାସ କରନ୍ତି ନାହିଁ।

ମୁସଲମାନ ଧର୍ମ ପ୍ରତି ତାଙ୍କର ବେଶି ଅଭିମାନ ଥାଏ ଓ ଇସଲାମ ସମ୍ବନ୍ଧୀୟ ଦର୍ଶନଶାସ୍ତ୍ର ପଢ଼ିବା ପାଇଁ ସେ ଭଲ ପାଉଥିଲେ। ଆରବ ଭାଷାରେ ତାଙ୍କର ପ୍ରବେଶ ନଥିଲେହେଁ କୋରାନ ଓ ଅନ୍ୟାନ୍ୟ ମୁସଲମାନ ଧର୍ମ ଶାସ୍ତ୍ରରେ ତାଙ୍କର ସୁନ୍ଦର ପରିଚୟ ଥିଲା। ତାଙ୍କ ସମ୍ପର୍କରେ ଆସିବା ଯୋଗୁଁ ଇସଲାମ ଧର୍ମ ସମ୍ବନ୍ଧେ ମୁଁ ଅନେକ ବିଷୟ ଶିଖିଲି। ଆମ୍ଭ ଦୁହିଁଙ୍କ ମଧ୍ୟରେ ଯେତେବେଳେ ବନ୍ଧୁତା ରହିଲା, ଦୁହେଁ ମିଶି ଧର୍ମବିଷୟ ନେଇ ଅନେକ ତର୍କ ବିତର୍କ କରିବାକୁ ଲାଗିଲୁଁ।

ନେଟାଲରେ ପହଞ୍ଚିବା ଦିନେ ଦୁଇ ଦିନ ପରେ ଡରବାନର ଅଦାଲତ ଦେଖାଇବା ସକାଶେ ମୋତେ ସେ ନେଲେ। ଓ ମୋତେ ଅନେକ ଲୋକଙ୍କ ସହିତ ପରିଚିତ କରାଇ ଥିଲେ। ତାଙ୍କ ଓକିଲଙ୍କ ନିକଟରେ ମୁଁ ବସିଲି। ବିଚାରପତି ମୋତେ ଅନେକ ସମୟ ପର୍ଯ୍ୟନ୍ତ ଚାହିଁ ରହିଲେ ଓ ପରିଶେଷରେ ମୁଣ୍ଡରୁ ପଗଡ଼ିଟି ବାହାର କରିବା ପାଇଁ କହିଲେ। ତାହା କରିବା ପାଇଁ ମୁଁ ସ୍ୱୀକାର କଲିନାହିଁ ଓ କଚେରିରୁ

ଉଠି ବାବାଙ୍କ ଆସିଲି । ଏଠାରେ ମଧ୍ୟ ଠେଣା ଓଠରି ହେବା ସକାଶେ ଯଥେଷ୍ଟ ସାମଗ୍ରୀ ଅଛି ବୋଲି ମନେକଲି ।

କେତେଜଣ ଭାରତବାସୀ ପଗଡ଼ି ବାହାର କରିଦେବା ସକାଶେ କପର ଯେ ବାଧ ହୋଇ ଅଛନ୍ତି ସେ ସମ୍ବନ୍ଧେ ଅବଦୁଲ୍ଲା ସେଠ ମୋତେ ବୁଝାଇ କହିଥିଲେ । ଯେଉଁମାନେ ମୁସଲମାନ ବେଶରେ କଚେରକୁ ଯାଆନ୍ତି ସେମାନେ ପଗଡ଼ି ବାନ୍ଧିପାରନ୍ତି କିନ୍ତୁ ଅନ୍ୟାନ୍ୟ ଭାରତୀୟ ଲୋକେ କଚେରରେ ପଗଡ଼ି ବାନ୍ଧିବା ନିୟମ ବିରୁଦ୍ଧ ଅଟେ ।

କାହିଁକି ଏହିପରି ପ୍ରଭେଦ ରଖା ଯାଇଥାଏ ତାହା ସ୍ପଷ୍ଟଭାବେ ବୁଝାଇବାକୁ ହେଲେ ବିଷୟଟିର ବହୁଳ ବର୍ଣ୍ଣନ ଆବଶ୍ୟକ । ମୁଁ ଏହି ଦୁଇ ତିନି ଦିନ ମଧ୍ୟରେ ଦେଖି ପାରିଥିଲି ଯେ ସେଠାର ଭାରତୀୟମାନେ ଦଳ ୨ ହୋଇ ବିଭକ୍ତ ହୋଇଥିଲେ । ମୁସଲମାନ ବେପାରୀମାନେ ଗୋଟିଏ ଦଳ କରି ଆରବ ଦେଶର ଲୋକ ବୋଲି ପରିଚିତ ହେଉଥିଲେ । ହିନ୍ଦୁ ଓ ପାର୍ଶି କିରାଣିମାନେ ମିଶି ଅନ୍ୟ ଏକ ଦଳ କରିଥିଲେ । ହିନ୍ଦୁ କିରାଣିମାନଙ୍କ ଅବସ୍ଥା ବଡ଼ ଅସ୍ଥିର ଓ ଶୋଚନୀୟ— ଆରବ ବେପାରୀମାନଙ୍କ ପାଖରେ ନ ରହିଲେ ସେମାନେ ଏଆଡ଼େ ସେଆଡ଼େ ହେବା କଥା । ପାର୍ଶି କିରାଣିମାନେ ପାରସ୍ୟବାସୀ ବୋଲି ପରିଚୟ ଦେଉଥାନ୍ତି । ଏହି ତିନି ସମ୍ପ୍ରଦାୟ ମଧ୍ୟରେ ସାମାଜିକ ସମ୍ବନ୍ଧ ଥାଏ । କିନ୍ତୁ ସମସ୍ତଙ୍କ ଅପେକ୍ଷା ବଡ଼ ଦଳ ହେଉଛି ତାମିଲ, ତେଲୁଗୁ ଓ ଉତ୍ତର ଭାରତୀୟ ଶ୍ରମଜୀବୀମାନଙ୍କର ସମଷ୍ଟି । ଯେଉଁମାନେ ପାଞ୍ଚବର୍ଷ ସକାଶେ କାର୍ଯ୍ୟ କରିବା ପାଇଁ ସ୍ୱୀକାର କରି ନେଟାଲକୁ ଯାଇଥିଲେ ସେମାନେ ଶ୍ରମଜୀବୀ ଦଳର ଲୋକ । ଅନ୍ୟ ତିନି ଦଳ ସହିତ ଏମାନଙ୍କର କେବଳ ବ୍ୟବହାର ସମ୍ପର୍କ ଥିଲା । ଇଂରେଜମାନେ ସେମାନଙ୍କୁ 'କୁଲି' ବୋଲି ଡାକୁଥିଲେ,

ଓ ଅଧିକାଂଶ ଭାରତୀୟ ସେଠାରେ ଶ୍ରମଜୀବୀ ହୋଇଥିବାରୁ ସମୁଦାୟ ଭାରତୀୟ ଲୋକଙ୍କୁ 'କୁଲି' କିମ୍ବା 'ସାମି' ବୋଲି ଡାକୁଥାନ୍ତି । ସାମି ପଦଟି ତାମିଲ ଭାଷାନ୍ତର୍ଗତ, ତାମିଲ ନାମମାନଙ୍କର ଶେଷରେ ଯୋଗ କରାଯାଇଥାଏ ଓ ସଂସ୍କୃତ ପଦ 'ସ୍ୱାମୀ' ( ପ୍ରଭୁ ) ର ଅପଭ୍ରଂଶ ଛଡ଼ା ଆଉ କିଛି ନୁହେ । ଯଦି କେହି ଭାରତୀୟ ଲୋକ 'କୁଲି' ବୋଲି ଡାକିବା ଶୁଣି ବିରକ୍ତ ହୁଅନ୍ତି ଓ ଡାକିବା ବ୍ୟକ୍ତିଙ୍କୁ ଉପଯୁକ୍ତ ଉତ୍ତର ଦେବାକୁ ଚାହାନ୍ତି, ସେ ହାସ୍ୟ ଭାବରେ କହିଥାନ୍ତି ଯେ, "ତୁମେ ମୋତେ 'ସାମି' ବୋଲି ଡାକିପାର, ମୋର କିଛି ଆପତ୍ତି ନାହିଁ କିନ୍ତୁ ତୁମେ ଜାଣିନାହିଁ ଯେ 'ସାମି'ର ଅର୍ଥ ହେଉଛି 'ପ୍ରଭୁ'; ମୁଁ ତ ତୁମର ପ୍ରଭୁ ନୁହେ ।" କେହି କେହି ଇଂରେଜ ଲୋକ ଏହା ଶୁଣି ଲଜ୍ଜିତ ହୋଇ ନୀରବ ରହନ୍ତି, ଓ ଆଉ କେହି କେହି କ୍ରୁଦ୍ଧ ହୋଇ ଉଠନ୍ତି ଓ ଭବିଷ୍ୟତରେ ତାର ପ୍ରତିକାର କରିବେ ବୋଲି ଭୟ ଦେଖାଇ ଥାନ୍ତି । ସେମାନଙ୍କ ମତରେ 'ସାମି' ପଦଟା ଘୃଣା ସୂଚକ ଛଡ଼ା ଆଉ କିଛି ନୁହେ । ସୁତରାଂ ଏହାପରି ମୂଳ ଅର୍ଥ କହିବା ଶୁଣିଲେ ସୁବିଧା ଦେଖି ମାଡ଼ ମଧ ଦେଇ ଥାନ୍ତି । ପଦଟିକୁ 'ସାମି' ତଥା 'ପ୍ରଭୁ' ବୋଲି ଅର୍ଥ କଲେ କ'ଣ ଅପମାନର କଥା !

ଏହିସବୁ କାରଣ ଯୋଗୁଁ ମୁଁ "କୁଲି ବାରିଷ୍ଟର" ବୋଲି ପରିଚିତ ହୋଇଥିଲି, ଓ ଭାରତୀୟ ବେପାରୀମାନଙ୍କୁ 'କୁଲି ବେପାରି' ବୋଲି ମଧ କୁହା ଯାଉଥିଲା । 'କୁଲି' ର ପ୍ରକୃତ ଅର୍ଥ ଆଉ ରହିଲା ନାହିଁ । ସମସ୍ତ ଭାରତୀୟମାନଙ୍କ ପ୍ରତି ତାହା ଗୋଟିଏ ନାମ ସ୍ୱରୂପ ବ୍ୟବହୃତ ହେଲା । ଜଣେ ମୁସଲମାନ ମହାଜନଙ୍କୁ 'କୁଲି' ବୋଲି ଜଣେ ଯଦି ଇଂରେଜ ଭଦ୍ରଲୋକ କହନ୍ତି ସେ କ୍ରୋଧରେ ଉତ୍ତର ଦିଅନ୍ତି ଯେ "ମୁଁ କୁଲି ନୁହେ, ମୁଁ ଜଣେ ଆରବ" କିମ୍ବା "ମୁଁ ଜଣେ ମହାଜନ" । ଇଂରେଜ

ଭଦ୍ରଲୋକସୁଦ୍ଧ ମର୍ଯ୍ୟାଦା ଜାଣିଥାନ୍ତି ତାହା ହେଲେ ସେ ହଠାତ୍ ଉକ୍ତ ମହାଜନଙ୍କ ଠାରେ କ୍ଷମା ପ୍ରାର୍ଥନା କରନ୍ତି ।

ଏପରି ଅବସ୍ଥାରେ ପଗଡ଼ି ବାନ୍ଧିବା କଥାର ମୂଲ୍ୟ ବେଶି । ଜଣେ ଭାରତୀୟଙ୍କ ମୁଣ୍ଡରୁ ପଗଡ଼ି ବାହାର କରାଇ ଦେବାର ଅର୍ଥ ଆଉ କିଛି ନୁହେ କେବଳ ଅପମାନ ସହ ବୋଲି ତାଙ୍କୁ କହିବା କଥା । ସୁତରାଂ ମୁଁ ଭାବିଲି ଯେ ପଗଡ଼ି ପରିବର୍ତ୍ତେ ଇଂରେଜ ଟୋପି ଗୋଟିଏ ଲଗାଇବା ଉଚିତ-ସେହି-ପରି କଲେ ଆଉ ଅପମାନିତ ହେବାକୁ ପଡ଼ିବ ନାହିଁ ଓ ବୃଥା ଗୋଳ-ମାଳରୁ ମଧ୍ୟ ରକ୍ଷା ପାଇବି ।

କିନ୍ତୁ ଅବଦୁଲ ସେଠ ମୋର ଏହି ସିଦ୍ଧାନ୍ତ ନାମଞ୍ଜୁର କଲେ । ସେ କହିଲେ, "ଆପଣ ଯଦି ସେହିପରି କରନ୍ତି ତାହାହେଲେ ପରିଣାମ ମନ୍ଦ ହେବ । ଯେଉଁମାନେ ଭାରତୀୟ ପଗଡ଼ି ଲଗାଇବା ସକାଶେ ଜିଦ ଧରିଛନ୍ତି, ସେମାନଙ୍କୁ ଆପଣ ହଇରାଣ କରିବେ । ଆପଣଙ୍କ ମୁଣ୍ଡରୁ ଭାରତୀୟ ପଗଡ଼ି ମଧ୍ୟ ସୁନ୍ଦର ଦିଶୁଛି । ଯଦି ଗୋଟିଏ ସାହେବ ଟୋପି ଲଗାନ୍ତି, ତାହା-ହେଲେ ଜଣେ ପରିଚାରକ ତଥା ଖାନସାମା ଭଳି ଦିଶିବେ" ।

ଏହି ଉପଦେଶ ମଧ୍ୟରେ ତାଙ୍କର ଚତୁରତା ଓ ସ୍ୱଦେଶ ପ୍ରେମି-କତା ପ୍ରକାଶ ପାଉଥିଲା ସତ, କିନ୍ତୁ ସେ ଟିକିଏ ସଂକୋଚମନା ବୋଲି ମୁଁ ବୁଝିଲି । ସେ ଯେ ଖାନସାମାଙ୍କୁ ତୁଳନା କରି କହିଲେ, ତଦ୍ୱାରା ତାଙ୍କର ସଂକୋଚମନର ପରିଚୟ ପାଉଥିଲା । ଯେଉଁ ଭାରତୀୟ ଶ୍ରମଜୀବୀ-ମାନେ ପାଞ୍ଚ ବର୍ଷ ପର୍ଯ୍ୟନ୍ତ କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ଦକ୍ଷିଣ ଆଫ୍ରିକାକୁ ଯାଇଥିଲେ ସେମାନେ ତିନିଭାଗରେ ବିଭକ୍ତ ଥିଲେ—ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନ । ଶେଷୋକ୍ତ ଦଳ ଭାରତୀୟମାନଙ୍କର ସନ୍ତାନ କିନ୍ତୁ ସେମାନେ ନିଜ ନିଜ ଧର୍ମ ଛାଡ଼ି ଖ୍ରୀଷ୍ଟଧର୍ମ ଅବଲମ୍ବନ କରିଥିଲେ ।

୧୮୯୩ ସାଲରେ ମଧ୍ୟ ସେମାନଙ୍କର ସଂଖ୍ୟା ବେଶି । ସେମାନେ ଇଂରେଜ ପୋଷାକ ପିନ୍ଧନ୍ତି ଓ ଅଧିକାଂଶଲୋକ ହୋଟେଲରେ ଖାନ୍‌ସାମାରୂପେ ଜୀବିକା ନିର୍ବାହ କରୁଥାନ୍ତି । ଅବଦୁଲ ସେଠ ଯେଉଁ ଇଂରେଜ ଟୋପି ବିଷୟ ନେଇ ସମାଲୋଚନା କରୁଥିଲେ, ତାହା ଏହି ଶ୍ରେଣୀର ଲୋକେ ହୋଟେଲରେ ବ୍ୟବହାର କରୁଥାନ୍ତି । ଖାନାସାମା ହୋଇ ରହିବା ବଡ ନୀଚ କାମ ବୋଲି ସମସ୍ତେ କହୁଥାନ୍ତି । ଆଜକାଲି ମଧ୍ୟ ଅନେକଙ୍କର ଏହି ଧାରଣା ଅଛି । ସେ ଯାହାହେଉ ମୁଁ ଅବଦୁଲ ସେଠଙ୍କ ଉପଦେଶଟି ଗ୍ରହଣ କଲି । କଚେରିର ଘଟଣା ବିଷୟ ନେଇ ପତ୍ରିକାରେ ଲେଖିଲି ଓ ସେଠାରେ ପଗଡିବାନ୍ଧି ବସିବା ଭିତ୍ତି ଅନୁଚିତ ହୋଇ ନାହିଁ ବୋଲି ଧରିବସିଲି । ଏ ବିଷୟ ନେଇ ପତ୍ରିକା ମହଲରେ ଚହଲ ପଡିଗଲା ଓ ମୋତେ 'ଅପ୍ରୀତିକର ଦର୍ଶକ' ବୋଲି ମଧ୍ୟ ବର୍ଣ୍ଣନା କରାଗଲା । ମୁଁ ଯିବା ଅଳ୍ପ ଦିନ ମଧ୍ୟରେ ଏହି ଯେ ଘଟଣା ହୋଇଥିବା ଯୋଗୁଁ ସମଗ୍ର ଦକ୍ଷିଣ ଆଫ୍ରିକାରେ ମୋ ସମ୍ବନ୍ଧେ ଲେଖାଲେଖି ହେଲା । କେହି କେହି ମୋତେ ସମର୍ଥନ କରୁଥିଲେ ଓ କେହି କେହି ମଧ୍ୟ ମୋତେ ଦୁଃସାହସୀ ବୋଲି ସମାଲୋଚନା କରୁଥିଲେ ।

ଦକ୍ଷିଣ ଆଫ୍ରିକାରୁ ଫେରିବା ପର୍ଯ୍ୟନ୍ତ ମୁଁ ପଗଡି ଛାଡ଼ି ନଥିଲି । ଠିକ କେତେବେଳେ ଓ କାହିଁକି ଯେ ମୁଁ ପଗଡି କମ୍ବା ଟୋପି ମୁଣ୍ଡରେ ଲଗାଇ ନଥିଲି ତାହାପରେ କହିବି ।



# ଅଷ୍ଟମ ପରିଚ୍ଛେଦ ।

( ପ୍ରିଟୋରିଆ ପଥେ । )



ଅଳ୍ପ ଦିନ ମଧ୍ୟରେ ମୁଁ ଦରବାନବାସୀ ଭାରତୀୟ ଖ୍ରିଷ୍ଟିୟାନ-ମାନଙ୍କ ସମ୍ପର୍କରେ ଆସିଲି । ପାଲ୍ ନାମକ ଜଣେ ରୋମନ କେଥଲିକ୍ ଅଦାଲତରେ ଅନୁବାଦକ ସ୍ୱରୂପ ଥାଆନ୍ତି । ତାଙ୍କ ସହିତ ଓ ସ୍ୱର୍ଗୀୟ ମିଃ ସୁଭାନ ଗାଡ଼ଫ୍ରେଙ୍କ ସହିତ ପରିଚୟ ଲାଭ କଲି । ମିଃଗାଡଫ୍ରେ ପ୍ରୋଟେଷ୍ଟାଣ୍ଟ ଧର୍ମ ପ୍ରଚାରକ ଥିଲେ । ଗତ ବର୍ଷ ( ୧୯୨୪ ) ଦକ୍ଷିଣ ଆଫ୍ରିକାରୁ ଭାରତକୁ ଆସିଥିବା ଡେପୁଟେସନର ସଦସ୍ୟ ମିଃ ଜେମସ୍, ଗାଡଫ୍ରେଙ୍କର ମିଃ ସୁଭାନ ପିତା ଅଟନ୍ତି । ସ୍ୱର୍ଗୀୟ ପାର୍ଶି ରୁସ୍ତମଜୀ ଓ ସ୍ୱର୍ଗତ ଆଦମ୍‌ଜୀ ମିଆଁଖାନଙ୍କ ସହିତ ମଧ୍ୟ ଠିକ ସେହି ସମୟରେ ପରିଚିତ ହୋଇଥିଲି । ସେତେବେଳଯାଏ ଏହି ସବୁ ବନ୍ଧୁମାନେ କେବେହେଲେ ପରସ୍ପର ମିଶି ନ ଥିଲେ, କିନ୍ତୁ ସେଦିନଠାରୁ ସେମାନଙ୍କ ମଧ୍ୟରେ କିପରି ଘନିଷ୍ଠ ସମ୍ବନ୍ଧ ରହିଲା ସେ ସମ୍ବନ୍ଧେ ପରେ କହିବି ।

ଏହିପରି ମୁଁ ଅନେକ ବିଶିଷ୍ଟ ଲୋକଙ୍କ ପରିଚୟ ଲାଭ କରି ଆସୁଛି, ପ୍ରିଟୋରିଆ ଠାରୁ କମ୍ପାନିର ଓକିଲ ପତ୍ର ଲେଖିଲେ ଯେ ମକଦମା ପାଇଁ ସମସ୍ତ ଯୋଗାଡ଼ କରିବାକୁ ହେବ । ଏକେତ ଅବଦୁଲ୍ ସେଠ ନିଜେ ପ୍ରିଟୋରିଆକୁ ଯିବେ ନାହିଁ ବା ପ୍ରତିନିଧି ପଠାଇବେ ।

ଅବଦୁଲ ସେଠ ମୋତେ ସେହି ପତ୍ରଟି ପଢିବା ସକାଶେ ଦେଇ ମୁଁ ପ୍ରିଟୋରିଆ ଯିବା ପାଇଁ ମୋର ମତ ପଚାରିଲେ । ମୁଁ କହିଲି, "ଆପଣଙ୍କଠାରୁ ମକଦମାଟି ସମ୍ପୂର୍ଣ୍ଣରୂପେ ବୁଝିଲା ପରେ କହିବି । ସେଠା-

ରେ ଯାଇ କଣ କରିବାକୁ ହେବ ମୁଁ ବର୍ତ୍ତମାନ ଜାଣିନାହିଁ" । ମୋତେ ମକଦ୍ଦମା ସମ୍ବନ୍ଧେ ଶୀଘ୍ର ସ[illegible] ବିଷୟ ବୁଝାଇ କହିବା ପାଇଁ ସେ କିରାଣି-ମାନଙ୍କୁ କହିଲେ ।

ମକଦ୍ଦମା ସମ୍ବନ୍ଧେ ବୁଝା ବୁଝି କଲାବେଳେ ମନେ କଲି ବିଷୟ ଟିର ମୂଳରୁ ବୁଝିବାକୁ ହେବ । କାଳିବାର ଠାରେ ଯେଉଁ କେତେଦିନ ଥିଲି କାର୍ଯ୍ୟ ଦେଖିବା ସକାଶେ ମୁଁ ଅଦାଲତକୁ ଯାଇଥାଏ । ଜଣେ ପାର୍ଶି ଓକିଲ ଦେନେ ଧାର ଓ ଦେୟ ଚିଠା ନେଇ ସାକ୍ଷୀ ଜଣକୁ ପ୍ରଶ୍ନ କରୁଥିଲେ । ମୁଁ ତାହା ଦେଖି ସେଥିରୁ କିଛି ବୁଝି ପାରିଲିନାହିଁ । ଚିଠା ଲେଖି ରଖିବା ସକାଶେ ମୁଁ ସ୍କୁଲରେ କିମ୍ବା ବିଲାତ ଅଧିବାସ ସମୟରେ ଶିଖି ନଥିଲି ।

ଯେଉଁ ମକଦ୍ଦମା ନେଇ ମୁଁ ଦକ୍ଷିଣ ଆଫ୍ରିକାକୁ ଆସିଥିଲି ତାହା ସବୁ ଚିଠାର ବିଷୟ । ଯେଉଁମାନଙ୍କର 'ଚିଠା' ଲେଖାରେ ପ୍ରବେଶ ଅଛି ସେମାନେ କେବଳ ମକଦ୍ଦମାଟି ଭଲ ବୁଝି ପାରିବେ ଓ ବୁଝାଇ ପାରିବେ । ଏତେ ଧନ ଧାର ଦିଆ ଯାଇଅଛି ଓ ଏତେ ପେଠ ହୋଇଅଛି, ଇତ୍ୟାଦି ବିଷୟ ନେଇ କିରାଣିମାନେ କହି ଯାଉଥାନ୍ତି, କିନ୍ତୁ ମୁଁ ସେ ସବୁ ଜଟିଳ ବୋଧ କରୁଥାଏ । 'ପ୍ରମିସରି ନୋଟ' କାହାକୁ କହନ୍ତି, ମୁଁ ଜାଣିନଥିଲି । ଶବ୍ଦ କୋଷରେ ମଧ୍ୟ ସେହି ପଦଟି ଖୋଜି ପାଇଲିନାହିଁ । ମୋର ଏହି ନିର୍ବୋଧତା ସମ୍ବନ୍ଧେ କିରାଣିଙ୍କୁ କହି ତାଙ୍କଠାରୁ ଶିଖିଲି ଯେ 'ପି: ନୋଟ'ର ଅର୍ଥ ହେଉଛି 'ପ୍ରମିସରି ନୋଟ' । 'ଚିଠା' ଲେଖା ଲେଖି ସମ୍ବନ୍ଧେ ଖଣ୍ଡିଏ ବହି କିଣି ତାହା ପଢ଼ିଲି । ତାହା ପଢ଼ିଲା ପରେ ଟିକିଏ ସାହସ ହେଲା — ମକଦ୍ଦମାଟି ବୁଝି ପାରିଲି । ଚିଠା ଲେଖା ଲେଖିରେ ଅବଦୁଲ ସେଠଙ୍କର ପ୍ରବେଶ ନଥିଲେ ମଧ୍ୟ ସେ ସମସ୍ତ ଜଟିଳ ବିଷୟ ସମାଧାନ କରି ପାରୁଥିଲେ । ପ୍ରିଟୋରିଆ ଯିବା ସକାଶେ ମୁଁ ପ୍ରସ୍ତୁତ ହୋଇଅଛି ବୋଲି ତାଙ୍କୁ କହିଲି ।

ସେଠ—'କେଉଁଠି ରହିବ ?'

ମୁଁ—'ଆପଣ ଯେଉଁଠାରେ କହିବେ ?'

ସେଠ—'ତେବେ ଆମ ଓକିଲଙ୍କଠାକୁ ମୁଁ ଲେଖିବି । ଆପଣଙ୍କର ରହିବା ଯୋଗାଡ଼ ସେ କରିନେବେ । ମୋର ବନ୍ଧୁମାନଙ୍କଠାକୁ ମଧ୍ୟ ଲେଖିବି । କିନ୍ତୁ ସେମାନଙ୍କ ସହିତ ରହିବା ପାଇଁ ମୁଁ ଆପଣଙ୍କୁ କହି ନପାରେ । ପ୍ରତିବାଦୀ ପକ୍ଷ ଲୋକଙ୍କର ପ୍ରିଟୋରିଆରେ ବେଶି କ୍ଷମତା । ସେମାନଙ୍କ ମଧ୍ୟରୁ କେହି ଯଦି ଆମର ଗୁପ୍ତ ଚିଠି ପତ୍ର ପଢ଼ନ୍ତି ତାହାହେଲେ ବେଶି କ୍ଷତିଗ୍ରସ୍ତ ହେବାକୁ ପଡ଼ିବ । ସେମାନଙ୍କ ସହିତ ଆପଣଙ୍କର ଯେତେଦୂର କମ୍ ସମ୍ପର୍କ ରହିବ, ସେତିକି ଭଲ" ।

ମୁଁ—"ଆପଣଙ୍କ ଓକିଲ ଯେଉଁ ସ୍ଥାନ ଦେଖାଇବେ ମୁଁ ସେଠାରେ ରହିବି, ନଚେତ୍ ସ୍ୱତନ୍ତ୍ର ବସା କରି ରହିବି । ଆପଣ ବ୍ୟସ୍ତ ହେବା ଦରକାର ନାହିଁ । ଆମର ଗୁପ୍ତ କଥା କେହିହେଲେ ଜାଣିବେ ନାହିଁ, କିନ୍ତୁ ମୁଁ ଅନ୍ୟ ପକ୍ଷର ପରିଚୟ ଲାଭ କରିବା ପାଇଁ ଇଚ୍ଛା କରେ । ସେମାନଙ୍କ ସହିତ ବନ୍ଧୁତା ସ୍ଥାପନ କରି, ଯଦି ସମ୍ଭବ ହୁଏ ତେବେ ବାହାରେ ମକଦ୍ଦମାଟି ସମାଧାନ କରି ଦେବା ମୋର ଇଚ୍ଛା । ଟାଇବ ସେଠ ଆପଣଙ୍କର ବାନ୍ଧବ, ଅନ୍ୟ କେହିତ ନୁହନ୍ତି ।

ସେଠ ଟାଇବ ହାଜିଖାନ ମହମ୍ମଦ ଅବଦୁଲ ସେଠଙ୍କର ନିକଟ ବାନ୍ଧବ ।

ସମାଧାନ ବିଷୟ ସମ୍ଭବ ବୋଲି ଶୁଣିବାରୁ ସେଠ ଟିକିଏ ଚମକି ପଡ଼ିଥିବା ମୁଁ ଦେଖିଲି । କିନ୍ତୁ ମୁଁ ଡରବାନରେ ଛଅ କିମ୍ବା ସାତଦିନ କଟାଇ ସାରିଥିଲି ଓ ଆମ୍ଭେ ଦୁହେଁ ପରସ୍ପରକୁ ଉତ୍ତମରୂପେ ବୁଝି ପାରିଥିଲୁ । ମୁଁତ ଆଉ 'ଐଶ୍ୱରିକ ହସ୍ତୀ' ନୁହେଁ ।

ସେ କହିଲେ "କଚେରି ବାହାରେ ବିଷୟଟିର ସମାଧାନ କରି-ଦେଲେ ଭଲ । କିନ୍ତୁ ଆମେ ସମ୍ପୃକ୍ତ ବାନ୍ଧବ—ପରସ୍ପରକୁ ପରସ୍ପର ଭଲ ରୂପେ ଜାଣିଛୁ—ତାଇବ ସେଠ ସହଜରେ ସମାଧାନ ସକାଶେ ସ୍ୱୀକାର କରିବା ବ୍ୟକ୍ତି ନୁହନ୍ତି । ସେ ବିନା କ୍ଳେଶରେ ଆମର ଜଣଜଣଙ୍କୁ ନେଇଯାଇ ପରିଶେଷରେ ଆମମାନଙ୍କୁ ହଇରାଣ କରିବେ । ସୁତରାଂ ପୂର୍ବରୁ ଟିକିଏ ଭାବନା କରିବା ଉଚିତ" ।

ମୁଁ—"ସେଥିଲାଗି କିଛି ଥାଉର ହିଅନ୍ତୁ ନାହିଁ । ମକଦମା ସମ୍ବନ୍ଧେ ମୁଁ ତାଇବ ସେଠଙ୍କୁ କିମ୍ବା ଅନ୍ୟ କାହାକୁ କିଛି କହିବି ନାହିଁ । ସମାଧାନ କଲେ ଭଲ ହେବ ଓ ଅଯଥା ପଇସା ଖରଚ ହେବ ନାହିଁ ବୋଲି ତାଙ୍କୁ ପ୍ରସ୍ତାବ କରିବି ।

ଦରବାନଙ୍କୁ ଆସିବା ସପ୍ତମ କିମ୍ବା ଅଷ୍ଟମ ଦିନ ମୁଁ ପ୍ରିଟୋ-ରିଆକୁ ଯିବା ସକାଶେ ବାହାରିଲି । ମୋ ପାଇଁ ପ୍ରଥମ ଶ୍ରେଣୀର ଟିକଟ ଗୋଟିଏ କଣାଗଲା । ଶେଯ ଆବଶ୍ୟକ ମନେକଲେ ଆଉ ଅଧିକ ପାଞ୍ଚ ସିଲିଙ୍ଗ ଦେବାକୁ ପଡ଼ିଥାଏ । ଶେଯ ଗୋଟିଏ ପାଇଁ ଯୋଗାଡ଼ କରିବା ସକାଶେ ଅବଦୁଲ ସେଠ ଧରି ବସିଲେ । କିନ୍ତୁ ପାଞ୍ଚ ସିଲିଙ୍ଗ ହେଲେ ଖରଚ ନହୋଇ ରହିବ ବୋଲି ମୁଁ ଶେଯ ନେବାକୁ ଅସ୍ୱୀକାର କଲି । ସେ ମୋତେ ସାବଧାନ କରାଇ କହିଲେ, "ଦେଖନ୍ତୁ, ଭାରତ ଓ ଦକ୍ଷିଣ ଆଫ୍ରିକା ମଧ୍ୟରେ ଅନେକ ପ୍ରଭେଦ । ଭଗବାନଙ୍କ କୃପାରୁ ଆମର ପଇସା ପତ୍ର ଅଛି । ଖରଚ କରିବା ସ୍ୱବିଧା ଅଛି । ସେହେତୁ ଆପଣଙ୍କ ପାଇଁ ଯାହା ନିତାନ୍ତ ଦରକାର ସେଥିପ୍ରତି କୁଣ୍ଠିତ ହେବା ଉଚିତ ନୁହେ ।" ମୁଁ ତାଙ୍କୁ ଧନ୍ୟବାଦ ଦେଲି ଓ କହିଲି ଯେ ସେ ମୋଲାଗି ବେଶି ଅଧୁର ହେବା ଉଚିତ ନୁହେ ।

ରାତି ନଅ ଘଣ୍ଟା ସମୟରେ ନେଟାଲର ରାଜଧାନୀ ମେରିଜ୍‌ବାର୍‌ଗ ଠାରେ ରେଲଗାଡ଼ି ଯାଇ ପହଞ୍ଚିଲା । ସେହି ଟେସନରେ ଶେଯ ଦିଆଯାଉଥାଏ । ରେଲ ବିଭାଗର ଜଣେ ଚାକର ଆସି ମୋତେ ଶେଯ ଯାଚିଲା । ମୋ ପାଖରେ ଶେଯ ଥିବା କଥା କହି ତାକୁ ଘଉଡ଼ି ଦେଲି । ତାପରେ ଜଣେ ଯାତ୍ରୀ ଆସି ମୋର ଆପାଦ ମସ୍ତକ ଚାହିଁଲେ । ସେ ଦେଖିଲେ ମୁଁ ଜଣେ 'କଳା' ଲୋକ । ତାଙ୍କୁ ବଡ଼ ଅଡ଼ୁଆ ବୋଧ ହେଲା । ସେ ହଠାତ୍ ବାହାର ଯାଇ ଜଣେ ଦୁଇଜଣ ରେଲ ବିଭାଗ କର୍ମଚାରୀଙ୍କ ସହିତ ଆସିଲେ । କିନ୍ତୁ ଅନ୍ୟ ଜଣେ କର୍ମଚାରୀ ଆସି ଯେତେବେଳେ "ତୁମେ ଅନ୍ୟ ଏକ କାମରାକୁ ଯିବ ଆସ" ବୋଲି ମୋତେ କହିଲେ, ସେମାନେ ସବୁ ନୀରବ ରହିଲେ ।

ମୁଁ—"କିନ୍ତୁ ମୋର ତ ପ୍ରଥମ ଶ୍ରେଣୀ ଟିକଟ ଅଛି ?"

କର୍ମଚାରୀ—"ସେ ସବୁ କହିବା କିଛି ଦରକାର ନାହିଁ, ମୁଁ କହୁଛି ତୁମେ ଜିନିଷ ପତ୍ର ସହି ଅନ୍ୟ କାମରାକୁ ଯିବା ପାଇଁ ହେବ ।

ମୁଁ—"ଏହି କାମରାରେ ବସି ଯିବା ପାଇଁ ମୁଁ ଡରବାନ ଠାରେ ଅନୁମତି ପାଇଥିଲି ଓ ଏବେ ମଧ୍ୟ ନିଶ୍ଚୟ ସେଥିରେ ବସି ଯିବି ବୋଲି କହୁଛି" ।

କର୍ମଚାରୀ—"ନା, ତୁମେ ଏ କାମରା ଛାଡ଼ି ଦେବାକୁ ହେବ, ନଚେତ୍ ପୁଲିସ ଦ୍ୱାରା ତୁମକୁ ବାହାର କରାଇ ଦେବି ।

ମୁଁ—"ଅଚ୍ଛା, ସେପରି ହେଉ, କିନ୍ତୁ ମୁଁ ସ୍ୱଇଚ୍ଛାରେ ଏଥିରୁ ଘୁଞ୍ଚିବି ନାହିଁ ।"

ପୁଲିସ ଆସିଲା ଓ ମୋର ହାତ ଧରି ଧକ୍କାକୁ ବାହାର କରିଦେଲା । ମୋର ସବୁ ଜିନିଷ ପତ୍ର ମଧ୍ୟ କାଢ଼ାଗଲା । ମୁଁ ଅନ୍ୟ କୌଣସି

ବର୍ଣ୍ଣ ଗ୍ରରେ ବସିବା ପାଇଁ ଅସ୍ୱୀକାର କଲି, ଗାଡ଼ି ବାହାରି ଗଲା । କେବଳ ହାତ-ପେଡି ଖଣ୍ଡି ଧରି ବିଶ୍ରାମ ଗୃହରେ ଯାଇ ବସିଲି । ଅନ୍ୟ ଜିନିଷ ପତ୍ର ସବୁ ପଦାରେ ପଡ଼ିଥିଲା । ରେଲ କର୍ମଚାରୀମାନେ ସେ ସବୁର ତଦାରଖ କରିନେଲେ ।

ଶୀତ ଋତୁ—ଦକ୍ଷିଣ ଆଫ୍ରିକାର ଉଚ୍ଚ ପ୍ରଦେଶରେ ସେ ସମୟରେ ବଡ ଶୀତ । ମେରିଜ୍‌ବାରଗ ଉଚ୍ଚ ପ୍ରଦେଶ ହୋଇ ଥିବା ଯୋଗୁଁ ସେଠାରେ ଶୀତ ଅତି ଭୟଙ୍କର । ମୋର ଓଭର କୋଟ ଖଣ୍ଡି ପେଡି ଭିତରେ ରହି ଯାଇଥିଲା । ଆଉ ଥରେ ଅପମାନିତ ହେବା ଭୟରେ ତାହା ମାଗିବା ପାଇଁ ସାହାସ ହେଲା ନାହିଁ । ସୁତରାଂ ସେଠାରେ ବସି ଥରିବାକୁ ଲାଗିଲି । ବିଶ୍ରାମ ଘରେ ଆଲୋକ ନଥିଲା । ଅର୍ଦ୍ଧ ରାତ୍ର ସମୟରେ ଜଣେ ଯାତ୍ରୀ ସେଠାକୁ ଆସିଲେ ଓ ମୋ ସହିତ କଥାବାର୍ତ୍ତା କରିବା ପାଇଁ ବୋଧହୁଏ ତାଙ୍କର ଇଚ୍ଛା ହେଲା । କିନ୍ତୁ ମୋର ସେତେବେଳେ ସେ କଥା ହେବାର ସମୟ ନୁହେଁ ।

କଣ କରିବାକୁ ହେବ ବୋଲି ଭାବିବାକୁ ଲାଗିଲି । ମୋର ଅଧିକାର ଲାଗି ଲଢିବି କି ଭାରତକୁ ଫେରିଯିବି, କିମ୍ବା ଅପମାନ ପ୍ରତି ଖାତିର ନକରି ପ୍ରିଟୋରିଆରେ ମକଦ୍ଦମାଟି ଶେଷ କରି ଭାରତକୁ ଫେରିବି, ଏହିପରି ନାନା ଭାବ ମନରେ ପ୍ରବେଶ କଲା । ଯାହା କରିବା ପାଇଁ ପ୍ରତିଶ୍ରୁତ ହୋଇଅଛି ତାହା ଶେଷ ନକରି ଭାରତକୁ ଫେରିଗଲେ ଦୁର୍ବଳତାର ପରିଚୟ ଦେବା କଥା ବୋଲି ମନେ କଲି । ମୁଁ ଯେଉଁ କଷ୍ଟ ସହିବାକୁ ପଡିଥିଲା ତାହା ଆଉ କିଛି ନୁହେ, ଜାତି-ଭେଦ-ଭାବର ଚିହ୍ନ କେବଳ । ତାହା ଦୂର କରିବା ପାଇଁ ଚେଷ୍ଟା କରୁ କରୁ ଯଦି ଦୁଃଖ ସହିବାକୁ ହୁଏ ତେବେ ତାହା ସହିବି ବୋଲି ମଧ୍ୟ ନିଶ୍ଚୟ କଲି ।

ଜାତି-ଭେଦ-ଭାବ ଦୂର କରିବା ପାଇଁ ଯେଉଁ ପ୍ରତିକାର ଦରକାର ତାହା ସବୁ ଖୋଜ ବୁଲିବ ବୋଲି ବନ୍ଧପରିକର ହେଲି । ସୁତରାଂ ଅନ୍ୟ ଏକ ଗାଡ଼ିରେ ପ୍ରିଟୋରିଆ ଯିବା ପାଇଁ ସ୍ଥିର କଲି ।

ଘଟଣାର ପରଦିନ ସକାଳୁ ରେଲ ବିଭାଗର ମାନେଜର ଜେନ-ରଲଙ୍କ ଠାକୁ ସମସ୍ତ ବିବରଣ ଦେଇ ଟେଲିଗ୍ରାମ କଲି ଓ ଅବଦୁଲ ସେଠଙ୍କ ଠାକୁ ମଧ୍ୟ ପତ୍ର ଲେଖିଲି । ସେ ହଠାତ ଯାଇ ମାନେଜର ଜେନ-ରଲଙ୍କ ସହିତ ଦେଖା କଲେ । ରେଲ-କର୍ମଚାରିଙ୍କ ବ୍ୟବହାରରେ କିଛି ଦୋଷ ନାହିଁ ବୋଲି ସେ କହିଲେ, କିନ୍ତୁ ମୁଁ ପ୍ରିଟୋରିଆରେ ଯେପରି ନିରାପଦରେ ପହଞ୍ଚେ ସେଥିପ୍ରତି ଦୃଷ୍ଟି ଦେବା ସକାଶେ ସେ ଜଙ୍କିବାର ଷ୍ଟେସନ କର୍ମଚାରିଙ୍କଠାକୁ ଲେଖିଛନ୍ତି ବୋଲି ଅବଦୁଲ ସେଠଙ୍କୁ କହିଲେ । ମେରିଟବାରଗରେ ଥିବା ସମସ୍ତ ଭାରତୀୟ ମହାଜନମାନଙ୍କଠାକୁ ଓ ଆଖ ପାଖ ବନ୍ଧୁମାନଙ୍କଠାକୁ ଅବଦୁଲ ସେଠ ଟେଲିଗ୍ରାମ ଦେଇଥିଲେ ଯେ ସେମାନେ ମୋ ସହିତ ମିଶିବେ ଓ ମୋର ସମସ୍ତ ସୁବିଧା କରିଦେବେ । ସୁତରାଂ ସେମାନେ ଷ୍ଟେସନଠାକୁ ଆସି ମୋତେ ସାନ୍ତ୍ୱନା ଦେଲେ । 'ସେମାନେ ଯାହା ଦୁଃଖ ଅନୁଭବ କରିଅଛନ୍ତି ସେ ତୁଳନାରେ ମୋର କଷ୍ଟ କିଛି ନୁହେ ଓ ଏହିପରି ଘଟଣା ମଧ୍ୟ ଅସ୍ୱାଭାବିକ ନୁହେ' ବୋଲି ସମସ୍ତେ କହିଲେ । ଭାରତୀୟମାନେ ଯଦି ପ୍ରଥମ କିମ୍ବା ଦ୍ୱିତୀୟ ଶ୍ରେଣୀ ଟିକେଟ ନେଇ ଯାତ୍ରା କରନ୍ତି, ତାହାହେଲେ ସେମାନେ ରେଲକର୍ମଚାରି ଓ ଗୋରା ଯାତ୍ରିମାନଙ୍କ ଠାରୁ କଟକଣା ସହିବାକୁ ପଡ଼ଥାଏ । ଦୁଃଖ କାହାଣୀ ଶୁଣି ଶୁଣି ଦିବା ଅବସାନ ହେଲା । ସନ୍ଧ୍ୟା ଗାଡ଼ି ଆସିଲା । ମୋ ସକାଶେ ଗୋଟିଏ ସ୍ଥାନ ପୂର୍ବରୁ ରଖା ଯାଇଥିଲା । ଦରବାନଠାରେ ଶୋଯ ସକାଶେ ଟିକଟ କରିବା ପାଇଁ ଅମଙ୍ଗ ହୋଇଥିଲି, କିନ୍ତୁ ମେରିଟ

ବାରଗ୍‌ଠାରେ ଶେଷ ଟିକଟ ଗୋଟିଏ କିଣିଲି । ସେହି ଗାଡ଼ିରେ ଚାର୍ଲସ୍ ଟାଉନ୍ ପର୍ଯ୍ୟନ୍ତ ଗଲି ।



# ନବମ ପରିଚ୍ଛେଦ ।

## ( ପୁଣି ଦୁର୍ଦ୍ଦଶା । )



ଚାର୍ଲସ୍—ଟାଉନ ଠାରେ ସକାଳେ ଗାଡ଼ି ଯାଇ ପହୁଞ୍ଚିଲା । ସେତେବେଳେ ଚାର୍ଲସ୍-ଟାଉନ ଓ ଜୋହାନସ୍‌ବାରଗ୍ ମଧ୍ୟରେ ରେଲ ପଥ ନଥାଏ । ଘୋଡ଼ା ଗାଡ଼ିରେ ଯିବା ଆସିବା କରିବାକୁ ପଡ଼େ । ଷ୍ଟାଣ୍ଡରଟନଠାରେ ଗୋଟିଏ ଗାଡ଼ି ଥିଲା । ସେଥିରେ ଯିବା ପାଇଁ ଟିକଟ ଖଣ୍ଡିଏ କିଣିଲି । ମେରିଟ୍‌ସବାରଗ ଠାରେ ଏକ ଦିନ ସକାଶେ ବିଶ୍ରାମ କଲେ ସୁଦ୍ଧା ପରଦିନ ଟିକଟ ଖଣ୍ଡି ଉପଯୋଗ କରି ପାରିଥିଲି । ଆଗରୁ ମୋ ପାଇଁ ସୁବ୍ୟବସ୍ଥା କରିବା ସକାଶେ ଚାର୍ଲସଟାଉନ ଗାଡ଼ି ପ୍ରତିନିଧିଙ୍କ ଠାକୁ ଅବଦୁଲ ସେଠ ମଧ୍ୟ ତାର ଦେଇଥିଲେ ।

ମୋତେ ଗାଡ଼ିରୁ ବାହାର କରିଦେବା ସକାଶେ ଗାଡ଼ି ପ୍ରତିନିଧି ଉପାୟ ଖୋଜୁଥାନ୍ତି । ସୁତରାଂ ମୁଁ ଜଣେ ନବାଗତ ବୋଲି ସେ ଯେତେବେଳେ ଜାଣିଲେ, କହିଲେ, "ତୁମର ଟିକଟ ଆଉ ମଞ୍ଜୁର କରାଯିବ ନାହିଁ ।" ମୁଁ ତାଙ୍କୁ ପ୍ରକୃତ ଉତ୍ତର ଦେଲି । ଗାଡ଼ି ଭିତରେ ସ୍ଥାନ ନଥିଲା ବୋଲି ଯେ ସେ ଏହିପରି କହିଥିଲେ ତାହା ନୁହେଁ, ତାର କାରଣ ଅନ୍ୟ ପ୍ରକାର । ଯାତ୍ରୀମାନେ ଗାଡ଼ି ଭିତରେ ବସିବା କଥା । କିନ୍ତୁ ମୁଁ ତ 'କୁଲି' ଶ୍ରେଣୀରେ ଲୋକ ଓ ଅପରିଚିତ ସୁତରାଂ ମୋତେ ଗୋରା ଯାତ୍ରି-

ମାନଙ୍କ ସହିତ ବସାଇବା ଅନୁଚିତ ବୋଲି ଗାଡ଼ି ଅଧ୍ୟକ୍ଷ ସାହେବ ମନେ-କଲେ । ଗାଡ଼ିର ଆଗରେ ଓ ପଛରେ ଅଳ୍ପ ସ୍ଥାନ ଥାଏ । ନିୟମାନୁସାରେ ଗାଡ଼ି ଅଧ୍ୟକ୍ଷ ଏଥିରୁ ଗୋଟିକରେ ବସିବା କଥା । ସେ ଭିତରେ ବସି ମୋତେ ତାଙ୍କ ସ୍ଥାନ ଦେଲେ । ତାହା ନିତାନ୍ତ ଅନ୍ୟାୟ ଓ ଘୋର ଅପମାନର କଥା ବୋଲି ଜାଣିଲି; କିନ୍ତୁ ନୀରବରେ ସବୁ ସହିବା ଉଚିତ ମନେ କଲି । ଜୋର ଜୁଲୁମ୍ କରି ଗାଡ଼ି ଭିତରକୁ ଯାଇ ପାରନ୍ତି ନାହିଁ । ଯଦି ଆପତ୍ତି କରିଥାନ୍ତି ତାହା ହେଲେ ମୋତେ ଛାଡି ଦେଇ ସେ ଗାଡ଼ି ନେଇ ଯାଆନ୍ତେ । ପରିଶେଷରେ ଆଉ ଗୋଟିଏ ଦିନ ବୃଥା ଯାଆନ୍ତା, ଓ ପରଦିନ ଯେ କି ଦଶା ଭୋଗନ୍ତି ଭଗବାନ କେବଳ ତାହା ଜାଣନ୍ତି । ସୁତରାଂ ମନେ ମନେ ବଡ଼ କ୍ରୁଦ୍ଧ ହେଲେ ସୁଦ୍ଧା ଗାଡି ବାହକ ପାଖରେ ଯାଇ ବସିଲି ।

ତିନି ଘଣ୍ଟା ପରେ ଗାଡ଼ି ଯାଇ ପାରଡ୍‌କୋପଠାରେ ପହୁଞ୍ଚିଲା । ମୁଁ ଯେଉଁ ସ୍ଥାନରେ ବସିଥିଲି ସେଠାରେ ବସିବା ପାଇଁ ଗାଡି ଅଧ୍ୟକ୍ଷ ଇଚ୍ଛା କଲେ । ଧୂମ୍ରପାନ ଓ ମୁକ୍ତବାୟୁ ସେବନ ଲାଗି କେବଳ ଏହି ପରିବର୍ତ୍ତନ । ସୁତରାଂ ସେ ଗାଡ଼ି ବାହକଠାରୁ ଖଣ୍ଡିଏ ମଇଳା କନା ମଗାଇ ତାହାର ଗୋଡ଼ତଳେ ଗୋଟିଏ ପଟା ଉପରେ ତାହା ପକାଇ ମୋତେ କହିଲେ, "ସାମି" ତୁମେ ଏଠାରେ ବସ, ମୁଁ ବାହକ ପାଖରେ ବସିବି ।" ଏ ଅପମାନଟା ମୋ ପକ୍ଷେ ଅସହ୍ୟ ହେଲା । ଭୟରେ ଥର ଥର ତାଙ୍କୁ କହିଲି, "ମୁଁ ଭିତରେ ବସିବା ପାଇଁ ମୋର ଅଧିକାର ଥିଲେହେଁ ଆପଣ ମୋତେ ଏଠାରେ ବସାଇଲେ, ସେ ଅପମାନ ସହ୍ୟ କଲି । ଆପଣ ଏବେ ବାହାରେ ବସି ଧୂମ୍ରପାନ କରିବା ପାଇଁ ଇଚ୍ଛା କରୁଛନ୍ତି; ସେହେତୁ ମୁଁ ଆପଣଙ୍କ ଗୋଡ଼ତଳେ ବସିବାକୁ କହୁଛନ୍ତି । ମୁଁ କଦାପି ତାହା କରିବି ନାହିଁ କିନ୍ତୁ ଭିତରେ ବସିବା ପାଇଁ ପ୍ରସ୍ତୁତ ଅଛି" ।

ମୁଁ ଏହିପରି କହୁ୨ ସେ ମାଡ଼ିକୁ ଆସି ମୋତେ ମାରିବାକୁ ଆରମ୍ଭ କଲେ । ମୋର ହାତଧରି ପଦାକୁ ଓଟାରିବା ମହାଜୋରେ ଚେଷ୍ଟା କଲେ । ମୁଁ ଗାଡ଼ିର ପିତଳ ଖାଡ଼ଗୁଡ଼ିକୁ ଭିଡ଼ି ଧରିଲି ଓ କଚିରି ହାଡ଼ ଭାଙ୍ଗି ଗଲେ ମଧ ଛାଡ଼ିବି ନାହିଁ ବୋଲି ପ୍ରତିଜ୍ଞା କଲି । ସେ ମୋତେ ବାଡ଼ିକୋ ଦେଖାଉଥାନ୍ତି, ଠେଲା ଓଟରି କରୁଥାନ୍ତି, କିନ୍ତୁ ମୁଁ ଅଟଳ ରହିଥାଏ; ଯାତ୍ରୀମାନେ ଏହି ଦୃଶ୍ୟ ଦେଖୁଥାନ୍ତି । ସେ ଲୋକ ବଳିଷ୍ଠ ମୁଁ କିନ୍ତୁ ବଡ଼ ଦୁର୍ବଳ । କେତେ ଜଣ ଯାତ୍ରୀ ମୋ ପ୍ରତି ଦୟା ବହି କହିଲେ, "ତାଙ୍କୁ ଛାଡ଼ିଦିଅ, ଆଉ ମାର ନାହିଁ । ତାଙ୍କର କିଛି ଦୋଷ ନାହିଁ । ସେ ଯାହା କହୁଛନ୍ତି ସବୁ ସତ । ଯଦି ସେଠାରେ ସେ ବସି ନପାରନ୍ତି ତାହାହେଲେ ଏଠାରେ ଆସି ଆମ ପାଖରେ ବସନ୍ତୁ" । 'କଦାପି ହେବନାହିଁ' ବୋଲି ସାହେବ ରଡ଼ି କଲେ, କିନ୍ତୁ ତାଙ୍କୁ ଅପମାନ ବୋଧ ହେଲା । ମୋତେ ଆଉ ମାଡ଼ ଦେଲେ ନାହିଁ । ମୋର ହାତ ଛାଡ଼ ଦେଲେ କିନ୍ତୁ ମୋତେ କେବଳ ଭୟ ଦେଖାଇବାକୁ ଲାଗିଲେ । ଜଣେ ଚାକର ଗାଡ଼ିର ପଛ ପଟରେ ବସିଥିଲା, ତାକୁ ଡାକି ଗାଡ଼ିବାଲାର ଗୋଡ଼ ତଳେ ବସାଇଲେ ଓ ନିଜେ ସେ ଚାକର ସ୍ଥାନରେ ବସିଲେ ।

ଯାତ୍ରୀମାନେ ଯେ ଯାହା ସ୍ଥାନରେ ବସିଲେ, ଗାଡ଼ି ଚାଲିଲା । ମୋର ବୁକ ଦାଉଁ ଦାଉଁ ହେଉଥାଏ । ଜୀବନ ଧରି ପ୍ରିଟୋରିଆରେ ପହଞ୍ଚି ପାରିବି କି ନାହିଁ ବୋଲି ଭାବୁଥାଏ । ସମୟ ସମୟରେ ସେ ମୋ ଆଡ଼କୁ କ୍ରୋଧରେ ଚାହୁଁଥାନ୍ତି ଓ ଆଙ୍ଗୁଠି ଦେଖାଇ କହନ୍ତି 'ସାବଧାନ, ମୁଁ ଷ୍ଟାଣ୍ଡରଟନକୁ ଯାଏ କ'ଣ କରିବି ଦେଖିବ' । ମୁଁ ତୁଣ୍ଡ ବୁଜି ବସି ଭଗବାନଙ୍କ ସାହାଯ୍ୟ ପାଇଁ ପ୍ରାର୍ଥନା କରୁଥାଏ ।

ରାତି ପାହିଲା ବେଳକୁ ଆମ୍ଭେ ଯାଇ ଷ୍ଟାଣ୍ଡରଟନ ଠାରେ ପହଞ୍ଚିଲୁଁ । ସେଠାରେ କେତେଜଣ ଭାରତୀୟ ଲୋକଙ୍କୁ ଦେଖି ମୁଁ ଦୀର୍ଘ

ନିଶ୍ୱାସ ଛାଡ଼ିଲି । ମୁଁ ଗାଡ଼ିରୁ ଓହ୍ଲାଇଲା ଷଣି ସେମାନେ କହିଲେ "ଆମେ ଆପଣଙ୍କୁ ଭେଟିବା ପାଇଁ ଏଠାକୁ ଆସିଛୁଁ । ଅବଦୁଲ ସେଠଙ୍କ ଠାରୁ ଆମେ ତାର ପାଇଥିଲୁ—ଆପଣ ବର୍ତ୍ତମାନ ଇସା ସେଠଙ୍କ ଦୋକାନକୁ ଯିବାକୁ ହେବ ।" ଏହା ଶୁଣି ମୁଁ ବଡ଼ ଆନନ୍ଦିତ ହେଲି ଓ ଆମ୍ଭେ ସମସ୍ତେ ଇସା ହାଜି ସୁମାରଙ୍କ ଦୋକାନକୁ ଗଲୁ । ମୋର ସବୁ ଅନୁଭୂତି ସମ୍ବନ୍ଧେ ସେମାନଙ୍କୁ କହିଲି । ତାହା ଶୁଣି ସେମାନେ ବଡ଼ ଦୁଃଖିତ ହେଲେ ଓ ନିଜ ନିଜର ଦୁର୍ଦ୍ଦଶା କାହାଣୀ କହି ମୋତେ ସାନ୍ତ୍ୱନା ଦେଲେ ।

ଗାଡ଼ି କମ୍ପାନିର ଏଜଣ୍ଟଙ୍କୁ ସମସ୍ତ ବିଷୟ କହିଦେବା ସକାଶେ ମୋର ଇଚ୍ଛା ହେଲା । ସୁତରାଂ ଯାହା ଘଟିଥିଲା ସେ ସବୁର ବିସ୍ତୃତ ବିବରଣ ଦେଇ ତାଙ୍କ ଠାକୁ ଖଣ୍ଡିଏ ପତ୍ର ଲେଖିଲି ଓ ସେ ମୋତେ ଯେ ଭୟ ଦେଖାଇ ଥିଲେ ସେ ସମ୍ବନ୍ଧେ ଏଜଣ୍ଟଙ୍କର ଦୃଷ୍ଟି ଅକର୍ଷଣ କରିଥିଲି; ଏବଂ ଆମ୍ଭେ ପରଦିନ ସକାଳୁ ଗଲାବେଳେ ଅନ୍ୟାନ୍ୟ ଯାତ୍ରିମାନଙ୍କ ସହିତ ଭିତରେ ବସିବା ସକାଶେ ମୋତେ ସ୍ଥାନ ଦେବାପାଇଁ ତାଙ୍କର ପ୍ରତିଶ୍ରୁତି ଲୋଡ଼ିଥିଲି । ନିମ୍ନ ମର୍ମରେ ଗାଡ଼ି କମ୍ପାନି ପ୍ରତିନିଧି ଗୋଟିଏ ଉତ୍ତର ଦେଲେ—"ଷ୍ଟାଣ୍ଡରଟନ ଠାରୁ ଆମର ଆଉ ଗୋଟିଏ ବଡ଼ ଗାଡ଼ିଯିବ, ଅନ୍ୟ ଜଣେ ତାର ପରିଚାଳକ । ଯେଉଁ ଲୋକ ବିଷୟ ନେଇ ଆପଣ ଆପତ୍ତି ଉଠାଇ ଅଛନ୍ତି, ସେଥିରେ ସେ ନଥିବେ ଓ ଆପଣ ଅନ୍ୟ ଯାତ୍ରି ମାନଙ୍କ ସହିତ ଭିତରେ ବସିବେ" । ଏହା ପଢ଼ି ମୋତେ ଟିକିଏ ଆଶ୍ୱାସ ଲାଗିଲା । ଯେଉଁ ଲୋକଟି ମୋତେ ମାଡ଼ ଦେଇଥିଲା ତା ବିପକ୍ଷରେ ଯିବା ମୋର ଉଦ୍ଦେଶ୍ୟ ନଥିଲା । ସୁତରାଂ ସେହି ମାଡ଼ ଓ ଅପମାନ କଥା କେବଳ ସେତିକରେ ରହିଲା । ସକାଳେ ମୋତେ ଇସା ସେଠଙ୍କ କର୍ମଚାରୀ ମାନେ ଗାଡ଼ିର ଗୋଟିଏ ଭଲ ସ୍ଥାନରେ ନେଇ ବସାଇ ଦେଲେ ଓ ମୁଁ ଜିହ୍ୱାନସବର୍ଗରେ ଯୋହାନସ୍‌ବାରଗ୍ ଠାରେ ରାତ୍ରିରେ ପହଞ୍ଚିଥିଲି ।

ଷ୍ଟାଣ୍ଡରଟନ ଗୋଟିଏ ଛୋଟ ପଲ୍ଲି, କିନ୍ତୁ ଯୋହାନସ୍‌ବାଗର୍ ଏକ ନଗର । ଅବଦୁଲ ସେଠ ଯୋହାନସ୍‌ବାଗଠାରୁ ମଧ ତାର ଦେଇଥିଲେ ଓ ମହମ୍ମଦ କାଶିମ୍ କାମରୁଦ୍ଦିନ କମ୍ପାନୀର ଠିକଣା ମଧ ମୋ ପାଖରେ ଥିଲା । ତାଙ୍କର ଲୋକ ଜଣେ ମୋତେ ଗାଡ଼ିଠାରେ ଭେଟିବା ପାଇଁ ଆସିଥିଲେ, କିନ୍ତୁ ମୁଁ ତାଙ୍କୁ ଦେଖିପାରିଲି ନାହିଁ କି ସେ ମଧ ମୋତେ ଚିହ୍ନି ପାରିଲେ ନାହିଁ । ସୁତରାଂ ଗୋଟିଏ ହୋଟେଲରେ ଯାଇ ରହିବା ଠିକ କଲି । ମୁଁ ଅନେକ ହୋଟେଲର ନାଆଁ ଜାଣିଥିଲି । ଗୋଟିଏ ଛୋଟ ଗାଡ଼ିରେ ବସି ଗ୍ରାଣ୍ଡ ନେସନାଲ ହୋଟେଲକୁ ନେବା ପାଇଁ ଗାଡ଼ିବାଲାକୁ କହିଲି । ମାନେଜରଙ୍କୁ ଦେଖି ଖଣ୍ଡିଏ ବଖରା ମାଗିଲି । ମୋତେ ସେ ଟିକିଏ ନିରୀକ୍ଷଣ କରି କହିଲେ, 'ବଡ଼ ଦୁଃଖର କଥା, ଅଛି ସ୍ଥାନ ନାହିଁ ।' ତାପରେ ମୁଁ ମହମ୍ମଦ କାଶୀମ କାମରୁଦ୍ଦିନଙ୍କ କମ୍ପାନୀକୁ ନେବା ସକାଶେ ଗାଡ଼ି ବାଲାକୁ କହିଲି । ଅବଦୁଲ ଗାନି ସେଠ ମୋତେ ସେଠାରେ ଅପେକ୍ଷା କରି ବସିଥିଲେ । ମୁଁ ଗଲା କ୍ଷଣି ସେ ସାଦର ସମ୍ଭାଷଣ କଲେ । ମୋର ହୋଟେଲ ଅନୁଭୂତି ଶୁଣି ସେ ଭାରି ହସିବାକୁ ଲାଗିଲେ ।

ଗାନି—"ହୋଟେଲରେ ସ୍ଥାନ ପାଇବେ ବୋଲି ଆପଣ କିପରି ଭାବିଥିଲେ ?"

ମୁଁ—'କାହିଁକି' ?

ଗାନି—"ଏଠାରେ କେତେଦିନ ରହିଲା ପରେ ଜାଣିବେ । ଏହିପରି ସ୍ଥାନରେ ଆମେମାନେ କେବଳ ରହି ପାରୁ । ଆମେତ ବେପାରି ଲୋକ, ଯାହା ଅପମାନ ହେଲେ ମଧ ସହି ଯାଇ ଥାଉଁ ବୋଲି ଏଠାରେ ରହିଅଛୁଁ ।" ଏହା କହି କହୁ ଦକ୍ଷିଣ ଆଫ୍ରିକାରେ ଭାରତୀୟ ଲୋକେ କପରି ଦୁର୍ଦ୍ଦଶା ଭୋଗୁଥାନ୍ତି ତାହା ସବୁ ସେ କହିଲେ ।

ସେଠ ଅବଦୁଲ ଗାନିଙ୍କ ସମ୍ବନ୍ଧେ କ୍ରମେ କ୍ରମେ ବେଶି କହିବି ।

ଗାନି—"ଏହି ଦେଶଟା ଆପଣଙ୍କ ଭଳିଆ ଲୋକଙ୍କ ପାଇଁ ନୁହେଁ । ଦେଖନ୍ତୁ ଆପଣ କାଲି ପ୍ରିଟୋରିଆ ଯିବାକୁ ହେବ । ତୃତୀୟ ଶ୍ରେଣୀ ଟିକଟ କରିବାକୁ ହେବ । ନେଟାଲ ଅପେକ୍ଷା ଟ୍ରାନ୍ସଭାଲର ଅବସ୍ଥା ନିତାନ୍ତ ମନ୍ଦ ! ଭାରତୀୟ ଲୋକଙ୍କୁ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ଟିକଟ ଆଦୌ ଦିଆ ଯାଇ ନଥାଏ" ।

ମୁଁ :—"ଆପଣମାନେ ବୋଧହୁଏ ସେ ସମ୍ପର୍କରେ ଲଢ଼ି ପାରି ନଥିବେ ।"

ଗାନି—"ଆମେ ଅନେକ ଆବେଦନ ପଠାଇଥିଲୁଁ, କିନ୍ତୁ ଆଉ ଗୋଟିଏ କଥା, ଆମର ଲୋକେ ମଧ୍ୟ ପ୍ରଥମ କିମ୍ବା ଦ୍ୱିତୀୟ ଶ୍ରେଣୀରେ ବସି ଯିବାକୁ ଇଚ୍ଛା କରନ୍ତି ନାହିଁ ।"

ରେଲ ବିଭାଗ ନିୟମାବଳୀ ମଗାଇ ତାହା ସବୁ ମୁଁ ପଢ଼ିଲି । ସେଥିରେ ଗୋଟିଏ ଭୁଲ ରହି ଯାଇଥିଲା । ଟ୍ରାନ୍ସଭାଲର ପୁରାତନ ଆଇନ ଭାଷା ବିଶୁଦ୍ଧ ନଥିଲା ଓ ସ୍ଥାନେ ସ୍ଥାନେ ପଦର ଅର୍ଥ ଭିନ୍ନ ଭିନ୍ନ ହୋଇଥାଏ । ରେଲ ବିଭାଗ ନିୟମାବଳୀର ଭାଷା ମଧ୍ୟ ତଦନୁରୂପ ।

ମୁଁ ସେଠଙ୍କୁ କହିଲି, "ପ୍ରଥମ ଶ୍ରେଣୀରେ ଯିବା ପାଇଁ ମୋର ଇଚ୍ଛା । ଯଦି ପ୍ରଥମ ଶ୍ରେଣୀ ଟିକଟ ନମିଳେ, ତାହାହେଲେ ପ୍ରିଟୋରିଆଠୁ ଏଠାରୁ ୩୭ ମାଇଲର ବାଟ, ଗୋଟିଏ ଗାଡ଼ି କରି ଯିବା ପାଇଁ ମୁଁ ମନେ କରେ ।" ସେପରି କଲେ ଅଧିକ ପଇସା ଓ ସମୟ ବ୍ୟୟ କରିବାକୁ ହେବ ବୋଲି ସେ କହିଲେ । କିନ୍ତୁ ମୁଁ ପ୍ରଥମ ଶ୍ରେଣୀରେ ଯିବା ପାଇଁ ସେ ସ୍ୱୀକାର କଲେ । ସୁତରାଂ ଷ୍ଟେସନ ମାଷ୍ଟରଙ୍କଠାରୁ ଖଣ୍ଡିଏ ଚିଠି ଲେଖିଲୁଁ । ମୁଁ ଜଣେ ବାରିଷ୍ଟର ଓ ସବୁବେଳେ ପ୍ରଥମ ଶ୍ରେଣୀରେ ଯିବା

ଆସିବା କରିଥାଏ ବୋଲି ସେ ଚିଠିରେ ଲେଖିଥିଲି । ଶୀଘ୍ର ମୁଁ ପ୍ରିଟୋରିଆରେ ପହଞ୍ଚିବାକୁ ହେବ; ତାଙ୍କର ଉତ୍ତର ଅପେକ୍ଷା କରିବା ପାଇଁ ସମୟ ଅଭାବ ଯୋଗୁଁ ତାଙ୍କୁ ଷ୍ଟେସନ ଠାରେ ଦେଖିବି ଓ ପ୍ରଥମ ଶ୍ରେଣୀର ଟିକଟ ଖଣ୍ଡିଏ ପାଇବା ଆଶା ରଖି ଷ୍ଟେସନକୁ ଯିବି ବୋଲି ମଧ୍ୟ ସେ ଚିଠିରେ ଲେଖିଥିଲି । ସାକ୍ଷାତରେ ମୋର ପତ୍ରର ଉତ୍ତର ଲୋଡ଼ିବା ଉଦ୍ଦେଶ୍ୟ ଥିଲା । ମୁଁ ଭାବିଲି ଯେ ଯଦି ସେ ଲେଖି କରି ଉତ୍ତର ଦିଅନ୍ତି ତାହାହେଲେ 'ନାହିଁ' ବୋଲି ଲେଖିବେ । ବିଶେଷତଃ ତାଙ୍କର "କୁଲି ବାରିଷ୍ଟର" ବୋଲି ହଠାତ୍ ଧାରଣା ହେବ । ସୁତରାଂ ମୁଁ ନିଷ୍ପତ୍ତି କଲି ଅବିକଳ ବିଲାତି ପୋଷାକ ପିନ୍ଧି ତାଙ୍କ ସହିତ ସାକ୍ଷାତ କରିବି ଏବଂ ଯଦି ସୁବିଧା ହୁଏ ପ୍ରଥମ ଶ୍ରେଣୀ ଟିକଟ ଖଣ୍ଡିଏ ଦେବା ପାଇଁ ଅନୁରୋଧ କରିବି । ସେହେତୁ ଗୋଟିଏ ଭଲ କୋଟ ଓ ଅନ୍ୟାନ୍ୟ ବିଲାତି ପୋଷାକ ପିନ୍ଧି ଷ୍ଟେସନକୁ ଗଲି । ଟିକଟ ଖରଚ ସକାଶେ ଗୋଟିଏ ସାଭରନ୍ ଦେଇ ପ୍ରଥମ ଶ୍ରେଣୀ ଟିକଟ ଖଣ୍ଡିଏ ମାଗିଲି ।

"ଆପଣ ମୋତେ ସେହି ପତ୍ର ଖଣ୍ଡି ଦେଇଥିଲେ" ? ବୋଲି ସେ ପ୍ରଶ୍ନ କଲେ ।

ମୁଁ—"ହଁ, ଯଦି ଆପଣ ଟିକଟ ଖଣ୍ଡିଏ ଦିଅନ୍ତି ତାହାହେଲେ ମୁଁ ବଡ଼ କୃତଜ୍ଞ ହୁଅନ୍ତି । ମୁଁ ପ୍ରିଟୋରିଆରେ ଆଜ ପହଞ୍ଚିବାକୁ ହେବ"।

ସେ ହସିଲେ ଓ ମୋ ପ୍ରତି ଦୟାପରବଶ ହୋଇ କହିଲେ;-"ମୁଁ ଟ୍ରାନ୍ସଭାଲର ଲୋକ ନୁହେ—ମୁଁ ଜଣେ ହଲେଣ୍ଡବାସୀ । ଆପଣଂକର ମନ କଥା ମୁଁ ବୁଝି ପାରୁଛି ଏବଂ ମୋର ଆପଣଂକ ପ୍ରତି ସହାନୁଭୂତି ଅଛି । ମୁଁ ଆପଣଂକୁ ଗୋଟିଏ ପ୍ରଥମ ଶ୍ରେଣୀ ଟିକଟ ଦେବି ସତ, କିନ୍ତୁ ଗୋଟିଏ କଥା—'ଗାର୍ଡ' ଯଦି ତୃତୀୟ ଶ୍ରେଣୀକୁ ଯିବା ପାଇଁ ଆପଣଂକୁ କହେ ତାହାଁ

ହେଲେ ମୋତେ ଆଉ ହଇରାଣ କରିବେ ନାହିଁ—ଅର୍ଥାତ୍ ରେଳ କର୍ମଚାରୀ ବାବୁମାନେ ଅଭିଯୋଗ କରିବେ ନାହିଁ । ଆପଣ କ୍ଷପର ସୁଖରେ ଯାଇ ପ୍ରିଟୋରିଆରେ ପହଞ୍ଚିବେ, ଏହି ମୋର ଇଚ୍ଛା । ମୁଁ ଦେଖୁଛି ଆପଣ ଜଣେ ଭଦ୍ର ଲୋକ" ।

ଏହା କହି ସେ ଟିକଟ ଖଣ୍ଡିଏ ଦେଲେ । ମୁଁ ତାଙ୍କୁ ଧନ୍ୟବାଦ ଦେଲି ଓ ତାଂକର ଅନୁରୋଧ ରକ୍ଷା କରିବି ବୋଲି କହିଲି ।

ସେଠ ଅବଦୁଲ ଗନି ମୋତେ ବିଦାୟ ଦେବା ପାଇଁ ଷ୍ଟେସନ-ଠାକୁ ଆସିଥିଲେ । ଘଟଣାଟି ଦେଖି ସେ ଆଶ୍ଚର୍ଯ୍ୟାନ୍ୱିତ ହେଲେ କିନ୍ତୁ ମୋତେ ସାବଧାନ କରାଇ ସେ କହିଲେ, "ଯଦି ଆପଣ ନିରାପଦରେ ପ୍ରିଟୋରିଆରେ ପହଞ୍ଚିବେ ତାହାହେଲେ ମୁଁ ସୁଖୀ ହେବି । ମୋର ଭୟ ହେଉଛି ପ୍ରଥମ ଶ୍ରେଣୀରେ ବସି ସୁଖରେ ଯିବା ପାଇଁ 'ଗାର୍ଡ' ଆପଣଂକୁ ଅନୁମତି ଦେବ ନାହିଁ ଏବଂ ଯଦି ସେ କିଛି ନକହେ, ଯାତ୍ରିମାନେହିଁ ଆପଣଂକୁ ନିଶ୍ଚୟ ହଇରାଣ କରିବେ ।

ପ୍ରଥମ ଶ୍ରେଣୀ ବଖରାରେ ମୁଁ ଯାଇ ବସିଲି, ଗାଡ଼ି ଗଲା । ଜରମିଷ୍ଟନ ଠାରେ ଟିକଟ ପରୀକ୍ଷା କରିବା ପାଇଁ ଗାର୍ଡ ଆସିଲା । ମୋତେ ସେଠାରେ ଦେଖି ସେ କ୍ରୁଦ୍ଧ ହେଲା ଓ ତୃତୀୟ ଶ୍ରେଣୀକୁ ଯିବା ସକାଶେ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲା । ମୁଁ ତାକୁ ପ୍ରଥମ ଶ୍ରେଣୀ ଟିକଟ ଖଣ୍ଡି ଦେଖାଇଲି । "ସେସବୁ କିଛି ନାହିଁ, ତୃତୀୟ ଶ୍ରେଣୀକୁ ଯିବାକୁ ହେବ" ବୋଲି ସେ ଧରି ବସିଲା ।

ସେ ବଖରାରେ ଜଣେ ମାତ୍ର ଇଂରେଜ ଯାତ୍ରୀ ବସିଥିଲେ । ଗାର୍ଡର ବ୍ୟବହାର ଦେଖି ସେ କ୍ରୁଦ୍ଧ ହୋଇ କହିଲେ, "କାହିଁକି ଆପଣ ତାଙ୍କୁ

ବ୍ୟବହାର କରୁଛନ୍ତି ? ତାଙ୍କଠାରେ ଯେ ପ୍ରଥମ ଶ୍ରେଣୀ ଟିକେଟ ଅଛି ତାହା କ'ଣ ଆପଣଙ୍କୁ ଦିଶୁ ନାହିଁ ? ତାଙ୍କ ସହିତ ବସିବା ପାଇଁ ମୋର ଲେଶମାତ୍ର ଆପତ୍ତି ନାହିଁ" — ତାପରେ ମୋ ଆଡ଼କୁ ଚାହିଁ କହିଲେ, "ଆପଣ ଏହିଠାରେ କେବଳ ସୁଖରେ ବସନ୍ତୁ ?"

"ଆପଣ ଯଦି ଜଣେ 'କୁଲି' ସହିତ ବସି ଯିବାକୁ ଇଚ୍ଛା କରୁଛନ୍ତି ତେବେ ମୋର ବା କ'ଣ ଯାଏ ?" କହି ଗାର୍ଡ ବାହାରି ଗଲା ।

ସନ୍ଧ୍ୟା ଆଠ ଘଣ୍ଟା ସମୟରେ ଗାଡି ଯାଇ ପ୍ରିଟୋରିଆରେ ପହଞ୍ଚିଲା ।



## ଦଶମ ପରିଚ୍ଛେଦ ।

( ପ୍ରିଟୋରିଆରେ ପ୍ରଥମ ଦିବ । )



ଦାଦା ଅବଦୁଲଙ୍କ ଓକୀଲ ତରଫରୁ କେହିହେଲେ ପ୍ରିଟୋରିଆ ଷ୍ଟେସନ ଠାକୁ ଆସିଥିବେ ବୋଲି ମୁଁ ଭାବିଥିଲି । କୌଣସି ଭାରତୀୟଙ୍କ ଘରେ ବସା କରି ରହିବି ନାହିଁ ବୋଲି ମୁଁ ତ ପୂର୍ବରୁ ନିଶ୍ଚୟ କରିଥିଲି । ସୁତରାଂ କେହି ଭାରତୀୟ ଲୋକ ମୋତେ ଭେଟିବା ପାଇଁ ଆସି ନଥିବେ ବୋଲି ମୁଁ ମନେ କରିଥିଲି । ତାଙ୍କ ଓକୀଲ କାହାକୁ ହେଲେ ପଠାଇ ନଥିଲେ । ମୁଁ ପରେ ବୁଝିଲି ଯେ ରବିବାର ଦିନ ସେଠାରେ ପହଞ୍ଚିଲି ବୋଲି ସେ କାହାକୁ ପଠାଇ ପାରି ନଥିଲେ । କୌଣସି ହୋଟେଲରେ ତ ମୋତେ ସ୍ଥାନ ମିଳିବା ଅସମ୍ଭବ—ସେହେତୁ ବଡ଼ ବ୍ୟସ୍ତ ହେଲି—କେଉଁଠାକୁ ଯିବି ଭାବି ପାରିଲି ନାହିଁ ।

୧୮୯୩ ସାଲରେ ପ୍ରିଟୋରିଆ ଷ୍ଟେସନର ଯେପରି ଅବସ୍ଥା ଥିଲା ୧୯୧୪ ସାଲ ପରକୁ ତାହା ସଂପୂର୍ଣ୍ଣ ବିପରୀତ । ଆଲୋକ ସବୁ ମିଲି ମିଲି ହୋଇ ଜଳୁ ଥାଏ । ଯାତ୍ରିମାନଙ୍କ ସଂଖ୍ୟା ଅତି ଅଳ୍ପ । ସବୁ ଯାତ୍ରିମାନେ ପଳାଇଲା ପର୍ଯ୍ୟନ୍ତ ମୁଁ ଅପେକ୍ଷା କଲି । ଟିକଟଗ୍ରାହୀ ଟିକଏ ଫୁରସତ୍ ପାଇଲା ପରେ ମୋର ଟିକଟ ଖଣ୍ଡି ତାଙ୍କୁ ଦେବି ଓ କୌଣସି ଗୋଟିଏ ସାମାନ୍ୟ ହୋଟେଲକୁ ମୋତେ ବାଟ ଦେଖାଇ ଦେବାପାଇଁ କହିବି, ସେ ଯଦି ସାହାଯ୍ୟ ନକରନ୍ତି ତାହାହେଲେ ରାତିଟା ଷ୍ଟେସନରେ ରହିବି ବୋଲି ଭାବିଲି । କିନ୍ତୁ ଅପମାନିତ ହେବା ଉପୁରେ ତାଙ୍କୁ ହଠାତ୍ ଏହା ମଧ୍ୟ ପଚାରି ପାରିଲି ନାହିଁ । ତାଙ୍କୁ କହିଲା ବେଳେ ଦେହ ଥରିଲା ।

ଷ୍ଟେସନରୁ ସବୁ ଯାତ୍ରିମାନେ ବାହାରି ଗଲେ । ଟିକଟଗ୍ରାହୀଙ୍କୁ ମୋର ଟିକଟ ଖଣ୍ଡି ଦେଇ ମୁଁ ତାଙ୍କୁ ଯାହା କହିବାକୁ ଭାବିଥିଲି ତାହା କହିଲି । ମୋତେ ସେ ଭଦ୍ରୋଚିତ ଭାବେ ଉତ୍ତର ଦେଲେ ସତ, କିନ୍ତୁ ତାଙ୍କ ଦ୍ୱାରା ମୋର ବେଶି କିଛି ସୁବିଧା ହେଲାପରି ମୁଁ ଦେଖି ପାରିଲି ନାହିଁ । କିନ୍ତୁ ଆମେରିକାର ଜଣେ ନିଗ୍ରୋ ମୋ ପାଖରେ ଛିଡ଼ା ହୋଇ-ଥିଲେ, ସେ କଥାବାର୍ତ୍ତା କରିବାକୁ ଲାଗିଲେ ।

ସେ—"ମୁଁ ଦେଖୁଛି ଆପଣ ଏଠାରେ ସଂପୂର୍ଣ୍ଣ ଅପରିଚିତ ଓ ଆପଣଙ୍କର କେହି ବନ୍ଧୁ ନାହାନ୍ତି । ଆପଣ ଯଦି ମୋ ସହିତ ଆସନ୍ତି ତାହା ହେଲେ ମୁଁ ଆପଣଂକୁ ଗୋଟିଏ ଛୋଟିଆ ହୋଟେଲକୁ ନେବି । ସେ ହୋଟେଲର ସ୍ୱତ୍ୱାଧିକାରୀ ଆମେରିକାର ଲୋକ । ମୁଁ ତାଙ୍କୁ ଭଲରୂପେ ଜାଣେ --ମୋର ବିଶ୍ୱାସ ସେ ଆପଣଂକୁ ହୋଟେଲରେ ଗ୍ରହଣ କରିବେ ।"

ତାଙ୍କର ଏହି ସ୍ୱତଃ ପ୍ରବୃତ୍ତ ସାହାଯ୍ୟ ଦାନ ଦେଖି ମୁଁ ସନ୍ଦେହ କଲି, କିନ୍ତୁ ତାଙ୍କୁ ଧନ୍ୟବାଦ ଦେଇ ପ୍ରସ୍ତାବଟି ଗ୍ରହଣ କଲି । ଜନ-

ଷ୍ଟୁନଙ୍କ ପରିବାର ହୋଟେଲକୁ ମୋତେ ଯେ ନେଲେ ଓ ଜନଷ୍ଟନଙ୍କୁ ଖଣ୍ଡେ ଦୂର ଡ଼ାକି ନେଇ ମୋ ସମ୍ବନ୍ଧେ ସବୁ କହିଲେ । ମୁଁ ଯଦି ମୋର କୋଠରୀ ଭିତରେ ବସି ଖାଇବାକୁ ସ୍ୱୀକାର କରେ ତାହାହେଲେ ସେ ରବିବାର ସକାଳେ ସେଠାରେ ମୋତେ ସ୍ଥାନ ଦେବେ ବୋଲି ଜନଷ୍ଟନ କହିଲେ ।

ଜନଷ୍ଟନ—"ମୁଁ ସତ କହୁଛି ମୋର କିଛି ଜାତି-ଭେଦ-ଭାବ ନାହିଁ । ମୋର ସବୁ ୟୁରୋପୀୟ ଢଙ୍ଗରେ ଚଳୁଛି । ଖାଇବା ଘରେ ଯଦି ସମସ୍ତଙ୍କ ସହିତ ଆପଣଂକ ପାଇଁ ବାଢ଼େ ତାହାହେଲେ ମୋର ଅନ୍ୟାନ୍ୟ ଅତିଥିମାନେ ଚିଡ଼ି ପାରନ୍ତି, ହୁଏତ ଏଠାରୁ ପଳାଇବା ମଧ୍ୟ ସମ୍ଭବ ।"

ମୁଁ—"ରାତିରେ ଶୋଇବା ପାଇଁ ସ୍ଥାନ ଟିକିଏ ଦେବା ଲାଗି ମଧ୍ୟ ମୁଁ ଆପଣଂକୁ ଧନ୍ୟବାଦ ଦେଉଛି । ଏଠାର ଅବସ୍ଥା ସମ୍ବନ୍ଧେ ମୁଁ ସାମାନ୍ୟ କିଛି ଜାଣି ସାରିଲିଣି—ସୁତରାଂ ଆପଣଂକର ଅସୁବିଧା କଥା ମୁଁ ବୁଝି ପାରୁଛି । ମୋର କୋଠରୀ ଭିତରେ ଖାଇବାକୁ ଦେଲେ ମୋର କିଛି ଆପତ୍ତି ନାହିଁ । କାଲିକି ମୁଁ ଅନ୍ୟ କୌଣସି ବ୍ୟବସ୍ଥା କରିବି ବୋଲି ମୋର ଭରସା ହେଉଛି ।"

ମୋ ପାଇଁ ଗୋଟିଏ କୋଠରୀ ଦେଖାଇ ଦେଲେ । ଏକାକୀ ସେଠାରେ ବସି ମୁଁ ନାନା କଥା ଭାବୁଥାଏ ଓ ଖାଇବାକୁ ଦେବେ ବୋଲି ଜଗି ବସିଥାଏ । ହୋଟେଲରେ ବେଶି ଅତିଥି ନଥିଲେ—ସେହେତୁ ଖାଦ୍ୟ ଜିନିସ ଧରି ଶୀଘ୍ର ଚାକର ଆସିବ ବୋଲି ମୋର ଧାରଣା, କିନ୍ତୁ ଚାକର ନଆସି ନିଜେ ଜନଷ୍ଟନ ଆସି କହିଲେ, "ଏହି କୋଠରୀରେ ଆପଣ ଖାଇବାକୁ ହେବ ବୋଲି କହି ମୁଁ ବଡ଼ ଲଜ୍ଜିତ ହୋଇଅଛି । ଆପଣଂକ ସହିତ ଏକାଠି ବସି ଭୋଜନ କଲେ ଆପତ୍ତି ଅଛି କି ବୋଲି

ଅନ୍ୟାନ୍ୟ ଅତିଥିମାନଙ୍କୁ ଯାଇ ପଚାରନ୍ତୁ । ସେମାନେ କିଛି ଆପତ୍ତି କଲେ ନାହିଁ । ଏପରିକି ଏଠାରେ ଆପଣ ଯେତେଦିନ ରହିଲେ ମଧ୍ୟ ସେମାନେ କିଛି କହିବେ ନାହିଁ । ଯେହେତୁ ଆପଣଙ୍କର ଯଦି କିଛି ଆପତ୍ତି ନଥାଏ ତାହାହେଲେ ଖାଇବା ଘରକୁ ଏବେ ଆସନ୍ତୁ ଓ ଯେତେଦିନ ଇଚ୍ଛା ସେତେ ଦିନ ଯାଏ ଏଠାରେ ରହନ୍ତୁ ।”

ମୁଁ ତାଙ୍କୁ ଅନ୍ତରର ସହିତ ଧନ୍ୟବାଦ ଦେଇ ଖାଇବା ଘରକୁ ଗଲି ଓ ପେଟ ପୂରାଇ ଖାଇଲି ।

ପରଦିନ ସକାଳୁ ଯାଇ ଅବଦୁଲ୍ଲ ସେଠଙ୍କ ଓକିଲ ମିଃ ଏ ଡ୍ରାଲ୍ଲୁ ବେକରଙ୍କ ଘରେ ପହୁଞ୍ଚିଲି । ଅବଦୁଲ୍ଲ ସେଠ ମୋତେ ପୂର୍ବରୁ ତାଙ୍କ ସମ୍ବନ୍ଧେ କହିଥିଲେ । ଯେହେତୁ ତାଙ୍କର ସାଦର ସମ୍ଭାଷଣ ଦେଖି ମୁଁ ଆଦୌ ଆଶ୍ଚର୍ଯ୍ୟାନ୍ୱିତ ହୋଇ ନଥିଲି । ସେ ମୋତେ ବଡ଼ ଆଦରରେ ଆହ୍ୱାନ କଲେ ଓ ଅନେକ ଘରୋଇ କଥା ପଚାରିବାକୁ ଲାଗିଲେ । ମୁଁ ସବୁ ତାଙ୍କୁ ବୁଝାଇ କହିଲି । ସବୁ ଶୁଣି ସାରି ସେ କହିଲେ, “ଆପଣ ବାରିଷ୍ଟର ରୂପେ କାର୍ଯ୍ୟ କରିବା ପାଇଁ ଏଠାରେ କିଛି ନାହିଁ—ଆମେ ଜଣେ ଭଲ ଓକିଲଙ୍କୁ ନିଯୁକ୍ତ କରି ସାରିଛୁ । ମକଦ୍ଦମାଟି ବଡ଼ ଜଟିଳ ଓ ବହୁ ସମୟ ସାପେକ୍ଷ । ଯେହେତୁ ମକଦ୍ଦମା ସମ୍ବନ୍ଧେ ଯାହା କିଛି ବୁଝା ବୁଝି କରିବାକୁ ଅଛି ସେଥିରେ କେବଳ ଆପଣ ସାହାଯ୍ୟ କରିବେ । ଆପଣଙ୍କ ଠାରୁ ସବୁ ଖବର ମୁଁ ପାଇବି ସୁତରାଂ ଅବଦୁଲ୍ଲ ସେଠଙ୍କ ଠାକୁ ଚିଠିପତ୍ର ଲେଖିବା ପାଇଁ ମଧ୍ୟ ପଡ଼ିବ ନାହିଁ । ଏଥିଦ୍ୱାରା ଅବଶ୍ୟ ବେଶି ଲାଭ ହେବ । ଆପଣଙ୍କ ସକାଶେ ମୁଁ ଅନୁରି ବସା ଠିକଣା କରିନାହିଁ । ଆପଣ ଆସିଲା ପରେ ତାର ଯୋଗାଡ଼ କରିବା ଉଚିତ ମନେ କରିଥିଲି । ଏଠାରେ ଜାତି-ଭେଦ-ଭାବ ବଡ଼ ଭୟଙ୍କର, ଯେହେତୁ ଆପଣଙ୍କ ସକାଶେ ବସା

ଠିକଣା କରିବା ସହଜ ନୁହେଁ । କିନ୍ତୁ ମୁଁ ଜଣେ ବୃଦ୍ଧା ବିଧବାଙ୍କୁ ଜାଣିଛି । ସେ ଜଣେ ଲୁଟି ବିକ୍ରେତାଙ୍କ ସ୍ତ୍ରୀ । ମୋର ବିଶ୍ୱାସ ସେ ଆପଣଙ୍କୁ ବସା ଦେବେ—ତାଙ୍କର ବଡ଼ ଗରିବ ଅବସ୍ଥା, ପଇସା ପତ୍ର କିଛି ମଧ୍ୟ ତାଙ୍କୁ ମିଳିବ । ଆସନ୍ତୁ ତେବେ ତାଙ୍କ ଘର ଠାକୁ ଯିବା ।"

ମୋତେ ସେ ତାଙ୍କ ଘରଠାକୁ ନେଲେ ଓ ମୋ ସମ୍ବନ୍ଧେ ତାଙ୍କୁ ଗୁପ୍ତରେ କହିବାରୁ ସାପ୍ତାହିକ ୩୫ ସିଲିଙ୍ଗ ନେଇ ମୋର ଖାଇବା ଓ ରହିବା ସୁବିଧା କରିବେ ବୋଲି ସେ ସ୍ୱୀକୃତା ହେଲେ ।

ମିଃ ବେକର ଜଣେ ସାମାନ୍ୟ ଓକିଲ; ଧର୍ମ ପ୍ରଚାରକ କାର୍ଯ୍ୟ ମଧ୍ୟ କରୁଥାନ୍ତି । ସେ ଅଦ୍ୟାପି ଜୀବିତ, ଓକିଲତି କାମ ଛାଡ଼ି ବର୍ତ୍ତମାନ କେବଳ ପ୍ରଚାରକ କାର୍ଯ୍ୟ କରନ୍ତି । ସେ ଭାରି ଧନୀ । ଏବେ ମଧ୍ୟ ମୋଠାକୁ ସେ ଚିଠି ପତ୍ର ଲେଖୁଛନ୍ତି । ପ୍ରତି ପତ୍ରରେ ସେ ଗୋଟିଏ କଥା ନେଇ ଲେଖନ୍ତି । ଅନେକ ଯୁକ୍ତି ତର୍କ କରି ସେ ଖ୍ରିଷ୍ଟଧର୍ମର ମହାତ୍ମ୍ୟ ପ୍ରକାଶ କରୁଅଛନ୍ତି । ତାଙ୍କର ଧାରଣା ଯେ, ଖ୍ରୀଷ୍ଟଙ୍କୁ ଯଦି ଈଶ୍ୱର ଅବତାର ଓ ଜଗତ ପରିତ୍ରାତା ବୋଲି ଜଣେ ନଧରିଛି, ତାହା ହେଲେ ତାର ମୁକ୍ତି ଅସମ୍ଭବ ।

ଆମ୍ଭେ ଦୁହେଁ ଯେଉଁ ଦିନ ପ୍ରଥମେ ମିଶିଲୁଁ, ଧର୍ମ ସମ୍ବନ୍ଧେ ମୋର କି ମତ ତାହା ସେ ପଚାରିଥିଲେ । ମୁଁ ତାଙ୍କୁ କହିଲି "ମୋର ଜନ୍ମ ହିନ୍ଦୁ ଧର୍ମରେ—ତଥାପି ହିନ୍ଦୁ ଧର୍ମ ସମ୍ବନ୍ଧେ ବେଶି କିଛି ଜାଣି ନାହିଁ ଓ ଅନ୍ୟ ଧର୍ମ ସମ୍ବନ୍ଧେ ତାହାଠାରୁ କମ ଜାଣିଛି । କେଉଁଠା କଣ ଓ ମୋର କେଉଁ ଧର୍ମରେ ବିଶ୍ୱାସ ରହିବା କଥା ମୁଁ ଏସବୁ କିଛି ଜାଣିନାହିଁ । ନିଜ ଧର୍ମ ଓ ଯେତେଦୂର ପାରେ ଅନ୍ୟାନ୍ୟ ଧର୍ମ ସମ୍ବନ୍ଧେ ପଢ଼ା ପଢି କରିବା ମୋର ଇଚ୍ଛା ।"

ଏସବୁ ଶୁଣି ସେ ବଡ ଆନନ୍ଦିତ ହୋଇ କହିଲେ, "ଦକ୍ଷିଣ ଆଫ୍ରିକା ସାଧାରଣ ପ୍ରଚାରକ ସଙ୍ଘର ମୁଁ ଜଣେ ଡିରେକ୍ଟର । ମୁଁ ନିଜ ଖରଚରେ ଗୋଟିଏ ଗିର୍ଜା ଖୋଲିଛି ଓ ନିୟମାନୁସାରେ ମୁଁ ସେଠାରେ ବକ୍ତୃତା ଦେଇଥାଏ । ମୋର ଗୋରା କଳା ବୋଲି କିଛି ଭେଦ-ଭାବ ନାହିଁ । ଏଠାରେ ମୋର କେତେ ସହକର୍ମୀ ଅଛନ୍ତି । ଜ୍ଞାନ ଓ ଶାନ୍ତି ଲାଭ ପାଇଁ ଆମେମାନେ ପ୍ରତିଦିନ ଏକ ଘଣ୍ଟା ବେଳେ ଏକତ୍ରିତ ହୋଇ କିଛି ସମୟ ଭଗବାନଙ୍କୁ ଉପାସନା କରୁଥାଉଁ । ଆପଣ ଯଦି ସେଥିରେ ଯୋଗ ଦିଅନ୍ତେ ତାହାହେଲେ ମୁଁ ବଡ଼ ଆନନ୍ଦିତ ହୁଅନ୍ତି । ମୋର ସହକର୍ମୀମାନଙ୍କ ସହିତ ଆପଣଙ୍କୁ ପରିଚିତ କରାଇ ଦେବି ଓ ମୋର ବିଶ୍ୱାସ ଆପଣ ସେମାନଙ୍କ ସହିତ ଭଲ ଭାବ ରଖିବେ । ମୁଁ ଆପଣଙ୍କୁ ଧର୍ମ ପୁସ୍ତକ ମଧ୍ୟ ପଢ଼ିବାକୁ ଦେବି । କିନ୍ତୁ ବାଇବଲ ପଢ଼ିବା ପାଇଁ ଆପଣଙ୍କୁ ମୋର ସ୍ୱତନ୍ତ୍ର ଅନୁରୋଧ ।"

ମିଃ ବେକରଙ୍କୁ ମୁଁ ଧନ୍ୟବାଦ ଦେଲି । ପ୍ରତିଦିନ ଏକ ଘଣ୍ଟା ବେଳେ ଉପାସନାରେ ଯୋଗ ଦେବା ପାଇଁ ପ୍ରତିଶ୍ରୁତ ହେଲି ।

"ତେବେ ଆପଣ କାଲି ଏକ ଘଣ୍ଟା ସମୟରେ ଏଠାକୁ ଆସିବେ, ଦୁହେଁ ମିଶି ଉପାସନା କରିବାକୁ ଯିବା" କହି ମୋତେ ସେ ବିଦାୟ ଦେଲେ ।

ବେକରଙ୍କ ପ୍ରସ୍ତାବ ନେଇ ସେତେବେଳେ ଭାବନା କରିବା ପାଇଁ ବିଶେଷ ସମୟ ନଥିଲା । ଜନଷ୍ଟନଙ୍କ ପାଖକୁ ଯାଇ ତାଙ୍କର ଯାହା ଦେୟ ଥିଲା ପରିଶୋଧ କରି ନୂତନ ବସାରେ ଆସି ଖାଇଲି । ମୁଁ ଯେଉଁ ସ୍ତ୍ରୀଙ୍କ ଘରେ ଥିଲି ସେ ବଡ଼ ସତ୍‌ସ୍ୱଭାବା । ମୋ ପାଇଁ ସେ ନିରାମିଷ ଭୋଜନର ଯୋଗାଡ କରିଥିଲେ । ମୁଁ ଅତି ଶୀଘ୍ର ଉକ୍ତ ପରିବାରଟିକୁ ନିଜ ଘରପରି ମଣିଲି ।

ଦାଦା ଅବଦୁଲ ତାଙ୍କର ଜଣେ ବନ୍ଧୁଙ୍କ ଠାକୁ ମୋ ହାତ୍ ଖଣ୍ଡିଏ ପତ୍ର ଦେଇଥିଲେ ଓ ତାଙ୍କ ସହିତ ଦେଖା କରିବା ପାଇଁ କହିଥିଲେ । ଦକ୍ଷିଣ ଆଫ୍ରିକାରେ ଭାରତୀୟ ମାନଙ୍କର ଦୁର୍ଦ୍ଦଶା ସମ୍ବନ୍ଧେ ତାଙ୍କଠାରୁ ବେଶି ଖବର ପାଇଲି । ତାଙ୍କ ସହିତ ରହିବା ପାଇଁ ସେ ଧରି ବସିଲେ । ତାଙ୍କୁ ଧନ୍ୟବାଦ ଦେଇ କହିଲି ଯେ, ମୁଁ ସବୁ ଯୋଗାଡ଼ କରି ସାରିଲିଣି । କିନ୍ତୁ ଯାହା ମୋର ଦରକାର ପଡ଼ିବ ତାହା ତାଙ୍କଠାରୁ ମଗାଇବା ପାଇଁ ଓ ସେଥି ସକାଶେ କିଛି ନ ଭାବିବା ପାଇଁ ସେ ମୋତେ କହିଲେ ।

ସନ୍ଧ୍ୟା ହେଲା, ଘରକୁ ଆସି ଖାଇଲି, ମୋର ବଖରାକୁ ଯାଇ ଗଭୀର ଚିନ୍ତା ମଗ୍ନ ହେଲି । ମୋ ସକାଶେ କିଛି ଜରୁର କାମ ନଥିଲା । ଅବଦୁଲ ସେଠଙ୍କ ଠାକୁ ସେ ସମ୍ବନ୍ଧେ ଲେଖିଲି । ମିଃ ବେକରଙ୍କ ବନ୍ଧୁତାର ଅର୍ଥ କଣ ହୋଇପାରେ ? ତାଙ୍କର ସହକର୍ମୀମାନଙ୍କ ଦ୍ୱାରା ବା ମୋର କି ଲାଭ ହେବ ? କେତେ ଦିନ ଯାଏ ଖ୍ରୀଷ୍ଟଧର୍ମ ପଢୁଥିବି ? ହିନ୍ଦୁଧର୍ମ ସମ୍ବନ୍ଧେ କିପରି ପୁସ୍ତକ ମିଳିବ ? ମୋର ନିଜ ଧର୍ମ ସମ୍ବନ୍ଧେ ସଂପୂର୍ଣ୍ଣ ଜ୍ଞାନ ଲାଭ ନକରି ଖ୍ରୀଷ୍ଟଧର୍ମର ପ୍ରକୃତ ମାହାତ୍ମ୍ୟ କିପରି ବା ବୁଝିପାରିବି ? ଏହିପରି ନାନା ପ୍ରଶ୍ନ ମନରେ ଖେଳିଲା । ପରିଶେଷରେ ଗୋଟିଏ ସିଦ୍ଧାନ୍ତ କଲି ଯେ, ଯାହା ପାଇବି ସେ ସବୁ ପଢ଼ିବି ଓ ଭଗବାନ ଯେପରି ମୋତେ ବାଟ ଦେଖାଇବେ ବେକର ଓ ତାଙ୍କ ଦଳ ସହିତ ବ୍ୟବହାର କରିବି । ନିଜ ଧର୍ମ ସମ୍ବନ୍ଧେ ପୂର୍ଣ୍ଣ ଜ୍ଞାନ ଲାଭ ନକରି ଅନ୍ୟ ଧର୍ମ ଗ୍ରହଣ କରିବା ପାଇଁ ଭାବିବା ଅନୁଚିତ ମନେ କଲି ।

ଏହିପରି ଭାବୁଁ ଭାବୁଁ ଶୋଇ ପଡ଼ିଲି ।



# ଏକାଦଶ ପରିଚ୍ଛେଦ ।

( ଖ୍ରିଷ୍ଟିୟାନ ସମ୍ବନ୍ଧ । )

———o———

ପରଦିନ ଅପରାହ୍ନ ଏକ ଘଣ୍ଟା ସମୟରେ ବେକରଙ୍କ ଉପାସନା ସମିତିରେ ମୁଁ ଯାଇ ଯୋଗଦେଲି । ସେଠାରେ କୁମାରୀ ହାରିସ୍, କୁମାରୀ ଗେବ୍, ମିଃ କୋଟସ୍ ଏବଂ ଆଉ କେତେ ଜଣ ଖ୍ରିଷ୍ଟିୟାନଙ୍କ ପରିଚୟ ପାଇଥିଲି । ସମସ୍ତେ ଆଣ୍ଠୁମାଡି ଉପାସନା କଲେ; ମୁଁ ମଧ୍ୟ ସେହିପରି କଲି । ଯେ ଯାହାର ଅଭିଲାଷ ସିଦ୍ଧ କରିବା ଉଦ୍ଦେଶ୍ୟ ରଖି ଉପାସନା ଦ୍ୱାରା ଭଗବାନଙ୍କ ଠାରେ ଗୁହାରି କରିଥାନ୍ତି । ଦିନଟି ସୁରୁ ଖୁରୁରେ କଟିଯାଏ । ମନେ ହୁଏ ଭଗବାନ ସତେ ଯେପରି ମନୁଷ୍ୟର ହୃଦୟ ଦ୍ୱାର ଫିଟାଇ ଦେଇଥାନ୍ତି ।

ନିମ୍ନଲିଖିତ ଅନ୍ୟ ଏକ ପ୍ରାର୍ଥନା ମୋର ମଙ୍ଗଳ ସାଧନ ଲାଗି ଉପାସନାରେ ମିଶିଲା । "ଭଗବାନ ! ଆମମାନଙ୍କ ସହବାସରେ ଯେଉଁ ନୂତନ ଭାଇ ଆସି ଅଛନ୍ତି, ତାଙ୍କୁ ସତ୍‌ମାର୍ଗ ଦେଖାଅ—ଆମ୍ଭମାନଙ୍କୁ ଯେଉଁ ଶାନ୍ତି ଦେଇଅଛ, ତାଙ୍କୁ ମଧ୍ୟ ସେହି ଶାନ୍ତିଦାନ କର, ପ୍ରଭୁ ! ଯେଉଁ ଭଗବାନ ଯିଶୁ ଆମ୍ଭମାନଙ୍କୁ ରକ୍ଷା କରି ଅଛନ୍ତି ତାଙ୍କୁ ମଧ୍ୟ ରକ୍ଷା କରନ୍ତୁ । ଏସବୁ ଆମ୍ଭେ ଯିଶୁଙ୍କ ନାମରେ ଭିକ୍ଷା କରୁଅଛୁ" । ଏହି ସମିତି ମାନଙ୍କରେ କୌଣସି ସ୍ତୁତି କିମ୍ବା ସଙ୍ଗୀତ ଗାନ ହେଉ ନଥାଏ । କୌଣସି ବିଶେଷ କଥା ପାଇଁ ପ୍ରତିଦିନ ଗୁହାରି କରି ସାରି ସଭା ଭଙ୍ଗ ହୋଇଥାଏ । ସେ ଉତ୍ତାରୁ ସମସ୍ତେ ଜଳଯୋଗ ପାଇଁ ବାହାରି ଯାଆନ୍ତି । ଉପାସନାଟି ୫ ମିନିଟରୁ ଅଧିକ ସମୟ ଲାଗି ନଥାଏ ।

କୁମାରୀ ହାରସ୍ ଓ କୁମାରୀ ଗେବ ଦୁହେଁ ବୟସ୍କାଧିକ ଭଦ୍ର ମହିଳା । ମିଷ୍ଟର କୋଟ୍ସ କ୍ୱାକର ଧର୍ମ-ସମ୍ପ୍ରଦାୟର ଜଣେ ସଦସ୍ୟ । ଦୁଇ ମହିଳା ଯାକ ଏକାଠି ଥାଆନ୍ତି । ପ୍ରତି ରବିବାର ଦିନ ସନ୍ଧ୍ୟା ଚାରି ଘଣ୍ଟାବେଳେ ତାଙ୍କ ଘରେ ଚା ପାନ କରିବା ପାଇଁ ମୋତେ ସେମାନଙ୍କର ଆମନ୍ତ୍ରଣ ଥାଏ ।

ଆମ୍ଭେମାନେ ଯେତେବେଳେ ରବିବାର ଦିନ ମିଶୁ, ସପ୍ତାହକ ମଧ୍ୟରେ ମୁଁ ମୋର ଧର୍ମ ସମ୍ବନ୍ଧ ଟିପା ଖାତାରେ ଯାହା ଲେଖିଥାଏ, ତାହା ମିଃ କୋଟସ୍‌ଙ୍କୁ ଦେଖାଉ ଥାଏ ଓ ମୁଁ ଯେଉଁ ସବୁ ବହି ଗୁଡ଼ିକ ପଢ଼ିଥାଏ ସେ ସମ୍ବନ୍ଧେ ମୋର ଅଭିମତ ଦେବାକୁ ଯାଇ ମୁଁ ତାଙ୍କ ସହିତ ତର୍କ ବିତର୍କ କରୁଥାଏ । ମହିଳା ଦୁହେଁ ସେମାନଙ୍କର ସୁଖକର ଅନୁଭୂତି ନେଇ ମୋତେ କହିଥାନ୍ତି ଓ ସେମାନେ କିପରି ଶାନ୍ତି ପୂର୍ଣ୍ଣ ଜୀବନ କଟାଉ ଅଛନ୍ତି ସେହି ବିଷୟରେ ଆମ୍ଭେମାନେ ଆଳାପ କରିଥାଉଁ ।

ମିଃ କୋଟ୍ସ ଜଣେ ସ୍ୱାଧୀନ ଚେତା ଓ ସରଳ ପ୍ରାଣ ଯୁବକ । ଆମ୍ଭେ ଦୁହେଁ ପ୍ରତିଦିନ ଏକାଠି ବୁଲିବାକୁ ଯାଇଥାଉଁ । ସେ ଆହୁରି ଅନେକ ଖ୍ରୀଷ୍ଟିୟାନ ବନ୍ଧୁଙ୍କ ପାଖକୁ ମୋତେ ନେଇ ଥାନ୍ତି ।

ଆମ୍ଭ ଦୁଇ ଜଣଙ୍କ ମଧ୍ୟରେ ଯେତେବେଳେ ଘନିଷ୍ଠ ସମ୍ପର୍କ ରହିଲା ସେ ନିଜେ ବାଛି ବାଛି ମୋତେ ବହି ପଢ଼ି ଦେବାକୁ ଆରମ୍ଭ କଲେ । ମୋର ପୁସ୍ତକ ଆଲମାରି ପୂର୍ଣ୍ଣ ହୋଇ ଆସିଲା । କିନ୍ତୁ ସେ ମୋ ଉପରେ ପୁସ୍ତକ ବୋଝ ଲଦି ଦେଉଛନ୍ତି ବୋଲି ମନେ କଲି । ସେହି ବହି ସବୁ ପଢ଼ିବି ବୋଲି ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କଲି । ମୁଁ ସେ ଗୁଡ଼ିକ ପଢ଼ୁ ପଢ଼ୁ ଆମ୍ଭେ ଦୁହେଁ ସେ ସମ୍ବନ୍ଧେ ସମାଲୋଚନା ମଧ୍ୟ କରିଥାଉଁ ।

ମୁଁ ୧୮୯୩ ସାଲରେ ଏହିପରି ଅନେକ ବହି ପଢ଼ିଲି । ସେ ସବୁର ନାଆଁ ମୁଁ ମନେ ରଖିପାରି ନାହିଁ, କିନ୍ତୁ ଟେମ୍ପଲ ନଗରସ୍ଥ

ଡ଼ାକ୍ତର ପାର୍କର କୃତ 'ଟୀକା' ପିଏରସନ କୃତ "ଅଭ୍ରାନ୍ତ ପ୍ରମାଣ" ଓ ବାଟଲରର କୃତ 'ସାଦୃଶ୍ୟ' ବହି ଗୁଡ଼ିକ ପଢ଼ିଥିଲି । କିନ୍ତୁ ସେଥିର ମୁଁ ଅନେକ ଅଂଶ ବୁଝି ପାରି ନଥିଲି । ସ୍ଥାନେ ସ୍ଥାନେ ମୋତେ ବଡ଼ ଭଲ ଲାଗେ କିନ୍ତୁ ସ୍ଥାନେ ସ୍ଥାନେ ଭଲ ଲାଗେ ନାହିଁ । 'ଅଭ୍ରାନ୍ତ ପ୍ରମାଣ' (Infallible Proofs) ବହିଟରେ ଲେଖକ ବାଇବଲ ଲିଖିତ ଧର୍ମ ସମର୍ଥନ କରି ଲେଖି ଅଛନ୍ତି । ତାହା ପଢ଼ି ମୋର କିଛି ଫଳ ହେଲା ନାହିଁ । ପାର୍କର କୃତ 'ଟୀକା' ବହିଟି ମନରେ ନୈତିକ ଭାବ ଜାଗରିତ କରାଇ ଥିଲା । କିନ୍ତୁ ଯେଉଁମାନଙ୍କର ଆଧୁନିକ ଖ୍ରିଷ୍ଟିୟାନ ଧର୍ମ ପ୍ରଣାଳୀରେ ବିଶ୍ୱାସ ନାହିଁ, ସେମାନଙ୍କୁ ଏ ବହିଟି କିଛି ସହାୟତା କରି ନପାରେ । ବାଟଲରଙ୍କର 'ସାଦୃଶ୍ୟ' ବହି ଖଣ୍ଡି ଗୂଢ଼ ଗବେଷଣା ସାପେକ୍ଷ ଓ ବଡ଼ କଠିନ ବୋଲି ମୋର ଧାରଣା ହୋଇଥିଲା । ତାହା ଭଲ ରୂପେ ବୁଝିବାକୁ ହେଲେ ୪ କିମ୍ବା ୫ ଥର ପଢ଼ିବାକୁ ହେବ । ମୁଁ ବୁଝିଲି ଯେ ନାସ୍ତିକମାନଙ୍କୁ ଆସ୍ତିକ କରିବା ଉଦ୍ଦେଶ୍ୟରେ ଉକ୍ତ ବହି ଖଣ୍ଡି ଲେଖା ଯାଇଅଛି । ଭଗବାନଙ୍କ ଅସ୍ତିତ୍ୱ ସମ୍ବନ୍ଧେ ସେଥିରେ ଯେଉଁ ସବୁ ତର୍କ ବିତର୍କ ହୋଇଅଛି ମୁଁ ସେ ସବୁ ପଢ଼ିବା ଆବଶ୍ୟକ ନଥିଲା । ମୁଁ ସେତେବେଳେ ଆଉ ନାସ୍ତିକ ନଥିଲି । କିନ୍ତୁ ଯିଶୁ ଭଗବାନଙ୍କ ଏକମାତ୍ର ଅବତାର ଓ ମନୁଷ୍ୟ ଓ ଭଗବାନଙ୍କ ମଧ୍ୟରେ ସମ୍ବନ୍ଧ ରକ୍ଷକ ବୋଲି ପ୍ରମାଣିତ କରିବା ପାଇଁ ବହିଟିରେ ଯେଉଁ ଯୁକ୍ତି ତର୍କ କରା ଯାଇଅଛି, ତାହା ମୋତେ କିଛି ବିଚଳିତ କରି ନଥିଲା ।

ମିଃ କୋଟ୍ସ ସହଜରେ ପରାଜୟ ସ୍ୱୀକାର କରିବା ବ୍ୟକ୍ତି ନଥିଲେ । ମୋ ପ୍ରତି ତାଙ୍କର ବଡ଼ ଆଦର । ମୋର ବେକରେ ତୁଳସୀ ମାଳ ଦେଖି ତାହା ଲଗାଇବା ଭ୍ରାନ୍ତଧାରଣାର ଚିହ୍ନ ବୋଲି ସେ ମନେ

କଲେ ଓ ତାଙ୍କ ମନରେ ବଡ଼ କଷ୍ଟ ଜାତ ହେଲା । ସେ କହିଲେ "ଆପଣଂକ ପକ୍ଷେ ଏହି ଅନ୍ଧ ବିଶ୍ୱାସ ସାଜେ ନାହିଁ, ଅସଲୁ ମୁଁ ଆପଣଂକ ମାଳଟା ଛିଣ୍ଡାଇ ଦିଏ ।"

ମୁଁ—"ନା, ଆପଣ ତାହା କରି ପାରିବେ ନାହିଁ । ମୋ ମାଆଙ୍କର ତାହା ପବିତ୍ର ଉପହାର" ।

ସେ—"କିନ୍ତୁ ଆପଣ କଣ ସେଥିରେ ବିଶ୍ୱାସ ରଖିଛନ୍ତି ?"

ମୁଁ—"ତାର ବିଶେଷତ୍ୱ ସମ୍ବନ୍ଧେ ମୁଁ କିଛି ଜାଣି ନାହିଁ । ମୁଁ ଯଦି ତାହା ନଲଗାଏ ତାହା ହେଲେ ମୋର କ୍ଷତି ହେବ ବୋଲି ମଧ୍ୟ ଭାବନା କରୁ ନାହିଁ; କିନ୍ତୁ ମା ଯେଉଁ ମାଳାଖଣ୍ଡି ସ୍ନେହର ଚିହ୍ନ ସ୍ୱରୂପ ଅଥଚ ମୋର ମଙ୍ଗଳ ସାଧନ ଉଦ୍ଦେଶ୍ୟରେ ମୋ ବେକରେ ଲମ୍ବାଇ ଦେଇ-ଅଛନ୍ତି, ଉପଯୁକ୍ତ କାରଣ ବିନା ମୁଁ ତାହା କାଢି ଦେଇ ନପାରେ । ଯଦି ତାହା ପୁରୁଣା ହୋଇ ପଡ଼ି ଓ ଆପେ ଛିଣ୍ଡି ଯାଏ, ତାହାହେଲେ ମୁଁ ଆଉ ନୂଆଟିଏ ଲଗାଇବା ପାଇଁ ଇଚ୍ଛା କରିବି ନାହିଁ । କିନ୍ତୁ ମୋର ଏହି ମାଳା ଖଣ୍ଡି ଛିଣ୍ଡାଇ ନପାରେ ।"

ମୋର ଧର୍ମ ପ୍ରତି କୋଟସଙ୍କର ଆଦର ନଥିଲା ବୋଲି ସେ ମୋର ଯୁକ୍ତି କୁ ପସନ୍ଦ କରି ନଥିଲେ । ଅଜ୍ଞାନରୂପ ଘୋର ଅନ୍ଧକାରରୁ ମୋତେ ରକ୍ଷା କରିବା ସକାଶେ ତାଙ୍କର ଇଚ୍ଛା ହୋଇ ମୋତେ ସେ ବୁଝାଇବାକୁ ଲାଗିଥାନ୍ତି । ଅନ୍ୟ ଧର୍ମରେ ସତ୍ୟ ଥିଲେ ମଧ୍ୟ ମୁଁ ଯଦି ଖ୍ରିଷ୍ଟଧର୍ମ ଗ୍ରହଣ ନକରେ, ତାହାହେଲେ ମୋର ମୁକ୍ତିଲାଭ ଅସମ୍ଭବ ଖ୍ରିଷ୍ଟଧର୍ମ କେବଳ ସତ୍ୟର ରୂପାନ୍ତର ମାତ୍ର । ଯିଶୁଙ୍କ ଲାଗି କେବଳ ମୋର ପାପ ସବୁ ବିଲୟ ହେବ, ଅନ୍ୟ କୌଣସି ମହତ କାର୍ଯ୍ୟ କରି କିଛି ଲାଭ ନାହିଁ ବୋଲି ସେ କହନ୍ତି ।

ମୋତେ ସେ ଯେପରି ଅନେକ ପୁସ୍ତକର ପରିଚୟ ଦେଇଥିଲେ, ସେହିପରି ଅନେକ ବଡ଼ ୨ ଖ୍ରିଷ୍ଟିୟାନ ବନ୍ଧୁମାନଙ୍କ ସହିତ ମଧ୍ୟ ଦେଖା କରାଇ ଥିଲେ । ମୁଁ ଯେଉଁ ସବୁ ବନ୍ଧୁ ପାଇଥିଲି, ସେମଧ୍ୟରୁ ପ୍ଲିମାଉଥ୍‌ର ଗୋଟିଏ ଖ୍ରିଷ୍ଟିୟାନ ପରିବାର ସହିତ ମୋର ବେଶି ସମ୍ପର୍କ ରହିଥିଲା ।

କୋଟସ୍‌ଙ୍କ ଲାଗି ମୁଁ ଯେଉଁ ସବୁ ବନ୍ଧୁ ସମ୍ବାଦ ଥିଲା ସେମାନେ ଅତି ଉତ୍ତମ ଧରଣର, ଅନେକଙ୍କର ଈଶ୍ୱର-ଭୀରୁ-ଭାବ ଦେଖି ମୁଁ ବିମୁଗ୍ଧ ହୋଇଥିଲି । ଏହି ପରିବାର ସମ୍ପର୍କରେ ଥିଲାବେଳେ ମୋ ସହିତ ଜଣେ ଖ୍ରିଷ୍ଟିୟାନ ଯେଉଁ ଯୁକ୍ତି ତର୍କ କରିଥିଲେ ତାଙ୍କୁ ପ୍ରକୃତ ଉତ୍ତର ଦେବା ପାଇଁ ମୁଁ ପ୍ରସ୍ତୁତ ହୋଇ ନଥିଲି ।

ସେ କହିଲେ—"ଆପଣ ଆମ ଧର୍ମର ମାଧୁର୍ଯ୍ୟ ବୁଝି ପାରିବେ ନାହିଁ । ଆପଣ ଯାହା କହୁଛନ୍ତି ସେଥିରୁ ଅନୁମିତ ହୁଏ ଯେ, ଜୀବନର ପ୍ରତି ମୁହୂର୍ତ୍ତରେ ନିଜକୃତ ପାପ ନେଇ ଆପଣଙ୍କୁ ଭାବିବାକୁ ହୁଏ, ସେ ସବୁର ପ୍ରତିକାର କରିବାକୁ ହୁଏ ଓ ଅନୁତପ୍ତ ହେବାକୁ ପଡ଼େ । ଏହିପରି ଅନବରତ କାର୍ଯ୍ୟ କିପରି ଆପଣଙ୍କୁ ମୁକ୍ତି ଦେବ ? ଆପଣ କେବେହେଲେ ଶାନ୍ତି ଲାଭ କରି ପାରିବେ ନାହିଁ । ଆମେମାନେ ସମସ୍ତ ପାପୀ ଆମେ କାହାକୁ ମୁକ୍ତ କହୁ ତାହା ବର୍ତ୍ତମାନ ଦେଖାଯାଉ । ଉନ୍ନତି ଓ ପାପ ମାର୍ଜନା ଲାଗି ଆମେ ଯେଉଁ ଚେଷ୍ଟା କରୁଁ ତାହା ସବୁ ବୃଥା । କିନ୍ତୁ ଆମେ ତ ମୁକ୍ତି ଲଭିବାକୁ ହେବ । ପାପର ବୋଝ ବା କିପରି ବହିହେବ ? ତାହା ଆମେ ଯିଶୁଙ୍କ ଠାରେ ସମର୍ପି ଦେଇ ଥାଉଁ । ସେ କେବଳ ଭଗବାନଙ୍କର ନିଷ୍ପାପୀ ସନ୍ତାନ । ତାଙ୍କର କଥାରେ ଓ ତାଙ୍କଠାରେ ଯେଉଁମାନଙ୍କର ବିଶ୍ୱାସ ସେମାନେ ଅଖଣ୍ଡ ଜୀବନ ଲାଭ କରି ପାରନ୍ତି । ସେହି ଠାରେ କେବଳ ଭଗବାନଙ୍କର ଅସୀମ କୃପାର ସ୍ଥିତି । ଯିଶୁଙ୍କ ଠାରେ ଆମର

ପାପ ସବୁ ସମର୍ପଣ କରି ଥାଉଁ ବୋଲି ତାହା ଆମକୁ ଆବଦ୍ଧ କରି ରଖି-ପାରେ ନାହିଁ । ତାଙ୍କ ପରି ଭାବେ ଏ ଜଗତରେ ରହିବା ଅସମ୍ଭବ । ସମସ୍ତଙ୍କ ଲାଗି ଯିଶୁ କଷ୍ଟ ଭୋଗିଥିଲେ ଓ ମନୁଷ୍ୟ ସମ୍ପ୍ରଦାୟର ପାପ ଲାଗି ଶାସ୍ତି ଭୋଗିଥିଲେ । ଯେଉଁ ତାଙ୍କର ଅଶ୍ରଦ୍ଧ ରକ୍ଷା କରେ ସେ ଅନବରତ ଶାନ୍ତି ଲାଭ କରେ । ଭାବି ଦେଖନ୍ତୁ ତ ଆପଣଙ୍କର ଜୀବନ କିପରି ଅସ୍ଥିର, କିନ୍ତୁ ଚିର ଶାନ୍ତି ଲାଭ କରିବା ପାଇଁ ଆମମାନଙ୍କ ପକ୍ଷେ କେତେ ଦୂର ସମ୍ଭବ ।"

ଏହି ଯୁକ୍ତି ମୋତେ ଆଦୌ ତୃପ୍ତିକର ବୋଧ ହେଲା ନାହିଁ । ମୁଁ ଧୀର ସ୍ଥିର ଭାବରେ କହିଲି "ଏହା ଯଦି ଖ୍ରିଷ୍ଟଧର୍ମ ଓ ସମସ୍ତ ଖ୍ରିଷ୍ଟିୟାନ ଅନୁମୋଦିତ, ତାହାହେଲେ ମୁଁ ତାହା କଦାପି ଗ୍ରହଣ କରି ନପାରେ । ମୁଁ ମୋର ପାପର ପରିଣାମରୁ ମୁକ୍ତିଲାଭ ଆଶା କରି ନପାରେ ମୁଁ ପାପରୁ ତଥା ପାପ କାର୍ଯ୍ୟର ଭାବନାରୁ ରକ୍ଷା ପାଇବା ଇଚ୍ଛା କରେ । ସେହି ଅବସ୍ଥାକୁ ଆସିବା ଯାଏ ମୁଁ ଅସ୍ଥିର ଜୀବନ ଯାପନ କରିବା ପାଇଁ ଦୁଃଖିତ ନୁହେଁ ।"

ସେ କହିଲେ—"ମୁଁ ଆପଣଙ୍କୁ ଶପଥ କରି କହୁଛି, ଆପଣଙ୍କର ଚେଷ୍ଟା ସବୁ ବିଫଳ । ମୁଁ ଯାହା କହୁଛି ସେ ସମ୍ବନ୍ଧେ ଆଉଥରେ ଭାବନା କରନ୍ତୁ ।"

ଉକ୍ତ ବନ୍ଧୁ ଯାହା କଥାରେ କହୁଥିଲେ ତାହା କାର୍ଯ୍ୟରେ ଦେଖାଇ ଥିଲେ । ସେ ସ୍ୱତଃ ପ୍ରବୃତ୍ତ ହୋଇ ପାପ କର୍ମ କଲେ ଏବଂ ମୋତେ ଦେଖାଇଲେ ଯେ ସେଥି ଲାଗି ସେ ଚିନ୍ତିତ କିମ୍ବା ବ୍ୟଥିତ ନୁହନ୍ତି ।

ଏହି ବନ୍ଧୁମାନଙ୍କ ସଂଶ୍ରବରେ ଆସିବା ପୂର୍ବରୁ ମୁଁ ଜାଣି ସାରି ଥିଲି ଯେ ସବୁ ଖ୍ରିଷ୍ଟିୟାନ ମାନେ ଏହିପରି ମୁକ୍ତିକୁ ବିଶ୍ୱାସ କରନ୍ତି ନାହିଁ ।

ମିଃ କୋଟସ୍ ବଡ ଧର୍ମଭୀରୁ ଥିଲେ । ତାଙ୍କର ହୃଦୟ ପବିତ୍ର ଥିଲା ଓ ଆତ୍ମ ପବିତ୍ରତା ଲାଭରେ ତାଙ୍କର ବିଶ୍ୱାସ ଥାଏ । ମହିଳା ଦୁଇ ଜଣଙ୍କର ମଧ ସେହିପରି ବିଶ୍ୱାସ । ମୁଁ ଯେଉଁ କେତୋଟି ବହି ପଢ଼ିଥିଲି ତାହା ସବୁ ଭକ୍ତିପୂର୍ଣ୍ଣ ଗ୍ରନ୍ଥ । ମିଃ କୋଟସ ମୋର ଏହି ଶେଷ ଅନୁଭୂତି ଲାଗି ବେଶି ବ୍ୟଥିତ ହେଲେ ହେଁ ମୁଁ ତାଙ୍କୁ କହି ଥିଲି ଯେ ପ୍ଲିମାଉଥର ଖ୍ରିଷ୍ଟିୟାନ ଭାଇ ଯେଉଁ ବିକୃତ ବିଶ୍ୱାସର ପରିଚୟ ଦେଇଥିଲେ, ତାହା ଶୁଣି ଖ୍ରିଷ୍ଟଧର୍ମ ପ୍ରତି ମୋର ବିରାଗ ଜନ୍ମି ନଥିଲା ।

ମୋର ଅସୁବିଧା ସବୁ ଅନ୍ୟଠାରେ ଲୁଣ୍ଠି । ବାଇବଲ ଓ ତାହାର ଗୃହିତ ଟୀକା ନେଇ ମୁଁ ବଡ଼ ବ୍ୟସ୍ତ ହୋଇଥାଏ ।



## ଦ୍ୱାଦଶ ପରିଚ୍ଛେଦ ।

( ଭାରତୀୟଙ୍କ ସମ୍ବନ୍ଧ । )



ଖ୍ରିଷ୍ଟିୟାନ ସମ୍ପର୍କ ସମ୍ବନ୍ଧେ ଆଉ ବେଶି ଲେଖିବା ପୂର୍ବରୁ ସେ ସମୟର କେତେ ଅନୁଭୂତି ଏଠାରେ ଦେବା ନିତାନ୍ତ ଦରକାର ମନେ କରେ ।

ନେଟାଲରେ ଦାଦା ଅବଦୁଲଙ୍କର ଯେପରି ଖ୍ୟାତି ପ୍ରିଟୋରିଆରେ ସେଠ୍ ତୟବ ହାଜି ଖାନ ମହମ୍ମଦଙ୍କର ମର୍ଯ୍ୟାଦା ମଧ ସେହିପରି । ତାଙ୍କର ସାହାଯ୍ୟ ବିନା କୌଣସି ଆନ୍ଦୋଳନ ପରିଚାଳିତ ହୋଇ ନପାରେ । ମୁଁ ତାଙ୍କ ସହିତ ପ୍ରଥମ ସପ୍ତାହର ମଧରେ ପରିଚିତ ହୋଇଗଲି

ଏବଂ ମୋର ଯେ ପ୍ରିଟୋରିଆସ୍ଥ ପ୍ରତ୍ୟେକ ଭାରତୀୟଙ୍କ ସହିତ ସମ୍ପର୍କ ରଖିବା ଉଦ୍ଦେଶ୍ୟ ଥିଲା ତାହା ତାଙ୍କୁ ବୁଝାଇ କହିଲି । ସେଠା ଭାରତୀୟ ମାନଙ୍କ ଅବସ୍ଥା ବୁଝିବା ଲାଗି ମୋର ବାସନା ଥିବା କଥା ତାଙ୍କୁ କହି ତାଙ୍କର ସାହାଯ୍ୟ ମାଗିଥିଲି । ସେ ମୋର କାର୍ଯ୍ୟରେ ଯଥା ସାଧ୍ୟ ସହାୟତା କରିବେ ବୋଲି ଆନନ୍ଦର ସହିତ କହିଥିଲେ ।

ପ୍ରଥମେ ପ୍ରିଟୋରିଆରେ ଥିବା ସବୁ ଭାରତୀୟମାନଙ୍କୁ ନେଇ ଗୋଟିଏ ସଭା କରି ଟ୍ରାନ୍ସଭାଲରେ ସେମାନେ କପରି ଭାବରେ ଅଛନ୍ତି ତାହା ବିସ୍ତୃତ ଭାବେ ବୁଝାଇବା ପାଇଁ ନିଶ୍ଚୟ କଲି । ସେଠ ହାଜି ମହମ୍ମଦ ଯୁସାବଙ୍କ ଘରେ ସଭାର ଆୟୋଜନ କରାଗଲା । ମୁଁ ତାଙ୍କଠାରୁ ଖଣ୍ଡିଏ ପରିଚୟ ପତ୍ର ନେଇଥିଲି । ସଭାରେ ବିଶେଷତଃ ମିମନ୍ ବଣିକମାନେ ଯୋଗ ଦେଇଥିଲେ—ହିନ୍ଦୁମାନଙ୍କ ଉପସ୍ଥିତି ଅତି ଅଳ୍ପ । ବାସ୍ତବିକ କହିବାକୁ ଗଲେ ପ୍ରିଟୋରିଆରେ ଭାରତୀୟମାନଙ୍କ ସଂଖ୍ୟା ବେଶି ନୁହେଁ ।

ମୁଁ ଉକ୍ତ ସଭାରେ ଯାହା କହିଥିଲି ତାହା ମୋ ଜୀବନର ପ୍ରଥମ ପ୍ରକାଶ୍ୟ ବକ୍ତୃତା କହିଲେ ଚଳେ । ଯେଉଁ ବିଷୟରେ କହିବା ତଥା ସେ ସମ୍ବନ୍ଧେ ମୁଁ ଆଗରୁ ଯୋଗାଡ କରି ଯାଇଥିଲି । ବ୍ୟବହାରରେ ସତ୍ୟନିଷ୍ଠ ହେବା ଲାଗି ସଭାରେ କହିଥିଲି । ମୁଁ ଅନେକ ସମୟରେ ବଣିକମାନଙ୍କଠାରୁ ଶୁଣିଥାଏ ଯେ ବ୍ୟବହାରରେ ସତ୍ୟରକ୍ଷା କରିବା ଅସମ୍ଭବ । ମୁଁ ସେତେବେଳେ ତାହା ପସନ୍ଦ କରି ନଥିଲି ଏବଂ ଏବେ ମଧ୍ୟ ସେଥିରେ ମୋର ବିଶ୍ୱାସ ନାହିଁ । ଆଜି କାଲି ଅନେକ ବେପାରି ଅଛନ୍ତି, ବ୍ୟବହାରରେ ସତ୍ୟନିଷ୍ଠ ହେବା ଅସମ୍ଭବ ବୋଲି ସେମାନେ ମନେ କରନ୍ତି । ସେମାନେ କହନ୍ତି ବ୍ୟବହାରଟା ସାଧାରଣ ସାଧ କଥା; ଆଉ ସତ୍ୟ ଧର୍ମ ସମ୍ବନ୍ଧ ବିଷୟ । ସେମାନେ ଯୁକ୍ତି କରି କହନ୍ତି ଯେ

ବ୍ୟବହାରିକ ବିଷୟ ଓ ଧର୍ମ ସମ୍ପର୍କୀୟ ବିଷୟ ଦୁଇଟି ଭିନ୍ନ ଧରଣର । ସେମାନଙ୍କର ଧାରଣା ଯେ କଠୋର ସତ୍ୟ ପାଳନ ବ୍ୟବହାରର ଅନ୍ତର୍ଭୁକ୍ତ ନୁହେଁ । ସୁବିଧା ଅନୁଯାୟୀ ବେଳେ ବେଳେ ଜଣେ ସତ୍ୟ ରକ୍ଷା କରି ପାରେ । ମୁଁ ଏହି ଧାରଣା ବିପକ୍ଷରେ ମୋର ବକ୍ତୃତାରେ କହି ସେମାନେ କିପରି ଦୁଇ ଦିଗରେ ନିଜ ନିଜର କର୍ମ ସାଧନ କରିପାରନ୍ତି ତାହା ତାଙ୍କୁ ବୁଝାଇ ଦେଇଥିଲି । ବିଦେଶରେ ରହି ସତ୍ୟନିଷ୍ଠ ହେବା ସେମାନଙ୍କର ପ୍ରଧାନ ଦାୟିତ୍ୱ । ସାମାନ୍ୟ କେତେ ଭାରତବାସୀଙ୍କର ବ୍ୟବହାର ଅସଂଖ୍ୟ ଭାରତବାସୀଙ୍କ ଆଚରଣ ବ୍ୟବହାରର ମାପ କାଠି ବୋଲି ବିବେଚିତ ହେବା ଉଚିତ ନୁହେଁ ।

ମୁଁ ଦେଖିଲି ଯେ ଆଖ ପାଖ ଇଂରେଜ ଲୋକମାନଙ୍କ ବ୍ୟବହାର ଓ ଅଭ୍ୟାସ ତୁଳନାରେ ଆମ୍ଭ ଭାରତବାସୀଙ୍କର ଅଭ୍ୟାସ ବଡ ଅସ୍ୱାସ୍ଥ୍ୟକର । ଏ ସମ୍ବନ୍ଧେ ସେମାନଙ୍କର ଦୃଷ୍ଟି ଆକର୍ଷଣ କଲି । ହିନ୍ଦୁ, ମୁସଲମାନ, ପାର୍ଶି, ଖ୍ରିଷ୍ଟିୟାନ ଗୁଜରାଟୀ, ମାନ୍ଦ୍ରାଜୀ, ପଞ୍ଜାବୀ ଇତ୍ୟାଦି ଜାତି ନେଇ ଯେ ଭେଦାଭେଦ ଭାବ ଥାଏ ତାହା ସେମାନେ ଶୀଘ୍ର ଦୂର କରିବା ପାଇଁ ମୁଁ ବେଶି କହିଥିଲି ।

ମୋର ବକ୍ତବ୍ୟ ପରିଶେଷରେ ଗୋଟିଏ ସମିତି ରଖିବା ପାଇଁ ପ୍ରସ୍ତାବ କଲି । ଉକ୍ତ ସମିତି ଦ୍ୱାରା କର୍ତ୍ତୃପକ୍ଷଙ୍କୁ ଭାରତୀୟ ଅଧିବାସୀମାନଙ୍କ ଦୁରବସ୍ଥା ସମ୍ବନ୍ଧେ ଆବେଦନ ପତ୍ର ଦେବା ମୋର ଉଦ୍ଦେଶ୍ୟ ଥିଲା । ସମୟ ଓ ସୁବିଧା ଅନୁସାରେ ମୁଁ ଯେତେଦୂର ପାରେ ସମିତି ଲାଗି କାର୍ଯ୍ୟ କରିବି ବୋଲି ସ୍ୱୀକାର କରିଥିଲି । ମୁଁ ଦେଖିଲି ମୋର ବକ୍ତୃତା ଶୁଣି ଲୋକେ ତାହା ପସନ୍ଦ କରିଥିଲେ ।

ମୋର ବକ୍ତବ୍ୟ ପରେ ସମାଲୋଚନା ଲାଗିଲା । କେହି କେହି

ସ୍ୱତଃପ୍ରବୃତ୍ତ ହୋଇ ମୋତେ ଆବଶ୍ୟକୀୟ ବିଷୟ ଯୋଗାଇବା ପାଇଁ ପ୍ରସ୍ତୁତ ହେଲେ । ମୋର ଉତ୍ସାହ ଜନ୍ମିଲା । ମୁଁ ଦେଖିଲି ଯେ ମୁଁ କହିଲାବେଳେ ମୋର ଶ୍ରୋତାମାନଙ୍କ ମଧ୍ୟରୁ ଅତି ଅଳ୍ପ ମାତ୍ର ଇଂରେଜୀ ଭାଷା ଜାଣିଥିଲେ । ସେଠାରେ ଆମ୍ଭ ଲୋକେ ଇଁରେଜ ଭାଷା ଜାଣିଲେ ଉପକୃତ ହେବେ ବୋଲି ମୁଁ ଅନୁଭବ କଲି । ସୁତରାଂ ଯେଉଁମାନେ ସମୟ ପାଆନ୍ତି ସେମାନେ ଇଁରେଜ ଶିଖିବା ପାଇଁ ତାଙ୍କୁ ଉପଦେଶ ଦେଲି । ବୟସ୍ଥାଧିକ ଲୋକ ମଧ୍ୟ ନୂତନରେ ଗୋଟିଏ ଭାଷା ଶିକ୍ଷା କରିବା ଅସମ୍ଭବ ନୁହେ ବୋଲି ତାଙ୍କୁ ବୁଝାଇ ଦେଇଥିଲି । ଏବଂ ବୃଦ୍ଧବୟସରେ ସୁଦ୍ଧା କେତେ ଜଣ ଯେ ସେହିପରି ଶିକ୍ଷା ଲାଭ କରିଅଛନ୍ତି ତାହାର ଦୃଷ୍ଟାନ୍ତ ଦେଇଥିଲି । ଯଦି କୌଣସି ସ୍କୁଲ ସ୍ଥାପନ କରିବା ବ୍ୟବସ୍ଥା କରାଯାଏ ତାହାହେଲେ ମୁଁ ନିଜେ ଗୋଟିଏ ଶ୍ରେଣୀର ଶିକ୍ଷକତା କରିବି ବୋଲି କହିଲି । ତାହା ଯଦି ନହୁଏ ଯେଉଁମାନେ ଶିକ୍ଷା ଲାଭ କରିବା ପାଇଁ ଇଚ୍ଛା କରନ୍ତି ସେମାନଙ୍କୁ ପଢ଼ାଇବି ବୋଲି ପ୍ରତିଶ୍ରୁତ ହେଲି ।

ସ୍କୁଲ ରଖିବା ବ୍ୟବସ୍ଥା କରାଯାଇ ପାରିଲା ନାହିଁ । କିନ୍ତୁ ସୁବିଧା ଅନୁସାରେ ପଢ଼ାପଢ଼ି କରିବେ ବୋଲି ତିନିଜଣ ଯୁବକ ଆଗ୍ରହ ଦେଖାଇ ଥିଲେ । ସେହେତୁ ସେମାନଂଙ୍କୁ ପଢାଇବା ସକାଶେ ସେମାନଙ୍କର ଘରକୁ ଯିବାକୁ ଲାଗିଲି । ଏ ତିନିଜଣ ମଧ୍ୟରୁ ଦୁଇଜଣ ମୁସଲମାନ—ଜଣେ ଭଣ୍ଡାରୀ ଓ ଅନ୍ୟଜଣକ କରାଣୀ ଏବଂ ତୃତୀୟ ଜଣକ ହିନ୍ଦୁ—ସାମାନ୍ୟ ଦୋକାନବାଲା । ସମସ୍ତଙ୍କ ସହିତ ମିଳାମିଶି ମୁଁ ପଢ଼ାଇବି ବୋଲି ସ୍ୱୀକାର କଲି । ପଢାଇବା ପାଇଁ ମୁଁ ଯେ ସକ୍ଷମ ଥିଲି ସେଥିରେ ସନ୍ଦେହ ନଥିଲା । ମୋର ଛାତ୍ରମାନେ ବିରକ୍ତ ହୋଇ ଥକି ଯାଇ ପାରନ୍ତି କିନ୍ତୁ ମୁଁ ତ ବିରକ୍ତ ହେବାର ନୁହେ । ଅନେକ ସମୟରେ ମୁଁ ସେମାନଙ୍କ ଘରଠାକୁ

ପାରି ଦେଖେ ଯେ ସେମାନେ ନିଜ ନିଜ କାର୍ଯ୍ୟରେ ନିଯୁକ୍ତ ଥାଆନ୍ତି । ମୁଁ ତାନ୍ତ୍ର ଅସହନ୍ତୁଷ୍ଟ ହୋଇନଥାଏ । ତିନି ଜଣଙ୍କ ମଧ୍ୟରୁ କେହିହେଲେ ଇଂରେଜ ଭାଷାରେ ବିଶେଷ ପ୍ରବେଶ ଲାଭ କରିବା ପାଇଁ ଇଚ୍ଛୁକ ନଥିଲେ । କିନ୍ତୁ ଆଠ ମାସ ମଧ୍ୟରେ ଦୁଇଜଣ ଅନେକ ବିଷୟ ଶିଖି ପାରିଥିଲେ ବୋଲି କୁହାଯାଇ ପାରେ । ସେ ଦୁହେଁ ଇଂରେଜରେ ହିସାବ ପତ୍ର ଓ ବ୍ୟବହାର ପତ୍ର ଲେଖିବା ପାଇଁ ଯଥେଷ୍ଟ ଶିକ୍ଷା ପାଇଥିଲେ । କ୍ଷୌର କଲାବେଳେ ଯାହା କିଛି କଥାବାର୍ତ୍ତା କରିବାକୁ ହୁଏ ସେଥି ଲାଗି ଯେତିକି ଇଂରେଜ ଶିକ୍ଷା କରିବା ଦରକାର ଭଣ୍ଡାରୀ ଜଣକ ସେତିକି ଶିଖିଥିଲା । ଏହି ପଢ଼ାର ଫଳରେ ତିନି ଜଣଙ୍କ ମଧ୍ୟରୁ ଦୁଇଜଣ ବେଶି ରୋଜଗାର କରିବା ପାଇଁ ସମର୍ଥ ହୋଇ ପାରିଥିଲେ ।

ସଭାର ଫଳ ଦେଖି ମୁଁ ପରିତୃପ୍ତ ହେଲି । ମୋର ଯେତେଦୂର ମନେ ଅଛି ଆମ୍ଭେ ନିଶ୍ଚୟ କଲୁଁ ଯେ ସପ୍ତାହକୁ କିମ୍ବା ମାସକୁ ଏହିପରି ସଭାର ଆୟୋଜନ କରିବୁଁ । ନିୟମାନୁସାରେ ଉକ୍ତ ସଭାର ଯୋଗାଡ ହୋଇଥାଏ ଓ ସେଥିରେ ପରସ୍ପର ମଧ୍ୟରେ ଭାବର ଆଦାନ ପ୍ରଦାନ କରା ଯାଇ ଥାଏ । ଏସବୁର ଫଳରେ ମୁଁ ସମସ୍ତଙ୍କ ସହିତ ପରିଚିତ ହୋଇ ପାରିଥିଲି । ଏବେ ମଧ୍ୟ ପ୍ରିଟୋରିଆରେ ଏପରି କେହି ଜଣେ ଭାରତୀୟ ନାହାନ୍ତି ଯେକି ମୋର ଅପରିଚିତ କିମ୍ବା ଯାହାଙ୍କ ସମ୍ବନ୍ଧେ ମୁଁ କିଛି ଜାଣି ନାହିଁ । ଏହାର ଫଳରେ ମୁଁ ପ୍ରିଟୋରିଆସ୍ଥ ବ୍ରିଟିଶ ପ୍ରତିନିଧିଙ୍କ ସହିତ ପରିଚୟ ଲାଭ କରିବା ପାଇଁ ଉତ୍ସାହିତ ହେଲି । ମିଃ ଯେକୋବସ୍ ଡ଼ ୱେଟ ସେତେବେଳେ ପ୍ରତିନିଧି କାମ କରୁଥିଲେ । ତାଙ୍କର ଭାରତୀୟ-ମାନଙ୍କ ପ୍ରତି ବଡ଼ ଦୟା; କିନ୍ତୁ ତାଙ୍କ କ୍ଷମତା ବେଶି ନୁହେ । ଯାହାହେଉ ନିଜ ଶକ୍ତି ଅନୁସାରେ ଆମ୍ଭମାନଙ୍କୁ ସାହାଯ୍ୟ କରିବେ ବୋଲି ସେ ପ୍ରତିଶ୍ରୁତି

ହେଲେ ଓ ମୋର ଯେତେବେଳେ ଆବଶ୍ୟକ ହୁଏ ତାଙ୍କୁ ଦେଖା କରିବ ପାଇଁ କହିଥିଲେ ।

ମୁଁ ରେଲ ବିଭାଗ କର୍ତ୍ତୃପକ୍ଷଙ୍କ ନିକଟକୁ ଆବେଦନ ପତ୍ର ଦ୍ୱାରା ବୁଝାଇ ଦେଇଥିଲି ଯେ ଗାଡିରେ ଯାତାୟାତ କରିବା ପାଇଁ ଭାରତୀୟ ମାନେ ରେଲ ବିଭାଗୀୟ ନିୟମାନୁସାରେ ଯେପରି କଷ୍ଟ ଭୋଗୁ ଅଛନ୍ତି ତାହା ଯୁକ୍ତିଯୁକ୍ତ ନୁହେ । ଉତ୍ତରରେ ମୁଁ ପାଇଥିଲି ଯଦି ଭାରତୀୟ-ମାନେ ଉପଯୁକ୍ତ ପୋଷାକ ପିନ୍ଧିଥାନ୍ତି ତାହାହେଲେ ସେମାନେ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ଟିକଟ ପାଇ ପାରିବେ । ଏହା କିନ୍ତୁ ଦୁଃଖ ଉପଶମର ପ୍ରକୃତ ପନ୍ଥା ନୁହେ । କିଏ ଯେ 'ଉପଯୁକ୍ତ ପୋଷାକଧାରୀ' ତାହା ଷ୍ଟେସନ ମାଷ୍ଟର ନିଶ୍ଚୟ କରିବା କଥା ।

ବ୍ରିଟିଶ ପ୍ରତିନିଧି ଭାରତୀୟମାନଙ୍କ ବିଷୟ ନେଇ କେତେ କାଗଜ ପତ୍ର ମୋତେ ଦେଖାଇ ଥିଲେ । ତୈୟବ ସେଠ ମଧ୍ୟ ସେହିପରି ଅନେକ କାଗଜ ମୋତେ ଦେଇଥିଲେ । ଭାରତୀୟମାନେ କିପରି ନିଷ୍ଠୁର ଭାବେ ଅରେଞ୍ଜ ଫ୍ରି ଷ୍ଟେଟରୁ ବିତାଡ଼ିତ ହୋଇଥିଲେ, ତାହା ମୁଁ ସେହି କାଗଜରୁ ବୁଝି ପାରିଥିଲି ।

ସଂକ୍ଷେପରେ କହିବାକୁ ଗଲେ ପ୍ରିଟୋରିଆରେ ରହିବା ଯୋଗୁଁ ମୁଁ ଟ୍ରାନ୍ସଭାଲ ଓ ଅରେଞ୍ଜ ଫ୍ରି ଷ୍ଟେଟବାସୀ ଭାରତୀୟମାନଙ୍କର ସାମାଜିକ, ଆର୍ଥିକ ଓ ରାଜନୈତିକ ଅବସ୍ଥା ସମ୍ବନ୍ଧେ ଭଲରୂପେ ବୁଝା ବୁଝି କରି ପାରିଥିଲି । ମୁଁ ସେତେବେଳେ ଭାବି ନଥିଲି ଯେ ଭବିଷ୍ୟତରେ ମୋର ଏହି ବିଷୟ ଜ୍ଞାନ ଅଶେଷ ଉପକାରରେ ଆସିବ--କାରଣ ମୋର ଇଚ୍ଛା ଥିଲା ବର୍ଷ ଶେଷରେ କିମ୍ବା ତା ପୂର୍ବରୁ ଯଦି ଅବଦୁଲଙ୍କ ମକଦ୍ଦମାଟି ଶେଷହୁଏ, ତାହାହେଲେ ମୁଁ ଘରକୁ ଫେରିବି ।

କିନ୍ତୁ ଭଗବାନଙ୍କ ଇଚ୍ଛା ଅନ୍ୟ ପ୍ରକାର ।

# ତ୍ରୟୋଦଶ ପରିଚ୍ଛେଦ ।

( କୁଲିର ଅବସ୍ଥା । )

———o———

ଟ୍ରାନ୍ସଭାଲ ଓ ଅରେଞ୍ଜ ଫ୍ରି ଷ୍ଟେଟରେ ଭାରତୀୟମାନେ କପରି ଜୀବନ ଯାପନ କରୁଥିଲେ ଏଠାରେ ତାହାର ବିସ୍ତୃତ ବର୍ଣ୍ଣନା କରିବା ଅସଙ୍ଗତ ହେବ । ଯେଉଁମାନେ ସେ ସମ୍ବନ୍ଧେ ବେଶି ଜାଣିବା ଇଚ୍ଛା କରନ୍ତି, ମୋ' ଲିଖିତ "ଦକ୍ଷିଣ ଅଫ୍ରିକା ସତ୍ୟାଗ୍ରହ ଇତିହାସ" ( History of Satyagraha in South Africa ) ଶୀର୍ଷକ ବହି ଖଣ୍ଡି ପଢି ପାରନ୍ତି; କିନ୍ତୁ ଏଠାରେ ତାର ସାମାନ୍ୟ ବିବରଣୀ ଦେବା ନିତାନ୍ତ ଦରକାର ।

୧୮୮୮ ସାଲରେ କିମ୍ବା ତତ୍ପୂର୍ବରୁ ଯେଉଁ ଗୋଟିଏ ବିଶେଷ ଆଇନ ଜାରି ହୋଇଥିଲା, ତାର ଫଳରେ ଅରେଞ୍ଜ ଫ୍ରି ଷ୍ଟେଟବାସୀ ଭାରତୀୟମାନଙ୍କର ସବୁ ପ୍ରକାର ଦାବୀ ରଦ କରି ଯାଇଥିଲା । ସେଠାରେ ରହିବା ପାଇଁ ଯଦି ସେମାନେ ଇଚ୍ଛା କରନ୍ତି, ତେବେ ହୋଟେଲ ଚାକର ରୂପେ କିମ୍ବା ଅନ୍ୟ କୌଣସି କୁତ୍ସିତ କାମ କରି ରହିବାକୁ ପଡ଼େ । ସାମାନ୍ୟ ଧନ ଦେଇ ବଣିକମାନଙ୍କୁ ମଧ୍ୟ ତଡି ଦିଆ ଯାଇଥିଲା; ସେମାନେ କେତେ ଆବେଦନ ନିବେଦନ କଲେ; କିନ୍ତୁ ସବୁ ବିଫଳ ହୋଇଥିଲା ।

୧୮୮୫ ସାଲରେ ଟ୍ରାନ୍ସଭାଲରେ ଗୋଟିଏ ବଡ କଠିନ ଆଇନ ଜାରି ହୋଇ ଥିଲା । ୧୮୮୬ ସାଲରେ କିନ୍ତୁ ତାହା ଟିକିଏ ଢିଲା କରାଗଲା । ଉକ୍ତ ଆଇନ ଅନୁସାରେ ଯେଉଁ ଭାରତୀୟମାନେ ଟ୍ରାନ୍ସ-

ଭାଲରେ ରହିବାକୁ ଦିଆନ୍ତି, ପ୍ରବେଶ ମାସୁଲ ସ୍ୱରୂପ ସେମାନେ ତିନି ପାଉଣ୍ଡ କର ଦେବାକୁ ପଡୁଥିଲା । ସେମାନଙ୍କ ସକାଶେ ଯେଉଁ ସ୍ଥାନ ପୂର୍ବରୁ ନିର୍ଦ୍ଦିଷ୍ଟ ହୋଇଥାଏ ସେ ସ୍ଥାନ ଛଡ଼ା ଅନ୍ୟ କୌଣସି ଠାରେ ଜମି ବାଡ଼ି ରଖିବା ତାଙ୍କର ଅଧିକାର ନଥାଏ । ଏହା ଅବଶ୍ୟ ଆଇନାନୁମୋଦିତ; ତଥାପି କାର୍ଯ୍ୟରେ ସେହିତକ କ୍ଷମତା ମଧ୍ୟ ସେମାନେ ପାଇ ନଥାନ୍ତି । ଭୋଟ ଦେବା ଅଧିକାର ସେମାନଙ୍କର ନଥାଏ । ଏସିଆ ମହାଦେଶ ଲୋକଙ୍କ ବିପକ୍ଷରେ ଯେଉଁ ବିଶେଷ ନିୟମ ଜାରି ହୋଇଥିଲା ଏସବୁ ଉକ୍ତ ଆଇନର ଅଂଶ । ଏଥି ଉପରେ କଳା ଲୋକଙ୍କ ବିପକ୍ଷରେ ଯେଉଁ ଆଇନ ଥିଲା ତାହା ମଧ୍ୟ ମିଶିଥାଏ । ଶେଷୋକ୍ତ ଆଇନାନୁଯାୟୀ ଭାରତୀୟମାନେ ସାଧାରଣ ରାଜ ମାର୍ଗରେ ଯାତାୟାତ କରିବା ପାଇଁ ମନା ଏବଂ ବିନାନୁମତିରେ ରାତ୍ରି ନଅ ଘଣ୍ଟା ପରେ ଘରୁ ବାହାରିବା ମଧ୍ୟ ନିଷେଧ । ଭାରତୀୟମାନଙ୍କ ପକ୍ଷେ ଏହି ଶେଷୋକ୍ତ ନିୟମଟି ବେଳେ ବେଳେ ପରିବର୍ତ୍ତିତ କରା ଯାଇଥାଏ । ଯେଉଁମାନେ 'ଆରବୀ' ବୋଲି କହନ୍ତି ସେମାନେ ଉକ୍ତ ନିୟମରୁ ମୁକ୍ତି ଲାଭ କରିଥାନ୍ତି । ସେହି ମୁକ୍ତିଦାନ ମଧ୍ୟ ପୁଲିଶମାନଙ୍କ ଇଚ୍ଛା ଉପରେ ନିର୍ଭର କରିଥାଏ ।

ମୁଁ ଏହି ଦୁଇଟି ଆଇନର ଦାଉ ଅନୁଭବ କରିବାକୁ ପଡ଼ିଥିଲା । ମିଃ କୋଟ୍‌ସଙ୍କ ସାଥିରେ ମୁଁ ଅନେକଥର ରାତିରେ ବୁଲି ଯାଇ ଥାଏ ଓ କେବେ କେବେ ଆମ୍ଭେ ଦୁହେଁ ଦଶ ଘଣ୍ଟା ରାତି ପୂର୍ବରୁ ଘରକୁ ଫେରି ନଥାଉଁ । ଯଦି ମୋତେ ପୁଲିଶ ଗ୍ରେପ୍ତାର କରନ୍ତି ? ମୋ ଅପେକ୍ଷା କୋଟ୍‌ସଙ୍କର ଏ ସମ୍ବନ୍ଧେ ବେଶି ଭାବନା । ସେ ତାଙ୍କ ନିଗ୍ରୋ ଚାକରମାନଙ୍କୁ ବାହାରକୁ ଯିବା ପାଇଁ ଅନୁମତି ପତ୍ର ଦେବାକୁ ହୋଇଥାଏ । ମୋତେ ବା ସେ କିପରି ଅନୁମତି ଦେଇ ପାରିବେ? ଜଣେ ପ୍ରଭୁ କେବଳ ତାଙ୍କ ଚାକରକୁ ଅନୁମତି

ପତ୍ର ଦେଇ ପାରନ୍ତି । ମୁଁ ଯଦି ଅନୁମତି ପତ୍ରଟିଏ ଲୋଡ଼ିଥାନ୍ତି ଓ ମିଃ କୋଟସ୍ ଯଦି ତାହା ଦେବା ପାଇଁ ମଧ୍ୟ ପ୍ରସ୍ତୁତ ହୋଇଥାନ୍ତେ, ତାହା ହେଲେ ସେ କଦାପି ସେ କଥା କରି ପାରନ୍ତେ ନାହିଁ, କାରଣ ତାହା ଜାଲ ବୋଲି ବିବେଚିତ ହୁଅନ୍ତା ।

ମିଃ କୋଟସ କମ୍ପା ତାଙ୍କର ଜଣେ ବନ୍ଧୁ ମୋତେ ସ୍ଥାନୀୟ ଓକିଲ ଡ଼ାକ୍ତର କ୍ରାଉଜଙ୍କ ନିକଟକୁ ନେଲେ । ଆମ୍ଭେ ଦୁହେଁ ଏକା ସମୟରେ ବାରିଷ୍ଟର ପରୀକ୍ଷାରେ ପାଶ କରିଥିଲୁଁ । ରାତ୍ରି ନଅ ଘଣ୍ଟା ପରେ ପଦାକୁ ବାହାରିବା ପାଇଁ ମୋତେ ଅନୁମତି ପତ୍ର ଖଣ୍ଡିଏ ଦେବା ତାଙ୍କ ପକ୍ଷେ ବଡ଼ କଷ୍ଟର କଥା । କିନ୍ତୁ ସେ ମୋ ପ୍ରତି ବଡ଼ ସଦୟ ଓ ଅନୁରକ୍ତ ଥିଲେ । ସମସ୍ତଙ୍କୁ ଯେପରି ଅନୁମତି ପତ୍ର ଦିଆ ଯାଏ ସେହିପରି ନଦେଇ ମୋର ଇଚ୍ଛାନୁସାରେ ଯେ କୌଣସି ସମୟରେ ପୁଲିଶମାନଙ୍କ ଜୁଲୁମ ନଥାଇ ବୁଲିବା ପାଇଁ ସେ ଗୋଟିଏ କ୍ଷମତା ପତ୍ର ମୋତେ ଦେଇ-ଥିଲେ । ମୁଁ ଯେତେବେଳେ ପଦାକୁ ବାହାରେ ଉକ୍ତ ପତ୍ର ଖଣ୍ଡି ନିକଟରେ ରଖିଥାଏ । କିନ୍ତୁ ମୁଁ କେତେବେଳେ ହେଲେ ତାହା ଯେ କାହାରିକୁ ଦେଖାଇବାକୁ ପଡ଼ିନାହିଁ, କେବଳ ଆଶ୍ଚର୍ଯ୍ୟର କଥା ।

ଡାକ୍ତର କ୍ରାଉଜ ତାଙ୍କ ଘରଠାକୁ ମୋତେ ନିମନ୍ତ୍ରଣ କରିଥିଲେ ଓ ଆମ୍ଭେ ଦୁହେଁ ବନ୍ଧୁରୂପେ ପରିଗଣିତ ହୋଇଥିଲୁଁ । ମୁଁ ମଧ୍ୟ ସମୟେ ସମୟେ ତାଙ୍କୁ ଆମନ୍ତ୍ରଣ କରିଥାଏ ଏବଂ ତାଙ୍କର ଯୋଗୁଁ ମୁଁ ତାହାଙ୍କ ନାମଜାଦା ଭାଇ ଯୋହାନ୍ସବାରିଗ୍‌ର ପବ୍ଲିକ ପ୍ରାସିକ୍ୟୁଟରଙ୍କ ସହିତ ପରିଚିତ ହୋଇପାରିଥିଲି । 'ବୋଏର ଯୁଦ୍ଧ' ସମୟରେ ଜଣେ ଇଂରେଜ ହାକିମଙ୍କୁ ହତ୍ୟା କରିବା ଲାଗି ଯତ୍ନ କରୁଥିବା ଅଭିଯୋଗରେ ସେ ସାତବର୍ଷ କାରାବାସ ଦଣ୍ଡ ପାଇଥିଲେ । ଅଦାଲତରେ ମଧ୍ୟ ତାଙ୍କୁ ପ୍ରବେଶ ନିଷେଧ

କରାଯାଇ ଥିଲା । ଯେତେବେଳେ ଯୁଦ୍ଧ ବନ୍ଦ ହୁଏ, ସେ ଜେଲରୁ ଖଲାସ ପାଇଲେ ଓ ଟ୍ରାନ୍ସଭାଲରେ ପୁନରପି ଓକାଲତି ଆରମ୍ଭ କଲେ ।

ଏହି ସବୁ ସମ୍ବନ୍ଧ ମୋର ଭବିଷ୍ୟତର ସାଧାରଣ କାର୍ଯ୍ୟରେ ବଡ଼ ସହାୟତା କରିଥିଲା ଏବଂ ସେଥିଲାଗି ମୋର ଶ୍ରମ ଉଣା ହୋଇଥିଲା ।

ରାଜ ପଥରେ ଚାଲିବା ପାଇଁ ଯେଉଁ ସବୁ ଆଇନ-ଜାରି ହୋଇଥିଲା ତାହାର ପରିଣାମ ମୋ ପକ୍ଷେ ବଡ଼ ଅସହ୍ୟ ହୋଇଥିଲା । ମୁଁ ସବୁବେଳେ ପ୍ରେସିଡେଣ୍ଟ ଷ୍ଟ୍ରିଟ ଦେଇ ଗୋଟିଏ ନିର୍ଦ୍ଦିଷ୍ଟ ପଡ଼ିଆକୁ ବୁଲି ଯାଉଥାଏ । ସଭାପତି କ୍ରାଉଗରଙ୍କର ଘର ସେହି ସାହି ଭିତରେ । ଘରଟି ସାଧାରଣ ଭାବେ ନିର୍ମିତ—ବଗିଚାଟିଏ ମଧ୍ୟ ନାହିଁ, ଅନ୍ୟାନ୍ୟ ଘର ପରି କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରିଟୋରିଆର ଲକ୍ଷାଧିପତି-ମାନଙ୍କର ଯେ ଘର, ତାହା ସବୁ ବଡ଼ ବଡ଼ ପ୍ରାସାଦ—ବହୁ ଧନ ବ୍ୟୟରେ ନିର୍ମିତ ଓ ଘରର ଚାରିପାଖରେ ଅସଂଖ୍ୟ ପ୍ରମୋଦ ଉଦ୍ୟାନ । ବାସ୍ତବରେ ସଭାପତି କ୍ରାଉଗରଙ୍କ ସରଳତା ଅନୁକରଣୀୟ । ଯଦି ପୁଲିସ-ମାନେ ଘର ଆଗରେ ପହରା ଦେଇଥାନ୍ତି, ତାହାହେଲେ ଉକ୍ତ ଘରଟି କୌଣସି ଜଣେ ହାକିମଙ୍କର ବୋଲି ଚିହ୍ନିବାକୁ ହୋଇଥାଏ । ମୁଁ ପ୍ରାୟ, ସବୁବେଳେ ପୁଲିସମାନେ ପହରା ଦେବା ବାଟରେ ଯିବା ଆସିବା କରିଥାଏ । ମୋତେ କେବେ କେହି କିଛି କହିନାହାନ୍ତି ।

ସମୟ ସମୟକୁ ପୁଲିସମାନେ ବଦଳ ହେଉଥାନ୍ତି । ଥରେ ଏହି ପୋଲିସମାନଙ୍କ ମଧ୍ୟରୁ ଜଣେ ମୋତେ ସାବଧାନ ନକରାଇ କମ୍ବା ବାଟରୁ ଅନ୍ତର ହେବାପାଇଁ ମଧ୍ୟ ନକହି ମୋତେ ଲାତମାରି ପେଲିଦେଲା । ମୁଁ ବ୍ୟଥିତ ହେଲି ଓ ତାର ଏହିପରି ବ୍ୟବହାରର କାରଣ ପଚାରିବାକୁ

ଯାଉଛୁ, ସେତେବେଳେ ଦେଖିଲି ମିଃ କୋଟସ ସେହି ବାଟେ ଦେଇ ଘୋଡ଼ା ଉପରେ ଯାଉଥିଲେ । ସେ ମୋତେ ଡାକି କହିଲେ—

"ଗାନ୍ଧି, ମୁଁ ସବୁ ଦେଖିଛୁ । ଆପଣ ଯଦି ଲୋକଟିର ବିପକ୍ଷରେ ନାଲିସ କରନ୍ତି ତାହା ହେଲେ ମୁଁ ଆନନ୍ଦର ସହିତ ଆପଣଙ୍କ ସପକ୍ଷରେ ସାକ୍ଷ ଦେବି । ଆପଣ ଯେ ଏହି ଅଭଦ୍ର ବ୍ୟବହାରରେ ପଡ଼ିଛନ୍ତି ସେଥିଲାଗି ମୁଁ ନିତାନ୍ତ ଦୁଃଖିତ । "

ମୁଁ କହିଲି—"ଆପଣ ବ୍ୟଥିତ ହେବା ଉଚିତ ନୁହେଁ । ଗରିବ ଲୋକଟି କଣ ବା ଜାଣିଛି ? ସବୁ କଳା ଲୋକ ତା ପକ୍ଷରେ ସମାନ । ମୋ ପ୍ରତି ସେ ଯେପରି ବ୍ୟବହାର କରିଛି ନିଗ୍ରୋମାନଙ୍କୁ ମଧ୍ୟ ସେହିପରି ବ୍ୟବହାର କରୁଥାଏ । ମୁଁ ଶପଥ କରିଛି, ନିଜ କଥା ନେଇ ମୁଁ କେବେ ହେଲେ ଅଦାଲତକୁ ଯିବିନାହିଁ । ସୁତରାଂ ତାର ବିପକ୍ଷରେ ନାଲିସ କରିବା ମୋର ଇଚ୍ଛା ନାହିଁ ।"

ସେ—"ଏହା ଆପଣଙ୍କ ଭଳିଆ ଲୋକଙ୍କ ପକ୍ଷେ କେବଳ ସାଜେ, ତଥାପି ଆଉ ଥରେ ଭାବି ଦେଖନ୍ତୁ ତ; ଏହିପରି ଲୋକଙ୍କୁ ଶାସ୍ତିଦେବା ନିତାନ୍ତ ଦରକାର । ତାପରେ ସେ ଉକ୍ତ ପୁଲିଶ ସହିତ କଥା ବାର୍ତ୍ତା କରି ତାକୁ ମାଡ଼ ଦେଲେ । ମୁଁ ସେମାନଙ୍କ କଥା ବୁଝିପାରି ନଥିଲି । ପୋଲିସଟି ଜଣେ ବୋଏର ଓ ସେ ଦୁହେଁ ଡ଼ାଚ ଭାଷାରେ କଥା ହେଉଥିଲେ । ସେ ମୋ ଆଗରେ ଦୋଷ ସ୍ୱୀକାର କଲା । ଅବଶ୍ୟ ଦୋଷ ସ୍ୱୀକାର କରିବା ପାଇଁ ଆଦୌ ଦରକାର ନଥିଲା; କାରଣ ମୁଁ ତ ତାକୁ କ୍ଷମା କରି ସାରିଥିଲି ।

କିନ୍ତୁ ସେହିଦିନଠାରୁ ମୁଁ କେବେହେଲେ ସେହି ରାହି ଦେଇ ଯିବା ଅସିବା କରିନଥିଲି । ଉକ୍ତ ପୁଲିଶର ସ୍ଥାନରେ ଆଉ ଜଣେ ଆସି-

ପାରେ ଓ ଏହି ଘଟଣା ବିଷୟ ନଜାଣି ପୁନରପି ସେହିପରି ବ୍ୟବହାର କରିପାରେ ବୋଲି ମୋର ଭୟ ହେଲା । ଅକାରଣରେ କାହିଁକି ବା ଆଉ ଗୋଟିଏ ଲାଭ ବରଣ କରିବି ? ସୁତରାଂ ମୁଁ ଅନ୍ୟ ଆଡ଼େ ବୁଲି ଯିବା ଆରମ୍ଭ କଲି । ଏହି ଘଟଣା ଲାଗି ଭାରତୀୟମାନଙ୍କ ପାଇଁ ମୁଁ ଯାହା କରିବାକୁ ଭାବିଥିଲି, ତାହା ସାଧନ କରିବା ସକାଶେ ମୋର ଉତ୍ସାହ ବଢିଲା । ମୁଁ ସେମାନଙ୍କ ସହିତ ପରାମର୍ଶ କରି ନିଶ୍ଚୟ କଲି ଯେ ଯଦି ଆବଶ୍ୟକ ହୁଏ ତାହାହେଲେ ବ୍ରିଟିଶ ପ୍ରତିନିଧିଙ୍କ ସହିତ ଦେଖା କରି ଏହି ଆଇନ ସମ୍ପର୍କରେ ଆପତ୍ତି ଉଠାଇବାକୁ ହେବ ।

ଭାରତୀୟମାନଙ୍କ ଦୁରବସ୍ଥା ସମ୍ବନ୍ଧେ ମୁଁ ଯେ ଗଭୀର ଗବେଷଣା ଓ ଅନୁସନ୍ଧାନ କରିଥିଲି ତାହା କେବଳ ପଢା ଶୁଣା ଦ୍ୱାରା ନୁହେ କିନ୍ତୁ ନିଜ ଅନୁଭବରେ ମଧ୍ୟ ମୁଁ ବୁଝିଲି ଯେ ଜଣେ ଆତ୍ମସମ୍ମାନୀ ଭାରତୀୟ ପକ୍ଷେ ଦକ୍ଷିଣ ଆଫ୍ରିକା ବସଯୋଗ୍ୟ ନୁହେ । ଏହି ଦୁରବସ୍ଥାରୁ କିପରି ସମସ୍ତ ଭାରତୀୟ ଲୋକେ ରକ୍ଷା ପାଇବେ ଏହି କଥା ମୁଁ ସବୁବେଳେ ଭାବିବାକୁ ପଡ଼ିଥାଏ ।

କିନ୍ତୁ ସେ ସମୟରେ ଦାଦା ଅବଦୁଲଙ୍କ ମକଦ୍ଦମା ବିଷୟ ବୁଝିବା ମୋର ପ୍ରଧାନ କର୍ତ୍ତବ୍ୟ ଥିଲା ।



## ଚତୁର୍ଦ୍ଦଶ ପରିଚ୍ଛେଦ ।

( ମକଦ୍ଦମାର ଯୋଗାଡ଼ । )



ପ୍ରିଟୋରିଆରେ ମୁଁ ଯେଉଁ ବର୍ଷକ ପାଇଁ ରହିଥିଲି ତାହା ମୋ

ଜୀବନର ବହୁ ଉପାଦେୟ ଅନୁଭୂତିର ସମୟ । ଏହିଠାରେ ମୁଁ ଲୋକ ସେବା କାର୍ଯ୍ୟ ଶିଖିବା ପାଇଁ ଉତ୍ତମ ସୁବିଧା ପାଇଥିଲି ଏବଂ ସେଥିରେ ସାମାନ୍ୟ ଦକ୍ଷତା ମଧ୍ୟ ଲାଭ କରିଥିଲି । ଏହିଠାରେହିଁ ଧର୍ମଭାବ ମୋର ଜୀବନ୍ତ ସଦୃଶ ହୋଇଥିଲା ଏବଂ ମୁଁ ଓକାଲତି କାର୍ଯ୍ୟରେ ଖ୍ୟାତି ଲଭିଥିଲି । ଜଣେ ଶ୍ରେଷ୍ଠ ବାରିଷ୍ଟର ଅନ୍ୟ ଏକ ନାମଜାଦା ବାରିଷ୍ଟରଙ୍କ ଠାରୁ ଯାହା ଶିକ୍ଷା କରିଥାନ୍ତି ତାହା ମୁଁ ଏଠାରେ ଆଗ ଶିକ୍ଷା କଲି ଏବଂ ମୋର ବିଶ୍ୱାସ ହେଲା ମୁଁ ଓକାଲତିରେ ଆଉ ଅକୃତକାର୍ଯ୍ୟ ହେବି ନାହିଁ । କି ଉପାୟ ଅବଲମ୍ବନ କଲେ ଓକାଲତିରେ ସୁଦକ୍ଷ ହୁଅନ୍ତି ତାହା ମଧ୍ୟ ମୁଁ ଏଠାରେ ଶିଖିଥିଲି ।

ଦାଦା ଅବଦୁଲଙ୍କର ମକଦ୍ଦମାଟି କିଛି ସାମାନ୍ୟ ନୁହେଁ; ୪୦୦୦୦ ପାଉଣ୍ଡ ପାଇଁ ସେ ଦାବି କରିଥିଲେ । ବ୍ୟବହାର ସମ୍ପର୍କରୁ ମକଦ୍ଦମାର ସୃଷ୍ଟି ଯୋଗୁଁ କାଗଜ ପତ୍ର ସବୁ ଦୁର୍ବୋଧ ହୋଇଥିଲା । ତାଙ୍କ ଧାରଣାରେ ଅଧେ ଅଂଶ ପ୍ରମିସରି ନୋଟ ଉପରେ ନିର୍ଭର । ପ୍ରତିବାଦୀ ତରଫର ଲୋକେ ଧରି ବସିଥିଲେ ଯେ ନୋଟ ସବୁ ଜାଲ ହୋଇଅଛି । ଏହି ଜଟିଳ ମକଦ୍ଦମାଟିରେ ଆଇନ ସମ୍ବନ୍ଧୀୟ ଅନେକ ବିଷୟ ନେଇ ଧନ୍ଦ ହେବା କଥା ।

ଦୁଇ ପକ୍ଷରୁ ବଡ଼ ବଡ଼ ଓକିଲମାନେ ନିଯୁକ୍ତ ହୋଇଥିଲେ । ସୁତରାଂ ସେମାନଙ୍କର କାର୍ଯ୍ୟ ଦେଖି ଶିଖିବା ପାଇଁ ମୁଁ ଉତ୍ତମ ସୁଯୋଗ ପାଇଥିଲି । ବାଦୀ ପକ୍ଷର ଯାହା ଯୋଗାଡ଼ କରିବା କଥା ତାହା ମୋ ଉପରେ ନ୍ୟସ୍ତଥିଲା । ମୁଁ ଯେଉଁ ସବୁ ବିଷୟ ଯୋଗାଇଥିଲି ସେଥିରୁ କେତେ ଗ୍ରାହ୍ୟ ଓ କେତେ ଅଗ୍ରାହ୍ୟ ଏହା ମଧ୍ୟ ମୁଁ ଶିଖିବାକୁ ପାଇଥିଲି । ଏହି ମକଦ୍ଦମା ସମ୍ବନ୍ଧେ ମୁଁ ଯାହା ଯାହା ଠିକଣା କରିଥିଲି ତଦ୍ୱାରା

ମୋର ସାକ୍ଷୀ ବିସ୍ତାରଣା କରିବା ଶକ୍ତି ବଢ଼ିବ ବୋଲି ମୋର ଧାରଣା ଥିଲା ।

ମକଦ୍ଦମାଟି ମୁଁ ବହୁତ ଆଦରର ସହିତ ଦେଖିଲି; ସବୁ ଯେପରି ସେଥିରେ ମୁଁ ନିଜକୁ ମିଶାଇ ଦେଇଥିଲି । ମକଦ୍ଦମା ସମ୍ବନ୍ଧୀୟ କାଗଜ ପତ୍ର ସବୁ ପଢ଼ିଲି । ଅବଦୁଲ ସେଠ ଜଣେ ପାରିବାର ଲୋକ ଓ ତାଙ୍କର ମୋଠାରେ ବଡ଼ ବିଶ୍ୱାସ । ସୁତରାଂ ମୋର ଅନେକ ସୁବିଧା ହୋଇଥିଲା । ସେ ମକଦ୍ଦମାଟିରେ ମୋତେ ବେଶି ସାହାଯ୍ୟ କରିଥିଲେ । ହିସାବ ପତ୍ର ରଖିବା ସମ୍ବନ୍ଧେ ମୁଁ ତାଙ୍କ ଠାରୁ ଉତ୍ତମ ଶିକ୍ଷା ଲାଭ କରିଥିଲି । ଯେତେ ସବୁ ଚିଠି ପତ୍ର ଆସେ ସେ ସବୁ ଗୁଜରାଟ ଭାଷାରେ ଲେଖା ହୋଇଥାଏ ବୋଲି ମୁଁ ସେ ସବୁକୁ ଇଂରେଜୀରେ ଅନୁବାଦ କରେ । ସେହେତୁ ଅନୁବାଦ କରିବାରେ ମୋର ଉନ୍ନତି ହୋଇଥିଲା ।

ପୂର୍ବେ କହିଛି, ଲୋକହିତକର କାମ ଓ ଧର୍ମ ଅନୁଷ୍ଠାନରେ ମୋର ବେଶି ଆଦର । ସେଥି ଲାଗି ମୁଁ ସମାନ୍ୟ ସମୟ ବ୍ୟୟ କରୁଥିଲେହେଁ ସେ ସମୟରେ ତାହା ମୋର ଏକାନ୍ତ ଆଦରଣୀୟ କାର୍ଯ୍ୟ ହୋଇ ନଥିଲା । ମକଦ୍ଦମା ଲାଗି ଯୋଗାଡ଼ କରିବା ମୋର ଏକାନ୍ତ ଅନୁଧ୍ୟାନ ଥିଲା । ଆଇନ ଅଧ୍ୟୟନ ଓ ଅବଶ୍ୟକ ପଢ଼ିଲେ ନାନା ପ୍ରକାର ମକଦ୍ଦମା ଦେଖିବାରେ ପ୍ରଥମେ ମୋର ଅନେକ ସମୟ କଟୁଥାଏ । ପରିଣାମରେ ମୁଁ ଅବଦୁଲଙ୍କ ମକଦ୍ଦମା ସମ୍ବନ୍ଧେ ଏତେ ବିଷୟ ଜାଣିଥିଲି ଯେ ତାହା ଉଭୟ ପକ୍ଷର କେହି ହେଲେ ଜାଣି ନଥିବେ । ମୋର ଏହି ସୁବିଧା ଥିଲା, ମୁଁ ଉଭୟ ପକ୍ଷର କାଗଜ ପତ୍ର ଦେଖି ପାଉଥିଲି ।

ମକଦ୍ଦମା ସମ୍ବନ୍ଧେ ଯେତେ ସତ୍ୟ ବିଷୟ ସଂଗ୍ରହ କରିହୁଏ ମକଦ୍ଦମାଟି ସେତିକି ଫଳପ୍ରଦ ହୋଇଥାଏ । ସ୍ୱର୍ଗୀୟ ପିନ୍‌କଟ୍ ମୋତେ ଏହି ଉପଦେଶ ଦେଇଥିଲେ । କେତେ ଦିନ ପରେ ଦକ୍ଷିଣ ଆଫ୍ରିକାକୁ

ବ୍ୟାଙ୍କର ସର୍ଗୀୟ ମିଃ ଲିଓନାର୍ଡ ମଧ୍ୟ ସେହି ପରି କହିଥିଲେ । କୌଣସି ଏକ ମକଦ୍ଦମାରେ ମୋର ପାର୍ଟିର ବେଶି ନ୍ୟାଯ୍ୟ ଦାବୀ ଥିଲେ ମଧ୍ୟ ଆଇନ ଅନୁସାରେ ମୋର ହାରିବା ଛଡ଼ା ମୋତେ ଅନୁମାନ ହେଲା । ମୁଁ ହତବୁଦ୍ଧି ହୋଇ ମିଃ ଲିଓନାର୍ଡଙ୍କ ପରାମର୍ଶ ଭିକ୍ଷା କଲି । ମକଦ୍ଦମାର ବିଷୟ ସବୁ ଆଶାଜନକ ବୋଲି ସେ ମଧ୍ୟ ଭାବିଲେ । ସେ କହିଲେ, "ଗାନ୍ଧି ମୁଁ ଗୋଟିଏ କଥା ଶିଖିଛି—ଆମେ ଯଦି କୌଣସି ଏକ ମକଦ୍ଦମା ସମ୍ପର୍କୀୟ ସତ୍ୟ ଖବର ସବୁ ଉତ୍ତମ ରୂପେ ଯୋଗାଡ଼ି ତାହା ହେଲେ ଆଇନ ଅନୁସାରେ ସେଥିରେ ପରାସ୍ତ ହେବା ସମ୍ଭବ ନୁହେ । ସୁତରାଂ ମକଦ୍ଦମା ସମ୍ପର୍କରେ ଆମେ ଯେତେ ଦୂର ପାରୁଁ ସେତିକି ସତ୍ୟ ବିଷୟ ସଂଗ୍ରହ ଓ ସେ ସବୁର ପର୍ଯ୍ୟାଲୋଚନା କରିବା ନିତାନ୍ତ ଦରକାର ।" ମକଦ୍ଦମାର ସମୁଦାୟ ବିଷୟ ପୁନର୍ବାର ପର୍ଯ୍ୟାଲୋଚନା କଲାପରେ ତାଙ୍କୁ ଦେଖା କରିବାକୁ କହି ମୋତେ ସେ ବିଦାୟ ଦେଲେ । ମକଦ୍ଦମାଟି ପୁନର୍ବାର ଆଲୋଚନା କରିବାରୁ ମୋର ପୂର୍ବ ଧାରଣା ଆଉ ରହିଲା ନାହିଁ । ଦକ୍ଷିଣ ଆଫ୍ରିକାରେ ସେହିପରି ଆଉ ଗୋଟିଏ ପୁରାତନ ମକଦ୍ଦମା ମଧ୍ୟ ମୁଁ ଜିତି ପାରିଲି । ମୋତେ ବଡ଼ ଆନନ୍ଦ ଲାଗିଲା । ମିଃ ଲିଓନାର୍ଡଙ୍କ-ଠାକୁ ଯାଇ ସବୁ ବୃତ୍ତାନ୍ତ କହିଲି । ସେ କହିଲେ, "ଅଚ୍ଛା, ଆମେ ନିଶ୍ଚୟ ମକଦ୍ଦମାଟିରେ ଜିଣିବା । କେଉଁ ବିଚାରପତି ଆମର ମକଦ୍ଦମାର ବିଚାର କରିବେ, କେବଳ ଏତିକିବୁଝି ରଖିବାକୁ ହେବ ।"

ମୁଁ ଯେତେବେଳେ ଦାଦା ଅବଦୁଲଙ୍କ ମକଦ୍ଦମାର ଯୋଗାଡ଼ କରୁଥିଲି ମକଦ୍ଦମା ସମ୍ବନ୍ଧ ବିଷୟର ଦାୟିତ୍ୱ କେତେ ଦୂର ମୁଁ ତାହା ଅନୁଭବ କରିପାରି ନଥିଲି । ବିଷୟ ସବୁ ଯଦି ସତ୍ୟମୂଳକ ଓ ଆମ୍ଭେମାନେ ଯେତେବେଳେ ସତ୍ୟର ଉପାସକ, ତାହାହେଲେ ଆଇନ ସେ ସ୍ୱଭାବତଃ ଆମ୍ଭର ସହାୟତା କରିବ । ମୁଁ ବୁଝିଲି ଅବଦୁଲଙ୍କ

ମକଦ୍ଦମାର ବିଷୟ ସବୁ ସତ୍ୟମୂଳକ—ସୁତରାଂ ଆଇନାନୁସାରେ ସେ ଜୟ ଲାଭ କରିବା କଥା । କିନ୍ତୁ ମୁଁ ଦେଖିଲି ଉଭୟ ପକ୍ଷ ଯଦି ମକଦ୍ଦମାରେ ଲଢ଼ିବା ପାଇଁ ଧରି ବସନ୍ତି, ତାହାହେଲେ ବାଦୀ ଓ ପ୍ରତିବାଦୀ ଉଭୟେ ପରିଶେଷରେ ସର୍ବସ୍ୱାନ୍ତ ହେବେ । ବିଶେଷ କଥା ଦୁହେଁ ବାନ୍ଧବ ଓ ଗୋଟିଏ ସହରର ବାସିନ୍ଦା । କେତେ ଦିନ ଯେ ମକଦ୍ଦମାଟି ଲାଗିବ ତାହା କେହି ଜାଣି ନଥିଲେ । ଯଦି କୋର୍ଟରେ ବିଚାର କରିବା ପାଇଁ ନିଷ୍ପତ୍ତି ହୁଏ, ତାହାହେଲେ କେବେ ଯେ ତାହାର ଶେଷ ନିଷ୍ପତ୍ତି ହେବ ତାର ସୀମା ନାହିଁ ଓ କୌଣସି ପକ୍ଷର ଲାଭ ମଧ୍ୟ ହେବ ନାହିଁ । ସୁତରାଂ ଯେତେ ଶୀଘ୍ର ସମ୍ଭବ ମକଦ୍ଦମାଟି ଶେଷ କରିବା ଲାଗି ଉଭୟ ପକ୍ଷର ଇଚ୍ଛା ।

ମୁଁ ତୈୟବ ସେଠଙ୍କଠାକୁ ଯାଇ ସମାଧାନ ସକାଶେ ଯତ୍ନ କରିବା ପାଇଁ କହିଲି ଓ ତାଙ୍କ ଓକିଲଙ୍କ ସହିତ ଦେଖା କରିବା ପାଇଁ ତାଙ୍କୁ ଅନୁରୋଧ କଲି । ଯଦି ଉଭୟ ପକ୍ଷର ବିଶ୍ୱାସଯୋଗ୍ୟ ଜଣେ ମଧ୍ୟସ୍ଥ ବ୍ୟକ୍ତି ମିଳନ୍ତି, ତାହାହେଲେ ମକଦ୍ଦମାର ଶେଷ ନିଷ୍ପତ୍ତି ଶୀଘ୍ର ହୋଇପାରେ । ଓକିଲମାନଙ୍କର ପାଉଣା ଏପରି ବଢ଼ିବାକୁ ଲାଗିଲା ଯେ ବାଦୀ ଓ ପ୍ରତିବାଦୀ ବଡ଼ ବେପାରୀ ଓ ଧନୀ ହେଲେ ମଧ୍ୟ ସେମାନେ ସର୍ବସ୍ୱାନ୍ତ ହୋଇ ଆସୁଥିଲେ । ଏହି ମକଦ୍ଦମାରେ ସେମାନଙ୍କର ଏତେ ସମୟ ବ୍ୟୟ ହେଉଥିଲା ଯେ ଅନ୍ୟ କୌଣସି କାର୍ଯ୍ୟରେ ହାତ ଦେବା ପାଇଁ ସେମାନଙ୍କର ସୁବିଧା ଓ ସମୟ ହୋଇ ନଥାଏ । ପରସ୍ପର ମଧ୍ୟରେ ବିଦ୍ରୋହ ଭାବ ମଧ୍ୟ ବଢ଼ି ଆସୁଥାଏ । ମକଦ୍ଦମା ସମ୍ବନ୍ଧ ସମସ୍ତ କାର୍ଯ୍ୟରେ ମୋର ବିରକ୍ତି ଜାତ ହେଲା । ଓକିଲମାନେ ମକଦ୍ଦମାରେ ନିଯୁକ୍ତ ହେଲେ ନିଜ ପକ୍ଷର ଜୟଲାଭ ପାଇଁ ବାଦାନୁବାଦ କରିବା ସ୍ୱାଭାବିକ କଥା । ମୁଁ ଦେଖିଲି, ଜୟୀ ହେବା ପକ୍ଷର ଲୋକେ ମଧ୍ୟ ସେମାନଙ୍କର ସମୁଦାୟ ଖରଚ ଧନ ପାଇ ନଥାନ୍ତି । କୋର୍ଟ ଫି ନିୟମାନୁସାରେ ବାଦୀ

ଓ ପ୍ରତିବାଦୀ କେବେଳେ ଯେ ଧନ ଖରଚ କରିବାକୁ ହେବ, ତାହା ନିର୍ଦ୍ଧାରିତ ହୋଇଥାଏ । କିନ୍ତୁ ଏ ଅତେ ଓକିଲ ଯାହା ନିଅନ୍ତି ତାହା ଉକ୍ତ ନିର୍ଦ୍ଧାରିତ ଧନ ଅପେକ୍ଷା ବେଶି । ଏହା ମୁଁ ସହିବା କଥା ନୁହେ । ଉଭୟ ପକ୍ଷକୁ ସମାଧାନ କରାଇ ସେମାନଙ୍କୁ ମିଳାମିଶା କରିବାକୁ ଚେଷ୍ଟା କରିବା ମୋର କର୍ତ୍ତବ୍ୟ ବୋଲି ମୁଁ ମନେ କଲି । ସମାଧାନ ସକାଶେ ମୁଁ ପ୍ରାଣପଣେ ଚେଷ୍ଟା କଲି । ପର ଶେଷରେ ତ୍ୟାଇବ ସେଠ ସମାଧାନ ପାଇଁ ସ୍ୱୀକାର କଲେ । ଜଣେ ମଧ୍ୟସ୍ଥ ନିରୂପିତ ହେଲେ । ତାଙ୍କ ଆଗରେ ମକଦ୍ଦମାର ବିଚାର ଆରମ୍ଭ ହେଲା ଓ ଦାଦା ଅବଦୁଲ ମକଦ୍ଦମାରେ ଜୟୀ ହେଲେ ।

କିନ୍ତୁ ସେଥିରେ ମୋର ତୃପ୍ତି ଲାଭ ହେଲା ନାହିଁ । ଅବଦୁଲ ଯଦି ହଠାତ୍ ତାଙ୍କର ପାଉଣା ଆଦାୟ କରିବାକୁ ବସନ୍ତି, ତାହାହେଲେ ତ୍ୟାଇବ ସେଠଙ୍କ ପକ୍ଷେ ସମୁଦାୟ ଧନ ଏକା ଥରକେ ଦେବା ଅସମ୍ଭବ ହେବ । ଦକ୍ଷିଣ ଆଫ୍ରିକାସ୍ଥ ପୋରବନ୍ଦର ମିମାନ ମାନଙ୍କ ମଧ୍ୟରେ ଏହିପରି ଗୋଟିଏ ଆଇନ ଥାଏ ଯେ ଋଣଧନ ପରିଶୋଧ ନକରି ପାରିଲେ ମରଣ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ୩୭୦୦୦ ପଉଣ୍ଡ ଓ ମକଦ୍ଦମାର ଖରଚ ଧନ ପ୍ରଭୃତି ଏକାଥରକେ ପରିଶୋଧ କରିବା ତ୍ୟାଇବ ସେଠଙ୍କ ପକ୍ଷେ ନିତାନ୍ତ ଅସମ୍ଭବ କଥା । ତାଙ୍କର ଧନରୁ ପାହୁଲାଏ ସୁଦ୍ଧା ଉଣା ନକରି ଋଣ ପରିଶୋଧ କରିବା ତ୍ୟାଇବ ସେଠଙ୍କର ଉଦ୍ଦେଶ୍ୟ; ଋଣୀ ରୂପେ ପରିଚିତ ହେବା ତାଙ୍କର ଇଚ୍ଛା ନୁହେ । ଆଂଶିକ ଭାବରେ ଧନ ନେବା ପାଇଁ ଦାଦା ଅବଦୁଲଙ୍କର ସ୍ୱୀକୃତ ହେଉଛି ତ୍ୟାଇବ ସେଠଙ୍କ ପକ୍ଷେ ଋଣ ପରିଶୋଧର ଏକମାତ୍ର ପନ୍ଥା । ଅବଦୁଲ ସେଥିରେ ସ୍ୱୀକୃତ ହେଲେ । ବେଶି ସମୟ ମଧ୍ୟ ଦେଇଥିଲେ । ଜଣେ ମଧ୍ୟସ୍ଥ ରଖି ତାଙ୍କ ଆଗରେ ମକଦ୍ଦମାର ବିଚାର ନିଷ୍ପତ୍ତି କରିବା ସକାଶେ ମୁଁ ଯେତେ ଦୂର

ଚେଷ୍ଟା କରଥିଲ ତାହା ଅପେକ୍ଷା ଏପରି ଥର ଥରକେ ଧନଟା ଦେବା ପାଇଁ ଯତ୍ନ କରବାକୁ ମୋତେ ଅଧିକ ପରଶ୍ରମ କରବାକୁ ପଡଥିଲା । କିନ୍ତୁ ଉଭୟ ପକ୍ଷ ପରଶେଷରେ ବଡ଼ ଆନନ୍ଦିତ ହେଲେ ଓ ଲୋକେ ମଧ୍ୟ ସେମାନଙ୍କୁ ବେଶି ସମ୍ମାନ ଦେଇଥିଲେ । ମୋର ଆନନ୍ଦର ସୀମା ରହିଲା ନାହିଁ । ଆଇନର ପ୍ରକୃତ ବ୍ୟବହାର କ'ଣ ତାହା ମୁଁ ଶିକ୍ଷା କର ପାର ଥିଲି । ଯାହା ମନୁଷ୍ୟଠାରେ ମହତ ତାହା ମୁଁ ବୁଝି ଥିଲି ଓ ମନୁଷ୍ୟର ଅନ୍ତର ଭିତ୍ତିବ ଠାବରେଇବାରେ ମୋର ଅନୁଭୂତି ଆସିଥିଲା । ମୁଁ ବୁଝିଲି ଯେ ଉଭୟ ପକ୍ଷକୁ ସମାଧାନ କରାଇବା ଜଣେ ଓକିଲର ପ୍ରକୃତ କାର୍ଯ୍ୟ । ଏହି ନୀତି ମୁଁ ମୋର ଅଙ୍ଗରେ ଲଗାଇଥିଲି । ସୁତରାଂ ମୋର କୋଡ଼ିଏ ବର୍ଷର ଓକାଲତି ସମୟରେ ମୁଁ ଶତ ଶତ ମକଦ୍ଦମା ସମାଧାନ କରାଇ ଦେଇଅଛି । ତଦ୍ୱାରା ମୋର କିଛି କ୍ଷତି ହୋଇ ନାହିଁ, ଧନ ମଧ୍ୟ ନଷ୍ଟ ହୋଇନାହିଁ; ଆତ୍ମଗ୍ଲାନିତ ହେବା କଥା ନୁହେଁ ।

## ପଞ୍ଚଦଶ ପରିଚ୍ଛେଦ ।

( ଧର୍ମର ଅନ୍ୱେଷଣ । )

ଖ୍ରିଷ୍ଟିୟାନ ବନ୍ଧୁମାନଙ୍କ ସହିତ ମୋର ଯେ ଅନୁଭୂତି, ପୁନର୍ବାର ସେ ସମ୍ବନ୍ଧେ ଏଠାରେ କିଛି କହି ରଖିବା ଦରକାର ।

ମୋର ଭବିଷ୍ୟତ ସମ୍ବନ୍ଧେ ମିଃ ବେକର ବଡ଼ ଆତୁର ହେଉଥାନ୍ତି । ସେ ମୋତେ ଥରେ ୱେଲିଙ୍ଗଟନ ଧର୍ମ-ସଭାକୁ ନେଇଥିଲେ । ଖ୍ରିଷ୍ଟିୟାନମାନଙ୍କ ମଧ୍ୟରେ ପ୍ରୋଟେଷ୍ଟାଣ୍ଟ ଧର୍ମୀମାନେ

ଏହିପରି ଧର୍ମ-ସଭାର ଆୟୋଜନ କରିଥାନ୍ତି । ଧର୍ମଶିକ୍ଷା ଅଥଚ ଆତ୍ମ-ପବିତ୍ରତା ଲାଭ ଏହି ସମିତିର ମୁଖ୍ୟ ଉଦ୍ଦେଶ୍ୟ। ଏହାକୁ ଧର୍ମର ପୁନରୁତ୍ଥାନ ବୋଲି ମଧ୍ୟ କୁହାଯାଇ ପାରେ । ୱେଲିଙ୍ଗଟନର ଧର୍ମ-ସଭାଟି ଠିକ ଏହି ଧରଣର । ସ୍ୱନାମ ଧନ୍ୟ ରେଭରେଣ୍ଡ ଏଣ୍ଡ୍ରୁ ମୁରେ ଉକ୍ତ ସମିତିର ସଭାପତି ହୋଇଥିଲେ । ସମିତିରେ ଧର୍ମର ମହାତ୍ମ୍ୟ କୀର୍ତ୍ତନ ହେଉଥିବା ଶୁଣି ଏବଂ ସେଥିରେ କପରି ଯେ ଲୋକେ ଉତ୍ସାହର ସହିତ ଯୋଗଦେଇ ଥାନ୍ତି ତାହା ଦେଖି ମୁଁ ବଳେ ୨ ଖ୍ରୀଷ୍ଟଧର୍ମ ଗ୍ରହଣ କରିବ ବୋଲି ମିଃ ବେକର ଭାବିଥିଲେ ।

କିନ୍ତୁ ତାଙ୍କର ଶେଷ ଆଶା ଥିଲା ଉପାସନାରେ ମୋତେ ନିଜର କରିବେ । ଉପାସନାରେ ତାଙ୍କର ଅଟଳ ବିଶ୍ୱାସ । ପବିତ୍ର ହୃଦୟରେ ଯେଉଁ ଉପାସନା କରାଯାଏ ଭଗବାନ ତାହା ଶୁଣନ୍ତି ବୋଲି ତାଂକର ପ୍ରଗାଢ଼ ଧାରଣା । ବ୍ରିଷ୍ଟଲ ନିବାସୀ ଜର୍ଜ ମୁଲର ପ୍ରଭୃତି ବ୍ୟକ୍ତିମାନେ କପରି ଯେ ସାଂସାରିକ ସୁଖ ସୌଭାଗ୍ୟ ପାଇଁ ମଧ୍ୟ କେବଳ ଉପାସନାରେ ସବୁ ନିର୍ଭର କରିଥାନ୍ତି ତାହା ମୋତେ ମିଃ ବେକର କହିଥାନ୍ତି । ଉପାସନାର ମହାତ୍ମ୍ୟ ସମ୍ବନ୍ଧେ ସେ ଥରେ ଯେଉଁ ଯୁକ୍ତି କରିଥିଲେ ତାହା ମୁଁ ନିରପେକ୍ଷ ଭାବରେ ଶୁଣି ପରିଶେଷରେ ତାଂକୁ କହିଲି ଯେ ଯଦି ମୁଁ ପ୍ରାଣରେ ଅନୁଭବ କରେ ତାହାହେଲେ ଖ୍ରୀଷ୍ଟଧର୍ମ ଅବଲମ୍ବନ କରିବା ପାଇଁ ମୋର ଆଉ କିଛି ଅନ୍ତରାୟ ହେବ ନାହିଁ । ହୃଦୟର ଡ଼ାକ ଶୁଣିବା ପାଇଁ ମୁଁ ଅନେକ ଦିନରୁ ଶିଖିଥିଲି ବୋଲି ତାଙ୍କୁ ମୁଁ ମୁକ୍ତ ହୃଦୟରେ ଏହି ପ୍ରତିଶ୍ରୁତି ଦେଇଥିଲି । ସେହି ଡ଼ାକର ଅଧୀନତା ସ୍ୱୀକାର କରିବା ପାଇଁ ମୋତେ ବଡ ଆନନ୍ଦ ଲାଗେ । ତାହାର ବିରୁଦ୍ଧରେ ଯିବା ମୋ ପକ୍ଷେ କଷ୍ଟସାଧ୍ୟ ଓ ଯନ୍ତ୍ରଣା ଦାୟକ ।

ଆମ୍ଭେ ଦୁହେଁ ବ୍ରେଲଙ୍ଗଟନକୁ ଗଲୁଁ । ଜଣେ କଳା ଲୋକଙ୍କୁ ସାଙ୍ଗରେ ନେଇଥିବା ଯୋଗୁଁ ତାଙ୍କୁ ହଇରାଣ ହେବାକୁ ପଡ଼ିଥିଲା । ମୋ ଲାଗି ତାଙ୍କୁ ଅନେକ ସମୟରେ ବେଶି ଅସୁବିଧା ଭୋଗିବାକୁ ପଡ଼ୁଥାଏ । ବ୍ରେଲଙ୍ଗଟନକୁ ଯାଉଁ ଯାଉଁ କୌଣସି ଏକ ରବିବାର ଦିନ ଆମ୍ଭଙ୍କୁ ବାଟରେ ଅବସର ନେବାକୁ ହେଲା । ସେଦିନ ମିଃ ବେକର ପ୍ରଭୃତିଙ୍କର ଅବସର ଦିବସ ( Sabbath ) ସେଦିନ ପ୍ରୟାଣ କରିବା ନିଷେଧ । ଅନେକ କଥାବାର୍ତ୍ତା ପରେ ଷ୍ଟେସନ ହୋଟେଲର ପରିଚାଳକ ମୋତେ ଖାଇବାକୁ ଦେବାପାଇଁ ଅଙ୍ଗୀକାର କଲେ ସତ, କିନ୍ତୁ ଖାଇବା ଘରକୁ ଯିବାପାଇଁ ମୋତେ ଆଦୌ ଅନୁମତି ଦେଲେନାହିଁ । ତଥାପି ମିଃ ବେକର ସହଜରେ ଛାଡ଼ିଦେବା ବ୍ୟକ୍ତି ନୁହନ୍ତି । ହୋଟେଲରେ ଯେ ସମସ୍ତଙ୍କର ସମାନ ଅଧିକାର ଅଛି ଏକଥା ସେ ଧରି ବସିଲେ । କିନ୍ତୁ ତାଙ୍କର ଅସୁବିଧା ମୁଁ ଦେଖି ପାରିଥିଲି । ବ୍ରେଲଙ୍ଗଟନରେ ମଧ୍ୟ ମୁଁ ମିଃ ବେକରଙ୍କ ପାଖରେ ରହିଲି । ମୋଲାଗି ତାଙ୍କର ଯେ କେତେ ଅସୁବିଧା ହେଉଥାଏ ତାହା ସେ ଘୋଡ଼ାଇବାକୁ ଚେଷ୍ଟା କରିବା ସତ୍ତ୍ୱେ ମୁଁ ସେ ସବୁ ଜାଣି ପାରୁଥାଏ ।

ଏହି ଧର୍ମ-ସମାଜରେ ନିଷ୍ଠାପର ଖ୍ରିଷ୍ଟିୟାନମାନେ ଯୋଗ ଦେଇଥିଲେ । ସେମାନଙ୍କ ଈଶ୍ୱର ବିଶ୍ୱାସରେ ମୁଁ ବଡ଼ ପ୍ରୀତ ହୋଇଥିଲି । ରେଭରେଣ୍ଡ ମୁରେଙ୍କ ସହିତ ମୋର ଦେଖା ହୋଇଥିଲା । ମୁଁ ଦେଖିଲି ମୋ ପାଇଁ ବୋଲି ଅନେକ ବ୍ୟକ୍ତି ଉପାସନା କରୁଥିଲେ । ସେମାନଙ୍କ ସ୍ତୁତିରୁ କେତେ ମୋତେ ଭଲ ଲାଗିଲା; ସେଗୁଡ଼ିକ ଶୁଣିବାକୁ ବଡ଼ ମଧୁର ଓ କର୍ଣ୍ଣପ୍ରୀୟ ।

ତିନଦିନ ପର୍ଯ୍ୟନ୍ତ ସଭାର କାର୍ଯ୍ୟ ଲାଗିଥିଲା । ସେହିମାନେ ସେ

ସଭାରେ ଯୋଗ ଦେଇଥିଲେ ସେମାନଙ୍କର ଈଶ୍ୱର ପରାୟଣତା ଦେଖି ମୁଁ ତୃପ୍ତ ହୋଇଥିଲି । କିନ୍ତୁ ମୋର ବିଶ୍ୱାସ ତଥା ଧର୍ମ ଯେ କହିବୁ ବଦଳାଇବି ତାର କାରଣ ମୁଁ ଦେଖି ପାରିଲି ନାହିଁ । କେବଳ ଖ୍ରିଷ୍ଟ-ଧର୍ମ ଅବଲମ୍ବନ କଲେ ମୁଁ ସ୍ୱର୍ଗକୁ ଯିବି କିମ୍ବା ମୁକ୍ତି ଲଭିବି ବୋଲି ମୋର ଆଦୌ ବିଶ୍ୱାସ ନଥିଲା । ମୋର କେତେ ଜଣ ଉଦାର ହୃଦୟ ଖ୍ରିଷ୍ଟିୟାନ ବନ୍ଧୁମାନଙ୍କୁ, ଏହିକଥା କହିବାରୁ ସେମାନେ ଆଚମ୍ବିତ ହେଲେ । କିନ୍ତୁ ମୁଁ ବା କଣ କରିପାରେ ?

ମୋର ଯାତନା ସବୁ ଗୁଢ଼ତର । ଯିଶୁ ଯେ ଭଗବାନଙ୍କର ଏକ ମାତ୍ର ସନ୍ତାନ ଏବଂ ତାଙ୍କୁ ଯେଉଁମାନେ ବିଶ୍ୱାସ କରନ୍ତି ସେମାନେ କେବଳ ଅଖଣ୍ଡ ଜୀବନ ଲାଭ କରନ୍ତି ବୋଲି ମୁଁ ବିଶ୍ୱାସ କରି ପାରି ନଥିଲି । ଯଦି ଭଗବାନଙ୍କର ପୁତ୍ର ଅଛନ୍ତି, ତାହାହେଲେ ଆମ୍ଭେ ସମସ୍ତେତ ଭଗବାନଙ୍କ ସନ୍ତାନ; ଯିଶୁ ଯଦି ଭଗବାନଙ୍କ ସ୍ୱରୂପ ଅଟନ୍ତି କିମ୍ବା ସ୍ୱୟଂଭଗବାନ ଅଟନ୍ତି ତେବେ ସମଗ୍ର ମାନବ ଜାତି ଈଶ୍ୱରଙ୍କ ରୂପାନ୍ତର ମାତ୍ର । ସୁତରାଂ ମୋର ଯୁକ୍ତି ଅନୁସାରେ ଯେତେଦୂର ମୁଁ ଗବେଷଣା କରି ପାରିଥିଲି ତଦ୍ୱାରା ମୋର ବିଶ୍ୱାସ ହେଲାନାହିଁ ଯେ ଯିଶୁଖ୍ରିଷ୍ଟ ତାଙ୍କର ଜୀବନ ଉତ୍ସର୍ଗ କରି ଜଗତର ପାପ ବିଦୂରିତ କରି ଅଛନ୍ତି ।

ଆଲଙ୍କାରିକ ଭାବେ ସେଥିରେ ସାମାନ୍ୟ କିଛି ସତ୍ୟ ଥାଇପାରେ । ଖ୍ରିଷ୍ଟିୟାନମାନଙ୍କର ବିଶ୍ୱାସ ଯେ କେବଳ ମନୁଷ୍ୟର ଆତ୍ମାଥାଏ, ଅନ୍ୟ ଜୀବର ନଥାଏ, ସେ ମଲେ ପୁନର୍ବାର ଜନ୍ମ ହୁଏନାହିଁ-ମୋର କିନ୍ତୁ ସମ୍ପୂର୍ଣ୍ଣ ବିପରୀତ ବିଶ୍ୱାସ । ଯିଶୁଙ୍କୁ କେବଳ ଜଣେ ତ୍ୟାଗୀ ବୀର କିମ୍ବା ଅଧାର୍ମିକ ଗୁରୁ ବୋଲି ମୁଁ ଗ୍ରହଣ କରିଥିଲି । ସେ ଏକମାତ୍ର ପବିତ୍ର ପୁରୁଷ ବୋଲି ମୋର ମନକୁ ମାନି ନଥିଲା । ଯିଶୁଙ୍କର ପ୍ରାଣ ବିସର୍ଜନ ଜଗତରେ

ଏକ ମହତ ଦୃଷ୍ଟାନ୍ତ; କିନ୍ତୁ ସେଥିରେ କୌଣସି ଆଶ୍ଚର୍ଯ୍ୟ ଜନକ କଥା କିମ୍ବା ଈଶ୍ୱରଙ୍କ ମୂର୍ତ୍ତି ଥିଲା ବୋଲି ମୁଁ ବିଶ୍ୱାସ କରି ପାରୁନଥିଲି । ନିଷ୍ଠାପର ଖ୍ରିଷ୍ଟିୟାନମାନଙ୍କ ଜୀବନରୁ ମଧ୍ୟ ମୁଁ କିଛି ଶିକ୍ଷାଲାଭ କରି ପାରିନଥିଲି । ଖ୍ରିଷ୍ଟିୟାନମାନଙ୍କ ସଂସ୍କାର ସମ୍ବନ୍ଧେ ମୁଁ ଯାହା ଶୁଣେ ଅନ୍ୟମାନଙ୍କ ଜୀବନରେ ମଧ୍ୟ ଠିକ ସେହି ଧରଣର ସଂସ୍କାର ଦେଖିଥାଏ । ଦାର୍ଶନିକ ମତରେ ଦେଖିବାକୁ ଗଲେ ଖ୍ରିଷ୍ଟିୟାନମାନଙ୍କ ନୀତିରେ ଅସାଧାରଣ ବୋଲି କିଛି ନଥିଲା । ତ୍ୟାଗ ସ୍ୱୀକାର କଥା ଆଲୋଚନା କରିବାକୁ ଯାଇ ମୋର ବିଶ୍ୱାସ ହୋଇଥିଲା ଯେ ହିନ୍ଦୁମାନେ ଖ୍ରିଷ୍ଟିୟାନ-ମାନଂକ ଅପେକ୍ଷା ବେଶି ତ୍ୟାଗଶୀଳ । ସୁତରାଂ ଖ୍ରିଷ୍ଟିୟାନ ଧର୍ମ ଏକମାତ୍ର ପବିତ୍ର ଧର୍ମ କିମ୍ବା ଧର୍ମମାନଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟ ବୋଲି ମୁଁ ମାନି ପାରି ନଥିଲି ।

ମୋର ଏହି ମାନସିକ ଆଲୋଡ଼ନ ସମ୍ବନ୍ଧେ ଖ୍ରିଷ୍ଟିୟାନ ବନ୍ଧୁମାନଙ୍କୁ ସୁବିଧା ଦେଖି କହୁଥାଏ; କିନ୍ତୁ ସେମାନେ ମୋତେ ତୃପ୍ତିକର ଉତ୍ତର ଦେଇ ପାରୁନଥାନ୍ତି ।

ଖ୍ରିଷ୍ଟ ଧର୍ମ କେବଳ ପବିତ୍ର କିମ୍ବା ସର୍ବୋତ୍କୃଷ୍ଟ ବୋଲି ଗ୍ରହଣ କରିନଥିଲି ସତ, କିନ୍ତୁ ହିନ୍ଦୁଧର୍ମ ମଧ୍ୟ ଏକମାତ୍ର ପବିତ୍ର ଓ ଉତ୍କୃଷ୍ଟ ଧର୍ମ ବୋଲି ମୋର ଧାରଣା ହୋଇନଥିଲା । ହିନ୍ଦୁମାନଙ୍କର ଅଭାବ ଓ ସ୍ଖଳନ ସବୁ ମୁଁ ଦେଖି ପାରୁଥିଲି । ଅସ୍ପୃଶ୍ୟତା ଯଦି ହିନ୍ଦୁଧର୍ମର ଏକ ଅଙ୍ଗ ତାହା ତେବେ ବଡ଼ ଜଘନ୍ୟ କଥା ବୋଲି ମୋର ବିଶ୍ୱାସ ଥିଲା । ଅସଂଖ୍ୟ ଜାତି ଓ ବର୍ଣ୍ଣର କାରଣ କଣ ତାହା ମୁଁ ବୁଝି ପାରିନଥିଲି । ବେଦ ଯେ ଭଗବାନଙ୍କ ମୁଖ ନିସୃତ ବୋଲି କହନ୍ତି ତାର ଅର୍ଥ କଣ ? ତାହାଯଦି

ଭଗବାନଙ୍କ ମୁଖ ନୁହନ୍ତି, ତାହାହେଲେ ବାଇବଲ ଓ କୋରାନ ମଧ୍ୟ କାହିଁକି ବା ସେହିପରି ନହେବ ?

ଖ୍ରିଷ୍ଟିୟାନ ବନ୍ଧୁମାନେ ଯେପରି ମୋତେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରିବା ପାଇଁ ଚେଷ୍ଟା କରୁଥାନ୍ତି ମୁସଲମାନ ବନ୍ଧୁମାନଙ୍କର ମଧ୍ୟ ମୋତେ ମୁସଲମାନ କରିବା ପାଇଁ ସେହିପରି ଚେଷ୍ଟା ଲାଗିଥାଏ । ଇସ୍ଲାମ ପଢ଼ିବା ପାଇଁ ଅବଦୁଲ ସେଠ ମୋତେ ବାରମ୍ବାର ଅନୁରୋଧ କରିଥାନ୍ତି ଓ ସେହି ଧର୍ମର ମାଧୁର୍ଯ୍ୟ ସମ୍ବନ୍ଧେ ବେଳେବେଳେ ମୋତେ କହନ୍ତି ।

ମୋର ଏ ସବୁ ଦୁରବସ୍ଥା ସମ୍ବନ୍ଧେ ରାୟଚାନ୍ଦ ଭାଇଙ୍କ ଠାକୁ ଖଣ୍ଡିଏ ପତ୍ର ଲେଖିଲି । ଭାରତର ଅନ୍ୟାନ୍ୟ ଧର୍ମଜ୍ଞ ମାନଙ୍କଠାକୁ ମଧ୍ୟ ଚିଠି ଲେଖା ଲେଖି କରି ସେମାନଙ୍କ ଠାରୁ ଉତ୍ତର ପାଇଥିଲି । ରାୟଚାନ୍ଦ ଭାଇଙ୍କ ଚିଠି ପଢ଼ି ମୋ ମନରେ ଟିକିଏ ସାନ୍ତ୍ୱନା ଆସିଥିଲା । ବୃଥାରେ ଅଧୀର ନହୋଇ ହିନ୍ଦୁଧର୍ମ ସମ୍ବନ୍ଧେ ବହୁତ ଗବେଷଣା ପୂର୍ବକ ପଢିବା ପାଇଁ ସେ ମୋତେ ଉପଦେଶ ଦେଇଥିଲେ । ତାଙ୍କ ଚିଠିର ଏକ ସ୍ଥାନରେ ସେ ଲେଖିଥିଲେ:—"ମୁଁ ନିରପେକ୍ଷ ଭାବେ କହି ପାରେ ଯେ ହିନ୍ଦୁଧର୍ମରେ ଯେପରି ମହତ ଭାବ ଦେଖିବାକୁ ମିଳେ, ଅନ୍ୟ କୌଣସି ଧର୍ମରେ ସେହିପରି ନାହିଁ ବୋଲି ମୋର ଧାରଣା ।"

ସେଲ ଅନୁଦିତ କୋରାନ କିଣି ପଢିବାକୁ ଆରମ୍ଭ କଲି । ଇସ୍ଲାମ ସମ୍ବନ୍ଧେ ଅନ୍ୟାନ୍ୟ ବହି ସବୁ ମଧ୍ୟ କିଣି ଆଣିଲି । ଇଂଲଣ୍ଡର ଖ୍ରିଷ୍ଟିୟାନ ବନ୍ଧୁମାନଙ୍କ ସହିତ ଚିଠି ପତ୍ର ଲେଖା ଲେଖି କଲି । ସେମାନଙ୍କ ମଧ୍ୟରୁ ଜଣେ ମୋତେ ଏଡ୍‌ୱାର୍ଡ ମେଇଟଲଣ୍ଡଙ୍କ ସହିତ ପରିଚିତ କରାଇ ଦେଲେ । ତାହାଙ୍କ ସହିତ ମୋର ଚିଠି ଲେଖା ଲେଖି ହେଲା । ସେ 'ପୂର୍ଣ୍ଣାଙ୍ଗ ପଥ' ( Perfect Way ) ଶୀର୍ଷକ ବହି

ଖଣ୍ଡିଏ ମୋଠାକୁ ପଠାଇ ଥିଲେ । ବହୁତ ପ୍ରଚଳିତ ଖ୍ରିଷ୍ଟିୟାନ ଧର୍ମର ବିପରୀତ ଲେଖା । "ବାଇବଲର ନୂତନ ଟୀକା" ଶୀର୍ଷକ ଆଉ ଖଣ୍ଡିଏ ବହି ବଧ ସେ ପଠାଇ ଦେଇଥିଲେ । ଦୁଇଟି ଯାକ ବହି ମୋତେ ବଡ଼ ଭଲ ଲାଗିଲା । ସେଥିରେ ହିନ୍ଦୁଧର୍ମର ପକ୍ଷ ସମର୍ଥନ ହୋଇଅଛି ବୋଲି ମୋର ଧାରଣା ହେଲା । ଟଲଷ୍ଟୟଙ୍କ 'ଭଗବାନଙ୍କ ରାଜ୍ୟ ତୁମ ଭିତରେ' ( The Kingdom of God is within you ) ବହିଟି ପଢ଼ି ମୁଁ ବିମୁଗ୍ଧ ହୋଇଥିଲି । ମୁଁ ସେଥିରେ ଯାହା ପଢ଼ିଲି ତାହା ମୋମନରେ ଲାଗି ରହିଗଲା । ଏହି ବହି ଲିଖିତ ସ୍ୱାଧୀନ ଚିନ୍ତା, ନୈତିକ ଭାବ ଓ ସତ୍ୟ ନିଷ୍ଠା ଆଗରେ ମିଃ କୋଟସ୍ ମୋତେ ଯେଉଁ ସବୁ ବହି ଦେଇଥିଲେ ସେ ସବୁ କିଛି ନୁହେ ।

ଖ୍ରିଷ୍ଟିୟାନ ବନ୍ଧୁମାନେ ଯାହା ଭାବ ନଥିଲେ ମୁଁ ତାହା ପଢ଼ିବାକୁ ବସିଲି । ଏଡୱାର୍ଡ ମେଇଟଲଣ୍ଡଙ୍କ ସହିତ ମୋର ଅନେକ ଦିନ ପର୍ଯ୍ୟନ୍ତ ଚିଠି ଲେଖା ଲେଖି ହୋଇଥିଲା---ଆଉ ରାୟଚାନ୍ଦ ଭାଇଙ୍କ ମରଣ ପର୍ଯ୍ୟନ୍ତ ମୁଁ ତାଙ୍କ ଠାକୁ ଚିଠି ଲେଖୁଥାଏ । ସେ ପଠାଇଥିବା ବହି କେତୋଟି ମୁଁ ପଢ଼ିଲି । ସେଥି ମଧ୍ୟରୁ 'ପଞ୍ଚୀକରଣ' 'ମଣିରତ୍ନମାଳା' 'ମୁମୁକ୍ଷୁ ପ୍ରକରଣ' ହରିଭଦ୍ର ସୂରି ଲିଖିତ 'ଷଡ୍‌ଦର୍ଶନ ସମୁଚ୍ଚୟ' ଇତ୍ୟାଦି କେତୋଟି ବହି ଏଠାରେ ଉଲ୍ଲେଖ ଯୋଗ୍ୟ ।

ମୋର ଖ୍ରିଷ୍ଟିୟାନ ବନ୍ଧୁମାନେ ଯାହା ଭାବ ନଥିଲେ ମୁଁ ସେହି ବାଟ ଦେଖି ବସିଲି ସତ, କିନ୍ତୁ ସେମାନେ ମୋଠାରେ ଧର୍ମର ଭାବ ଜାଗରିତ କରାଇ ଥିବା ଯୋଗୁଁ ମୁଁ ସେମାନଙ୍କ ଠାରେ ଚିରଋଣୀ । ମୁଁ ସେମାନଙ୍କର ସମ୍ବନ୍ଧ ଭୁଲିବି ନାହିଁ । ଆଉ ଯେତେ ବର୍ଷ ରହିଲି ସେ ମଧ୍ୟରେ ଆହୁରି ଅନେକ ନୂତନ ବନ୍ଧୁ ପାଇଥିଲି ।

# ଷୋଡଶ ପରିଚ୍ଛେଦ ।

( ମନୁଷ୍ୟ ବାସ୍ଥ୍ୟରେ ନେଥ ଭାଙ୍କ ଦ ଭ । )

———o———

ମକଦ୍ଦମାଟି ଶେଷ ହୋଇ ଯିବା ଯୋଗୁଁ ପ୍ରିଟୋରିଆରେ ମୁଁ ଆଉ ରହିବା ପାଇଁ କିଛି କାରଣ ନଥିଲା । ସୁତରାଂ ମୁଁ ଡରବନକୁ ଯାଇ ଘରକୁ ଫେରିବା ସକାଶେ ଯୋଗାଡ଼ କରିବା ପାଇଁ ଆରମ୍ଭ କଲି । କିନ୍ତୁ ମୋର ବିଦାୟ ଉପଲକ୍ଷେ ଉତ୍ସବ ନ କରି ମୋତେ ଖାଲି ଛାଡ଼ି ଦେବା କଥା ଦାଦା ଅବଦୁଲଙ୍କ ପରି ଲୋକଙ୍କ ଠାରେ ସମ୍ଭବ ନପାରେ । ସିଡ଼ନହେମଠାରେ ମୋ ଲାଗି ସେ ଗୋଟିଏ ବିଦାୟ ଭୋଜର ଯୋଗାଡ଼ କରିଥିଲେ ।

ସେଠାରେ ଦିନ ଯାକ କଟାଇବା ପାଇଁ ନିଷ୍ପତ୍ତି କରି ଯାଇଥିଲା । ସେ ଦିନ ମୁଁ ଯେଉଁ ସବୁ ଖବର କାଗଜ ପାଇଥିଲି ସେ ମଧ୍ୟରୁ ଗୋଟିଏ ପଢ଼ି ପଢ଼ି ଦେଖିଲି, 'ଭାରତୀୟ ଭୋଟ କ୍ଷମତା' ସମ୍ବନ୍ଧେ ଲେଖାଅଛି । ନେଟାଲ ବ୍ୟବସ୍ଥାପକ ପରିଷଦ ପାଇଁ ସଦସ୍ୟ ବାଛିବା ସକାଶେ ଭାରତୀୟମାନଙ୍କ କ୍ଷମତା ଉଠାଇ ନେବା ପାଇଁ ବ୍ୟବସ୍ଥାପକ ସଭାରେ ଯେଉଁ ବିଲ ଆଗତ କରି ଯାଉଥିଲା ସେ ସମ୍ବନ୍ଧେ ଉକ୍ତ ପତ୍ରିକାରେ ଲେଖା ଯାଇଥିଲା । ମୁଁ ଉକ୍ତ ବିଲ ସମ୍ବନ୍ଧେ କିଛି ଜାଣି ନଥିଲି ଓ ସେଠାରେ ଯେଉଁ ବନ୍ଧୁମାନେ ରୁଣ୍ଡ ହୋଇଥିଲେ ସେମାନେ ମଧ୍ୟ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲେ ।

ଅବଦୁଲ ସେଠଙ୍କୁ ମୁଁ ସେ ବିଲ ସମ୍ବନ୍ଧେ ପଚାରିବାରୁ ସେ କହିଲେ, "ଏସବୁ ବିଷୟ ସମ୍ବନ୍ଧେ ଆମ୍ଭେମାନେ କଣ ବୁଝିବୁଁ ? ଯେଉଁ-

ସବୁ କଥା ଆମର ବେପାରରେ ବାଧା ଦିଏ ତାହା ସବୁ ଆମେ ବୁଝିଥାଉଁ ।
ଆପଣ ଜାଣିଛନ୍ତି ଅରେଞ୍ଜ ଫ୍ରି ଷ୍ଟେଟରେ ଆମର ସବୁ ବ୍ୟବହାର ଭାଙ୍ଗି ଯାଇଅଛି । ଆମେମାନେ ସେଥିଲାଗି ଆନ୍ଦୋଳନ କଲୁଁ, କିନ୍ତୁ କିଛି ଫଳ ହେଲାନାହିଁ । ପଢା ପଢି ନକରିଥିବା ଯୋଗୁଁ ଆମେମାନେ ଛେଟା ଲୋକ ସଦୃଶ୍ୟ । ବଜାରର ଦରଦାମ ବୁଝିବାଂପାଇଁ କେବଳ ଆମେମାନେ ପତ୍ରିକା ପଢି ଥାଉଁ । ଆମେ ଆଇନ ସମ୍ବନ୍ଧେ କଣ ଜାଣିବୁଁ ? ୟୁରୋପିଅନ ଓକିଲ ମାନେ କେବଳ ଆମର ଆଖି କାନ କହିଲେ ଚଳେ ।”

ମୁଁ—“କିନ୍ତୁ ଏଠାରେ ଜନ୍ମ ଗ୍ରହଣ କରି ଓ ପଢ଼ା ପଢ଼ି କରି ଅନେକ ତରୁଣ ଭାରତୀୟ ଅଛନ୍ତି ସେମାନେ କଣ ଆପଣଙ୍କୁ ସାହାଯ୍ୟ କରି ନଥାନ୍ତି ?”

“ସେମାନେ” ବୋଲି ଅଶ୍ଚର୍ଯ୍ୟର ସହିତ ଦାଦା ଅବଦୁଲ ଉଚ୍ଚାରି କଲେ ଓ କହିଲେ, “ସେମାନେ କେବେହେଲେ ଆମକୁ ଦେଖିବାକୁ ଆସନ୍ତି ନାହିଁ । ଆଉ ସତ କହୁଛି ଯେ ଆମେମାନେ ମଧ୍ୟ ସେମାନଙ୍କୁ ଖାତିର କରି ନଥାଉଁ । ଖ୍ରିଷ୍ଟିୟାନ ହୋଇଥିବା ଯୋଗୁଁ ସେମାନେ ଗୋରା ଧର୍ମ ପ୍ରଚାରକମାନଙ୍କର ଅଧୀନ । ଏଥିଡ଼େ ଉକ୍ତ ପ୍ରଚାରକମାନେ ସର-କାରଙ୍କ ଅଦେଶ ମାନି ଚଳନ୍ତି ।”

ଏହା ଶୁଣି ମୋର ଆଖି ଫିଟିଲା । ମୁଁ ଭାବିଲି, ଏହି ଶ୍ରେଣୀର ଲୋକଙ୍କୁ ଆମର ବୋଲି ଦାବି କରିବାକୁ ହେବ । ଏହା କଣ ଖ୍ରିଷ୍ଟ ଧର୍ମର ଅର୍ଥ ? ଖ୍ରିଷ୍ଟଧର୍ମ ଗ୍ରହଣ କଲେ ବୋଲି କଣ ସେମାନେ ଆଉ ଭାରତୀୟ ନୁହନ୍ତି ?

କିନ୍ତୁ ମୁଁ ସେତେବେଳେ ଘରକୁ ଫେରିବା ସମୟ । ସୁତରାଂ ଏ ବିଷୟ ନେଇ ମୋ ମନରେ ଯେ କେତେ କଥା ଖେଳି ଯାଉଥିଲା ତାହା

ପ୍ରକାଶ କରିବା ପାଇଁ ଇଚ୍ଛା କଲନାହିଁ । କିନ୍ତୁ ଅବଦୁଲ ସେଠଙ୍କ, ଏତିକି ମାତ୍ର କହିଲ, "ଯଦି ଏହି ବିଲଟି ଆଇନରେ ପରିଣତ ହୁଏ ତାହାହେଲେ ଆମର ଅବସ୍ଥା ଅତୀବ ଶୋଚନୀୟ ହୋଇ ପଡ଼ିବ । ତାହା ଆମ ଆତ୍ମ-ସମ୍ମାନର ମୂଳ ଚ୍ଛେଦନ କରିବ ।"

ସେଠ୍ ଅବଦୁଲ—"ହୋଇ ପାରେ, କିନ୍ତୁ ଏହି ଭୋଟ ବିଷୟ କିପରି ଉତ୍ପତ୍ତି ହେଲା ମୁଁ ସେ ସମ୍ବନ୍ଧେ କହିବି । ଆମେମାନେ ସେ ସମ୍ବନ୍ଧେ କିଛି ଜାଣି ନଥିଲୁଁ । କିନ୍ତୁ ଖ୍ୟାତନାମା ଓକିଲ ମିଃ ଏସକୁମ୍ବ ଆମମାନଙ୍କୁ ସେ ବିଷୟରେ କହିଲେ । ସେ ଜଣେ ବଡ଼ ଲଢିବା ଲୋକ । ହ୍ୱାରଫର ଇଞ୍ଜିନିଅର ତାଙ୍କର ଭୋଟ ସବୁ ନେଇ ତାଙ୍କ ନିର୍ବାଚନରେ ହରାଇ ପାରନ୍ତି, ବୋଲି ତାଙ୍କର ଭୟ ହେଲା । ସୁତରାଂ ସେ ଆମର ଦାବୀ ସମ୍ବନ୍ଧେ ଆମକୁ କହିଲେ, ଓ ତାଙ୍କର ପ୍ରରୋଚନାରେ ଆମେମାନେ ଭୋଟର ତାଲିକାରେ ନାମ ଲେଖାଇଲୁଁ ଓ ତାଙ୍କ ପାଇଁ ଭୋଟ ଦେଲୁଁ । ଆପଣ ବୁଝିପାରୁଥିବେ ଆମେମାନେ ଭୋଟ ଦେବା କଥାରେ ବେଶି ଉପାଦେୟତା ଦେଖି ପାରୁନାହୁଁ । ଆପଣ କିନ୍ତୁ ସେଥିରେ ବେଶି ମୂଲ୍ୟ ଦେଖି ପାରୁଛନ୍ତି । ଆପଣ ଯାହା କହୁଛନ୍ତି ଆମେ ବୁଝି ପାରୁଚୁଁ । ଆଚ୍ଛା, ତେବେ ଆପଣ କି ଉପଦେଶ ଦେବାକୁ ଚାହାଁନ୍ତି ?"

ଅନ୍ୟାନ୍ୟ ବନ୍ଧୁମାନେ ମନଯୋଗ କରି ଆମର କଥାବାର୍ତ୍ତା ଶୁଣୁଥାନ୍ତି । ସେମାନଙ୍କ ମଧ୍ୟରୁ ଜଣେ କହିଲେ, 'କଣ କରିବାକୁ ହେବ ମୁଁ କହିବି ? ଭାରତକୁ ଯିବା ପାଇଁ ଆପଣ ଯେଉଁ ଜାହାଜ ଟିକଟ ଏବେ କିଣି ଅଛନ୍ତି ତାହା ଫେରାଇ ଦେଇ ଆଉ ଏକ ମାସ ପର୍ଯ୍ୟନ୍ତ ଏଠାରେ ରହନ୍ତୁ; ଆପଣ ଯେପରି ଆମମାନଙ୍କୁ କହିବେ ଆମେ ସେପରି ଲଢିବୁଁ ।"

ସମସ୍ତେ ମିଶି ଏକ ସ୍ୱରରେ କହିଲେ "ସତ କଥା, ଅବଦୁଲ

ସେଠ ! ଆପଣ ଗାନ୍ଧୀ ଭାଇଙ୍କୁ ଅଟକାଇ ରଖିବାକୁ ହେବ ।”

ସେଠଙ୍କ ବଡ଼ ଚତୁର ଲୋକ । ସେ କହିଲେ, “ମୁଁ ଏବେ ତାଙ୍କୁ ରଖି ନପାରେ । ତାଙ୍କୁ ରଖାଇବା ସକାଶେ ମୋର ଯେତିକ ଅଧିକାର ଅଛି, ଆପଣମାନଙ୍କର ମଧ୍ୟ ସେତିକ ଅଧିକାର ଅଛି । କିନ୍ତୁ ଆପଣମାନେ ପ୍ରକୃତ କଥା କହୁଛନ୍ତି, ଆସନ୍ତୁ ଆମ୍ଭେମାନେ ସମସ୍ତେ ମିଶି ଏଠାରେ ରହିବା ପାଇଁ ତାଙ୍କୁ କହିବା । କିନ୍ତୁ ସେ ଜଣେ ବାରିଷ୍ଟର ଏ କଥା ଆପଣମାନେ ମନେ ରଖିବାକୁ ହେବ । ତାଙ୍କର ଖରଚ ବିଷୟ ? ”

ମୋର ଖରଚ କଥା ଶୁଣି ମୋତେ ବଡ଼ କଷ୍ଟ ବୋଧହେଲା । ମୁଁ ବାଧା ଦେଇ କହିଲି, “ଅବଦୁଲ ସେଠ ! ସେ ବିଷୟ ନେଇ ଭାବିବା ଦରକାର ନାହିଁ । ଲୋକହିତକର କାମ କରିବାପାଇଁ ପଇସା ନିଆଯାଏ ନାହିଁ । ମୁଁ ଯଦି ରହେ, ତାହାହେଲେ ଜଣେ ସେବକ ଭଳିଆ ରହିବ । ଏବଂ ଆପଣ ଜାଣିଛନ୍ତି ମୁଁ ଏହି ସବୁ ବନ୍ଧୁମାନଙ୍କ ସହିତ ପରିଚିତ ନୁହେ । ଆପଣମାନେ ଯଦି ବିଶ୍ୱାସ କରନ୍ତି ଯେ ସେମାନେ ଆମ ସହିତ ମିଶି କାମ କରିବେ, ତାହାହେଲେ ମୁଁ ଅଧିକ ମାସେ ରହିବା ପାଇଁ ପ୍ରସ୍ତୁତ ଅଛି । କିନ୍ତୁ ଗୋଟିଏ କଥା, ଆପଣମାନେ ମୋତେ ପଇସା ପତ୍ର ନଦେଲେ ମଧ୍ୟ ଆମ୍ଭେମାନେ ଯେଉଁ କାର୍ଯ୍ୟ କରିବା ପାଇଁ ଭାବୁଛେ, ସେଥିଲାଗି ପାଣ୍ଠି ନରଖିଲେ ଚଳିବ ନାହିଁ । ଟେଲିଗ୍ରାମ ପଠାଇବାକୁ ହେବ, ଛପା ଛପି କାର୍ଯ୍ୟ ମଧ୍ୟ କରି ଯାଇପାରେ, କୌଣସି ସ୍ଥାନକୁ ଯିବା ପାଇଁ ହେବ, ସ୍ଥାନୀୟ ଓକିଲମାନଙ୍କ ସହିତ ମଧ୍ୟ ପରାମର୍ଶ କରିବାକୁ ହୋଇ ପାରେ ଓ ଆପଣଙ୍କର ଆଇନରେ ମୋର ପ୍ରବେଶ ନଥିବା ଯୋଗୁଁ ବେଳେ ବେଳେ ଦେଖିବା ପାଇଁ ମୁଁ କେତେ ଖଣ୍ଡ ଆଇନ ବହି ମଧ୍ୟ କିଣିବାକୁ ହେବ । ପଇସା ନଧରି ଏସବୁ କରିବା ଅସମ୍ଭବ ଓ ଜଣେ ଲୋକ ଦ୍ୱାରା ମଧ୍ୟ ଏହି

କାର୍ଯ୍ୟ ହୋଇ ନପାରେ, ଏହା ଜଣା ଶୁଣା କଥା । ତାଙ୍କୁ ସାହାଯ୍ୟ କରିବା ପାଇଁ ସମସ୍ତେ ଅଗ୍ରସର ହେବାକୁ ପଡିବ ।"

ସମସ୍ତେ ଏକସ୍ୱରରେ କହିଲେ, "ଅଲ୍ଲା ବଡ ଶକ୍ତିଶାଳୀ ଓ ଦୟାଳୁ । ପଇସା ସଂଗ୍ରହ ହୋଇଯିବ, ଆପଣ ଯେତେ କର୍ମୀ ଲୋଡିବେ ସେତେ ଆସିବେ । ଦୟା ପୂର୍ବକ ଆପଣ ଏଠାରେ ରହିବା ପାଇଁ ସ୍ୱୀକାର କରନ୍ତୁ, ଆଉ ସବୁ କରିଦେବ ।"

ବିଦାୟ ଉତ୍ସବ ଲାଗି ଯେଉଁ ସଭା ହୋଇଥିଲା ତାହା କାର୍ଯ୍ୟକାରୀ କମିଟି ରୂପେ ପରିଣତ ହେଲା । ଶୀଘ୍ର ଖିଆପିଆ ଶେଷ କରି ଘରକୁ ଫେରି ଯିବା ପାଇଁ ମୁଁ ପ୍ରସ୍ତାବ କଲି । ସେହି ସଂଗ୍ରାମରେ କପରି ଲଢିବାକୁ ହେବ ସେ କଥା ନେଇ ମୁଁ ମନେ ମନେ ଭାବିବାକୁ ଲାଗିଲି । ଭୋଟ ଦେବା ଲୋକଙ୍କ ତାଲିକାରେ ଯେଉଁମାନେ ଥିଲେ ସେମାନଙ୍କର ନାଆଁ ସବୁ ବୁଝି ନେଲି ଓ ଆଉ ମାସକ ପାଇଁ ସେଠାରେ ରହିବି ବୋଲି ନିଷ୍ପତ୍ତି କଲି ।

ଭଗବାନ ମୋର ଦକ୍ଷିଣ ଆଫ୍ରିକା ଜୀବନର ଭିତ୍ତି ଏହିପରି ସ୍ଥାପନ କରିଥିଲେ ଓ ଜାତୀୟ ଆତ୍ମ ସମ୍ମାନ ରକ୍ଷା ଲାଗି ଯୁଦ୍ଧ କରିବାକୁ ମଞ୍ଜି ପୋତି ଥିଲେ ।

## ସପ୍ତଦଶ ପରିଚ୍ଛେଦ ।

( ନେଟାଲ ଅବସ୍ଥାନ । )

୧୮୯୩ ସାଲରେ ନେଟାଲସ୍ଥ ଭାରତୀୟମାନଙ୍କ ମଧ୍ୟରେ ଶ୍ରେଷ୍ଠ ହାଜି ମହମ୍ମଦ ହାଜି ଦାଦା ପ୍ରଧାନ ନେତାଥିଲେ । ଧନ ବିଷୟ

ନୈଇ ଦେଖିବାକୁ ଗଲେ ସେଠ ଅବଦୁଲ୍ ହାଜି ଆଦାମଙ୍କ ସମ୍ମାନ ବେଶୀ । କିନ୍ତୁ ସାଧାରଣ କାର୍ଯ୍ୟ କ୍ଷେତ୍ରରେ ସେଠହାଜି ଦାଦାଙ୍କ କଥାକୁ ସମସ୍ତେ ଖାତିର କରୁଥାନ୍ତି । ସୁତରାଂ ତାଙ୍କର ସଭାପତିତ୍ୱରେ ଅବଦୁଲ ସେଠଙ୍କ ଘରେ ଗୋଟିଏ ସଭାର ଯୋଗାଡ଼ କରାଗଲା । ଭୋଟ ବିଷୟକୁ ନେଇ ଯେଉଁ ବିଲ ପାଶ ହେବାକଥା ଥିଲା ତାହାର ପ୍ରତିବାଦ କରିବା ପାଇଁ ଉକ୍ତ ସଭାରେ ନିର୍ଦ୍ଧାରିତ ହେଲା ।

ଅନେକ ସ୍ୱେଚ୍ଛାସେବକ ସଂଗ୍ରହ କଲୁଁ । ନେଟାଲରେ ଜନ୍ମ ହୋଇଥିବା ଭାରତୀୟ ଖ୍ରିଷ୍ଟିୟାନ ଯୁବକମାନଙ୍କୁ ଏହି ସଭାରେ ଯୋଗ ଦେବା ପାଇଁ ଆମନ୍ତ୍ରଣ କରାଯାଇ ଥିଲା । ଦରବାନ କୋର୍ଟର ଅନୁବାଦକ ମିଃ ପାଲ, ଓ ମିସନ୍ ସ୍କୁଲର ପ୍ରଧାନ ଶିକ୍ଷକ ମିଃ ସୁଭାନ ଗାଡ଼ଫ୍ରେ ଉକ୍ତ ସଭାରେ ଯୋଗଦେଇ ଥିଲେ । କେବଳ ସେ ଦୁହିଁଙ୍କ ଲାଗି ସଭାରେ ଅନେକ ଖ୍ରିଷ୍ଟିୟାନ ଯୁବକ ଯୋଗ ଦେଇ ଥିଲେ । ସବୁ ଯୁବକମାନେ ସ୍ୱେଚ୍ଛାସେବକ ସ୍ୱରୂପ ନାମ ଲେଖାଇ ଥିଲେ ।

ସ୍ଥାନୀୟ ବେପାରୀମାନଙ୍କ ମଧ୍ୟରୁ ଅନେକେ ସ୍ୱେଚ୍ଛାସେବକ ହୋଇଥିଲେ । ସେମାନଙ୍କ ମଧ୍ୟରୁ ସେଠ ଦାଦା ମହମ୍ମଦ, ସେଠ ମହମ୍ମଦ କାସାମ କାମରୁଦ୍ଦିନ, ସେଠ ଅଦାମଜି ମିଆଁଖାନ, ଏ: କୋଲନ୍ଦେଭେଲୁ ପିଲେ, ସି: ଲଚ୍ଛିରାମ, ରଙ୍ଗାସ୍ୱାମୀ ପଦ୍ମଏଚ ଓ ଏମଦ ଜିବାଙ୍କ ନାମ ଉଲ୍ଲେଖଯୋଗ୍ୟ । ପାର୍ଶୀ ରୁସ୍ତମଜୀଙ୍କ ସେଠାରେ ଥିଲେ । କିରାଣୀମାନଙ୍କ ମଧ୍ୟରୁ ମିଃ ମେନକାଜି, ଯୋଷୀ, ମିଃ ନରସିହରାମ ପ୍ରଭୃତି ମଧ୍ୟ ନାଆଁ ଲେଖାଇ ଥିଲେ । ଦାଦା ଅବଦୁଲ କମ୍ପାନି ଓ ଅନ୍ୟାନ୍ୟ ବଡ଼ ବଡ଼ କମ୍ପାନୀରେ ସେମାନେ ଚାକିରି କରୁଥାନ୍ତି । ହଠାତ ଲୋକ ସେବା କରିବା ପାଇଁ ସୁବିଧା ପାଇ ଥିବାରୁ ସେମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଥିଲେ ।

ଏହିପରି କାର୍ଯ୍ୟରେ ଯୋଗ ଦେବାପାଇଁ ଆମନ୍ତ୍ରିତ ହେବା ସେମାନଙ୍କ ଜୀବନରେ ନୂତନ ଅନୁଭୂତି । ଭାରତୀୟମାନଙ୍କୁ ଯେଉଁ ଦୁର୍ଦ୍ଦଶା ଭୋଗିବାକୁ ପଡ଼ୁଥିଲା ତାର ଗୁରୁତା ,ଦୃଷ୍ଟିରେ ସମସ୍ତେ ଉଚ୍ଚ ନୀଚ, ସାନ ବଡ଼, ପ୍ରଭୁ ଭୃତ୍ୟ, ହିନ୍ଦୁ ମୁସଲମାନ, ପାର୍ଶି ଖ୍ରିଷ୍ଟିୟାନ, ଗୁଜରାଟୀ ମନ୍ଦ୍ରାଜୀ ଇତ୍ୟାଦି ଭେଦ ଭାବ ଭୁଲି ଯାଇଥିଲେ । ସମସ୍ତେ ଏକ ମାତୃ ଭୂମିର ସନ୍ତାନ ଓ ସେବକ ବୋଲି ନିଜ ନିଜକୁ ମନେ କରୁଥିଲେ ।

ବ୍ୟବସ୍ଥାପକ ସଭାରେ ବିଲଟି ଦୁଇଥର ଆଲୋଚିତ ଓ ମନୋନୀତ ହୋଇ ସାରିଥିଲା । ବିଲ ବିଷୟ ନେଇ ସଭାରେ ବକ୍ତୃତା କହିଲା ବେଳେ କେହି କେହି କହିଥିଲେ ଯେ ଭାରତୀୟମାନେ ଏପରି ଗୋଟିଏ କଡ଼ା ଆଇନ ବିରୁଦ୍ଧରେ ପ୍ରତିବାଦ ନକରିବାରୁ ସହଜରେ ଅନୁମିତ ହେଉଅଛି ଯେ ସେମାନେ ଭୋଟ ଦେବା ଅଧିକାର ପାଇବା ପାଇଁ ଅନୁପଯୁକ୍ତ ।

ଆମେ ଯେଉଁ ସଭା କରିଥିଲୁଁ ସେଥିରେ ବିଲ ବିଷୟ ନେଇ ଯାହା ଘଟିଥିଲା ସେ ସବୁ ମୁଁ ବୁଝାଇ କହିଲି । ବିଲ ସମ୍ବନ୍ଧେ ଆଉ ଯାହା ବିଚାର କରିବା ପାଇଁ ଥିଲା ତାହା କେତେଦିନ ସକାଶେ ସ୍ଥଗିତ ରଖିବା ପାଇଁ ବ୍ୟବସ୍ଥାପକ ସଭାର ଅଧ୍ୟକ୍ଷଙ୍କ ଠାକୁ ସର୍ବ ପ୍ରଥମେ ଖଣ୍ଡିଏ ତାର ଦେଲୁ । ପ୍ରଧାନ ମନ୍ତ୍ରୀ ସର ଜନ ରବିନସନଙ୍କ ଠାକୁ ଓ ଦାଦା ଅବଦୁଲଙ୍କ ଜଣେ ବନ୍ଧୁ ମିଃ ଏସକୁମ୍ବଙ୍କ ଠାକୁ ମଧ୍ୟ ସେହି ଭଳିଆ ଦୁଇଟି ତାର ଦେଲୁଁ । ସଭାର ଅଧ୍ୟକ୍ଷ ହଠାତ୍ ଉତ୍ତର ଦେଲେ ଯେ ବିଲର ଆଉ ଅବଶିଷ୍ଟ ଆଲୋଚନା ଦୁଇ ଦିନ ସକାଶେ ସ୍ଥଗିତ କରାଯାଇ ପାରେ । ଏହି ଉତ୍ତର ପାଇ ଆମ୍ଭେମାନେ ବଡ଼ ଆନନ୍ଦିତ ହେଲୁଁ ।

ବ୍ୟବସ୍ଥାପକ ସଭାକୁ ଯେଉଁ ଆବେଦନ ପତ୍ର ଦେବା କଥା, ତାର

ନକଲ କରାଗଲା । ତିନୋଟି ନକଲ ନିତାନ୍ତ ଦରକାର ଥିଲା, ଆଉ ପ୍ରେସରେ ବାହାର କରିବା ପାଇଁ ଅଧିକ ଗୋଟିଏ ନକଲ, ଏହିପରି ଚାରିଗୋଟି ନକଲ ହେଲା । ଯେତେ ସ୍ୱାକ୍ଷର ମିଳିପାରେ ସେତେ ସଂଗ୍ରହ କରିବା ପାଇଁ ସ୍ଥିର କଲୁଁ । ଏସବୁ କାର୍ଯ୍ୟ ଗୋଟିଏ ରାତ୍ର ମଧ୍ୟରେ ହେବା କଥା । ସ୍ୱେଚ୍ଛାସେବକମାନଙ୍କ ମଧ୍ୟରୁ ଯେଉଁମାନେ ଇଂରେଜୀ ଭାଷା ଜାଣି ଥିଲେ ସେମାନେ ଓ ଆଉ କେହି କେହି ମିଶି ସାରା ରାତ୍ର ଚେଇଁ ରହିଲେ । ମିଃ ଆରଥର ନାମକ ଜଣେ ବୃଦ୍ଧ ବ୍ୟକ୍ତି ଆବେଦନ ପତ୍ରର ପ୍ରଧାନ ନକଲଟି ଲେଖିଲେ । ଆଉ ସବୁ ଅନ୍ୟମାନେ ଲେଖିଲେ । ସାଙ୍ଗେ ସାଙ୍ଗେ ଏହିପରି ପାଞ୍ଚ ଖଣ୍ଡ ନକଲ ହେଲା । ବେପାରୀମାନଙ୍କ ମଧ୍ୟରୁ ଯେଉଁମାନେ ସ୍ୱେଚ୍ଛାସେବକ ହୋଇଥିଲେ ସେମାନେ ହୁଏତ ନିଜ ନିଜ ଗାଡିରେ କିମ୍ବା ଭଡ଼ାଦେଇ ଅନ୍ୟର ଗାଡିରେ ଯାଇ ଲୋକଙ୍କ ସ୍ୱାକ୍ଷର ସଂଗ୍ରହ କରିବାରେ ଲାଗିଲେ । ଶୀଘ୍ର ଏହି କାମଟା ଶେଷ ହୋଇଗଲା ଓ ଆବେଦନ ପତ୍ରଟି ପଠାଇ ଦେଲୁଁ । ପତ୍ରିକା ମାନଙ୍କରେ ଅନୁକୂଳ ସମାଲୋଚନା ସବୁ ବାହାରିଲା । ବ୍ୟବସ୍ଥାପକ ସଭାରେ ମଧ୍ୟ କେହି୨ ଅନୁକୂଳ ମତ ଦେବାକୁ ଲାଗିଲେ । ସଭାରେ ତାର ସମାଲୋଚନା ହେଲା । ଯେଉଁମାନେ ବିଲର ପକ୍ଷପାତୀ ଥିଲେ ସେମାନେ ବିଲ ସପକ୍ଷରେ କହିଲେ । ଆମ୍ଭେମାନେ ଆବେଦନ ପତ୍ରରେ ଯେଉଁ ଯୁକ୍ତି ତର୍କ କରିଥିଲୁଁ ତାହାର ଉତ୍ତରରେ ସେମାନେ ଯାହା କହିଥିଲେ ସେଥିରେ ବେଶି କିଛି ଯୁକ୍ତି ନଥିଲା । ସେ ଯାହାହେଉ ବିଲଟି ସଭାରେ ମଞ୍ଜୁର ହୋଇଗଲା ।

ଆମ୍ଭେମାନେ ସମସ୍ତେ ପୂର୍ବରୁ ଜାଣିଥିଲୁ ଯେ ଏହିପରି ଘଟିବ; କିନ୍ତୁ ଏହି ଆନ୍ଦୋଳନ ଫଳରେ ଜାତିରେ ନୂତନ ଜୀବନର ଜାଗରଣ

ଦେଖାଗଲା । ସମସ୍ତେ ହୃଦୟଙ୍ଗମ କରି ପାରିଥିଲେ ଯେ ସେମାନେ ଗୋଟିଏ ଅଲଗା ଜାତି ଓ ଜାତିର ବ୍ୟବସାୟିକ ଜୀବନ ସଙ୍କାଶେ ସେମାନେ ଯେପରି ଦୂର ଲଢ଼ିବା ଉଚିତ ରାଜନୈତିକ କ୍ଷମତା ପାଇଁ ମଧ୍ୟ ସେହିପରି ଲଢ଼ିବା ଉଚିତ ।

ଲର୍ଡ ରିପନ ସେତେବେଳେ ଦକ୍ଷିଣ ଆଫ୍ରିକାର ହର୍ତ୍ତା କର୍ତ୍ତା ଥିଲେ । ତାଙ୍କଠାକୁ ଗୋଟିଏ ବଡ଼ ଆବେଦନ ପତ୍ର ଦେବା ପାଇଁ ସ୍ଥିର କରାଗଲା । ଏହା ଅତି ସାମାନ୍ୟ କାର୍ଯ୍ୟ ନୁହେ ଓ ଗୋଟିଏ ଦିନରେ କରିବା ବଡ଼ କଷ୍ଟର କଥା । କିନ୍ତୁ ସ୍ୱେଚ୍ଛାସେବକମାନେ ଅଣ୍ଟାଭିଡ଼ ବାହାରି ଯେ ଯାହାର ଶକ୍ତି ଅନୁସାରେ ଏହି କାର୍ଯ୍ୟରେ ଲାଗିଗଲେ ।

ଆବେଦନ ପତ୍ର ଲେଖିବା ପାଇଁ ମୁଁ ବେଶି କଷ୍ଟ ସହିବାକୁ ପଡ଼ିଥିଲା, ଓ ଅନେକ ବହିପତ୍ର ପଢ଼ିଥିଲି । ମୁଁ ସେଥିରେ ଯେଉଁ ଯୁକ୍ତି ଦେଖାଇ ଥିଲି ତାହା ନୀତି ମୂଳକ; ଲେଖିଥିଲି ଯେ ଭାରତରେ ଆମ୍ଭର ଯେପରି ଭୋଟ ଦେବା ଅଧିକାର ଅଛି ନେଟାଲରେ ମଧ୍ୟ ସେହିପରି ଅଧିକାର ରହିବାକୁ ହେବ ।

ପନ୍ଦର ଦିନ ଭିତରେ ଦଶ ହଜାର ସ୍ୱାକ୍ଷର ସଂଗ୍ରହ କରି ପାରିଥିଲୁଁ । ନେଟାଲ ପରି ପ୍ରଦେଶରୁ ଏତେ ସ୍ୱାକ୍ଷର ସଂଗ୍ରହ କରିବା ଅତି ସହଜ କଥା ନୁହେ—ବିଶେଷତଃ ଲୋକେ ସେ କାର୍ଯ୍ୟ ସମ୍ବନ୍ଧେ ଅଳ୍ପ ଜାଣି ନଥିଲେ । ଏହି କାର୍ଯ୍ୟ ସଙ୍କାଶେ ଉପଯୁକ୍ତ ସ୍ୱେଚ୍ଛାସେବକ ବାଛିବାକୁ ପଡ଼ିଥିଲା । ଆମ୍ଭର ଇଚ୍ଛା, ବିଷୟଟି ନବୁଝି କେହି ଯେପରି ଆବେଦନ ପତ୍ରରେ ସ୍ୱାକ୍ଷର ନକରନ୍ତି । ଗାଆଁ ଗୁଡ଼ିକ ସବୁ ବହୁ ଅନ୍ତରରେ ଥାଏ, ବହୁସଂଖ୍ୟକ ସ୍ୱେଚ୍ଛାସେବକ ମନ ଦେଇ କାମକଲେ କାମଟି ଶୀଘ୍ର ହୋଇଯିବା କଥା । ଯିଏ ଯେଉଁ କାମ କରିବା ପାଇଁ କଣ୍ଠିତ

ହୋଇଥିଲା ସେମାନେ ସେ ସବୁ କାର୍ଯ୍ୟ ବହୁ ଉତ୍ସାହର ସହିତ ଶେଷ କରିଥିଲେ । କିନ୍ତୁ ନିରଳସ କର୍ମୀଙ୍କ ମଧ୍ୟରୁ ସେଠ ଦାଉଦ ମହମଦ, ରୁସ୍ତମ୍ ଜି, ଆଡ଼ାମିଜି ମିଆଁ ଖାନ୍, ଓ ଏମଡ଼-ଜୀବ ପ୍ରଭୃତିଙ୍କ ପ୍ରତିମୂର୍ତ୍ତି ଏବେ ମୋ ଆଖି ଆଗରେ ବେଶି ନାଚି ଉଠେ । ସେମାନେ ବହୁ ସଙ୍ଖ୍ୟକ ସ୍ୱାକ୍ଷର ସଂଗ୍ରହ କରି ପାରିଥିଲେ । ଦାଉଦ ସେଠତ ଦିନ ଯାକ ତାଙ୍କ ଗାଡ଼ିରେ ବୁଲୁଥାନ୍ତି । କିନ୍ତୁ କେହି ହେଲେ ଗସ୍ତ ଖରଚ ମଧ୍ୟ ମାଗିନଥିଲେ । ଦାଦା ଅବଦୁଲଙ୍କ ଘରଟି ଗୋଟିଏ ସାଧାରଣ ଅଫିସ ଘରରେ ପରିଣତ ହେଲା । ଯେଉଁ କେତେ ଜଣ ଶିକ୍ଷିତ ବ୍ୟକ୍ତି ମୋତେ ସାହାଯ୍ୟ କରୁଥିଲେ ସେମାନେ ଓ ଅନ୍ୟର ଅନେକ ଲୋକ ତାଙ୍କର ଘରେ ଖାଉଥିଲେ । ଯେଉଁମାନେ ମୋତେ ସାହାଯ୍ୟ କରୁଥିଲେ ସେମାନଙ୍କର ମଧ୍ୟ ବହୁତ ଧନ ବ୍ୟୟ ହୋଇଥିଲା ।

ପରିଶେଷରେ ଆବେଦନ ପତ୍ର ଖଣ୍ଡି ପଠା ଗଲା । ବାଣ୍ଟିବା ସକାଶେ ହଜାର ଖଣ୍ଡ ନକଲ ଛପା ଯାଇଥିଲା । ସେହି ଦିନଠାରୁ ଭାରତୀୟମାନେ ନେଟାଲର ଅବସ୍ଥା ସମ୍ବନ୍ଧେ ବୁଝି ପାରିଥିଲେ । ମୁଁ ଯେଉଁ-ପତ୍ରିକା ମାନଙ୍କୁ ଜାଣିଥିଲି ସେ ସବୁକୁ ଗୋଟିଏ ନକଲ ପଠାଇଲି ।

ଟାଇମସ୍ ଅଫ ଇଣ୍ଡିଆ ( The Times of India ) ପତ୍ରିକା ଏହି ଆବେଦନ ପତ୍ର ବିଷୟ ନେଇ ତାର ଅଗ୍ରଲେଖାରେ ଭାରତୀୟମାନଙ୍କ ଦାବୀ ସମର୍ଥନ କରିଥିଲା । ଇଂଲେଣ୍ଡର ଭିନ୍ନ ଭିନ୍ନ ଦଳର ପତ୍ରିକା ମାନଙ୍କୁ ମଧ୍ୟ ନକଲ ପଠାଇଥିଲୁଁ । ଲଣ୍ଡନ ଟାଇମସ୍ ( The London Times ) ଭାରତୀୟମାନଙ୍କ ଦାବୀ ସମର୍ଥନ କଲା ଓ ଆମର ଆଶା ହେଲା ଯେ କର୍ତ୍ତୃ-ପକ୍ଷଙ୍କ ଦ୍ୱାରା ବିଲଟି ନାମଞ୍ଜୁର ହେବ ।

ଏଥର ନେଟାଲ ଛାଡ଼ିବା ମୋ ପକ୍ଷେ ଅସମ୍ଭବ ହୋଇ ପଡ଼ିଲା । ସ୍ଥାୟୀଭାବରେ ସେଠାରେ ରହିବା ସକାଶେ ଭାରତୀୟବନ୍ଧୁମାନେ ମୋତେ ଘେରିଅଛନ୍ତି ପରି ଅନୁରୋଧ କଲେ । ମୁଁ ମୋର ଅସୁବିଧା କଥା ସେମାନଙ୍କୁ କହିଲି । ଲୋକ ସାଧାରଣଙ୍କ ଧନରେ ମୋର ଖରଚ ଚଳାଇବି ନାହିଁ ବୋଲି ମୁଁ ସ୍ଥିର କରିଥିଲି । ପରମୁଖାପେକ୍ଷୀ ନହୋଇ ନିଜର ଗୋଟିଏ ଘର କରିବା ଉଚିତ ମନେ କଲି । ମୋର ଇଚ୍ଛା, ଘରଟି ଯେପରି ଭଲ ହୋଇଥିବ ଓ ସ୍ୱାସ୍ଥ୍ୟକର ଜାଗାରେ ଥିବ । ପୁଣି ଭାବିଥିଲି ଯେ ଯଦି ବାରିଷ୍ଟରମାନଙ୍କ ଭଳିଆ ମୁଁ ନରହେ ତାହା ହେଲେ ଆମ୍ଭ ଜାତୀୟ ସମ୍ମାନରେ ବାଧା ପଡ଼ିବ । ଅନ୍ତତଃ ୩୦୦ ଷ୍ଟର୍ଲିଙ୍ଗ ଖର୍ଚ୍ଚରୁ କମ୍ ଧନରେ ଏହିପରି ଗୋଟିଏ ଗାର୍ହସ୍ଥ୍ୟ ଜୀବନ ଅସମ୍ଭବ । ସୁତରାଂ ମୁଁ ନିଶ୍ଚୟ କଲି ଯେ ଯଦି ଭାରତୀୟମାନେ ମୋତେ ସେତିକି ଧନ ମିଳିଲା ପରି ମକଦ୍ଦମା ଯୋଗାନ୍ତି ତାହାହେଲେ ମୁଁ ସେଠାରେ ରହିବି । ମୋର ଏହି ସିଦ୍ଧାନ୍ତ ସମ୍ବନ୍ଧେ ସମସ୍ତଙ୍କୁ ଜଣାଇ ଦେଲି ।

ସେମାନେ କହିଲେ, "ଆପଣ ସେହି ଧନଟା ଲୋକ ସେବା କାର୍ଯ୍ୟ କରିବା ଲାଗି ନିଅନ୍ତୁ ବୋଲି ଆମର ଇଚ୍ଛା; ଆମେ ତାହା ସହଜରେ ଆଦାୟ କରି ପାରିବୁଁ । ଆପଣ ମକଦ୍ଦମାରୁ ସ୍ୱତନ୍ତ୍ର ଭାବରେ ଧନ ରୋଜଗାର କରି ପାରନ୍ତି ।"

ମୁଁ — "ନା, ଲୋକସେବା କରିବା ଲାଗି ମୁଁ ଆପଣମାନଙ୍କ ଠାରୁ ଦରମା ନେଇ ନପାରେ । ସେହି କାର୍ଯ୍ୟ କରିବା ପାଇଁ ମୋର ବାରିଷ୍ଟରି ବିଦ୍ୟା ସହାୟତା କରିବ ନାହିଁ । କେବଳ ଆପଣମାନଙ୍କ ହାତରେ କାର୍ଯ୍ୟ କରାଇବା ମୋର ଲକ୍ଷ୍ୟ ରହିବ । ସେଥିପାଇଁ ବୋଲି ମୁଁ କିପରି ଆପଣମାନଙ୍କ ଠାରୁ ଧନ ନେବି ? ସେହି କାର୍ଯ୍ୟ ପାଇଁ ମୁଁ ଅନବରତ ଧନ ମାଗି-

ବାକୁ ପଡ଼ିବ । ମୁଁ ଯଦି ମୋର ଭରଣ ପୋଷଣ ସକାଶେ ଆପଣମାନଙ୍କଠାରୁ ଧନ ଆଦାୟ କରିବାକୁ ହୁଏ ତାହାହେଲେ ସାଧାରଣ କାର୍ଯ୍ୟ ସକାଶେ ବେଶି ଧନ ଦରକାର ପଡ଼ିଲେ ତାହା ଆପଣମାନଙ୍କଠାରୁ ସଂଗ୍ରହ କରିବା ପାଇଁ ମୋତେ ଅଡୁଆ ଲାଗିବ । ପରିଶେଷରେ ଆମ ଜାତୀୟ କାର୍ଯ୍ୟରେ ବାଧା ପଡ଼ିବ । ଲୋକସେବା କାର୍ଯ୍ୟ ସକାଶେ ଆପଣମାନଙ୍କଠାରୁ ବାର୍ଷିକ ତିନି ଶତ ପାଉଣ୍ଡରୁ ଅଧିକ ଧନ ଆଦାୟ କରିବା ପାଇଁ ମୋର ଇଚ୍ଛା ।"

ସେମାନେ—"ଆମେ ଆପଣଙ୍କୁ ଅନେକ ଦିନ ହେଲା ଜାଣିଲୁଣି, ଆମର ବିଶ୍ୱାସ, ଅନାବଶ୍ୟକରେ ଆପଣ ପଇସା ମଗାଇବେ ନାହିଁ । ଆମେମାନେ ଯେତେବେଳେ ଏଠାରେ ରହିବା ପାଇଁ ଆପଣଙ୍କୁ କହୁଁଛୁ, ତେବେ ଆପଣଙ୍କ ଖରଚ ସମ୍ବନ୍ଧେ ଆମେ କଣ ଦେଖିବୁ ନାହିଁ" ?

ମୁଁ—"ଆପଣମାନଙ୍କର ପ୍ରେମ ଓ ଏବର ଉତ୍ସାହ ଯୋଗ ଆପଣ ମାନେ ଏପରି କହୁଛନ୍ତି କିନ୍ତୁ ଏହି ପ୍ରେମ ଓ ଉତ୍ସାହ ଚିରଦିନେ ରହିବ ବୋଲି ଆମେମାନେ କପରି ବିଶ୍ୱାସ କରିବା ? ମୁଁ ଆପଣମାନଙ୍କର ବନ୍ଧୁ ଓ ସେବକ ବୋଲି ବେଳେ ବେଳେ ଆପଣମାନଙ୍କୁ କର୍କଶ କଥା କହି ଦେଇପାରେ । ମୁଁ ସେତେବେଳେ ଆପଣମାନଙ୍କର ଆଦରର ପାତ୍ର ହୋଇ ପାରିବିକି ନାହିଁ ଭଗବାନ କେବଳ ଜାଣନ୍ତି । ସତ କହୁଛି, ଲୋକସେବା କରିବା ପାଇଁ ବୋଲି ମୁଁ କିଛି ଦରମା ନେବିନାହିଁ । ଆପଣ ମାନଙ୍କର ସବୁ ମକଦମା ମୋତେ ଦେବା ପାଇଁ ଯଦି ପ୍ରତିଶ୍ରୁତ ହୁଅନ୍ତି ତାହାହେଲେ ଯଥେଷ୍ଟ । ଏହା ମଧ୍ୟ ଆପଣଙ୍କ ପକ୍ଷେ କଷ୍ଟ ସାଧ୍ୟ । ପ୍ରଥମ କଥା, ମୁଁ ଜଣେ ଗୋରା ବାରିଷ୍ଟର ନୁହେଁ । ଅଦାଲତରେ ମୋର କଥା ଚଳିବ ବୋଲି ମୁଁ କପରି ବିଶ୍ୱାସ କରିବି ? ମୁଁ ଯେ ଓକାଲତିରେ କୃତକାର୍ଯ୍ୟ ହେବି କି ନାହିଁ ତାହା ମଧ୍ୟ କପରି କହି ପାରିବି ? ସୁତରାଂ

ମୋତେ ମକଦ୍ଦମା ଦେଇ ମଧ୍ୟ ଆପଣମାନେ ଷଡ଼ଯନ୍ତ୍ରଗ୍ରସ୍ତ ହେବାପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ଆପଣମାନେ ଯଦି ମୋତେ ତାହା ଦିଅନ୍ତି ତାହାହେଲେ ମୋର ଲୋକସେବା କାର୍ଯ୍ୟ ଲାଗି ତାହା ପୁରସ୍କାର ବୋଲି ମନେ କରିବି ।"

ଏହି କଥୋପକଥନ ଶେଷରେ ପ୍ରାୟ ୨୦ ଜଣ ବେପାରି ସେମାନଙ୍କର ବର୍ଷକର ମକଦ୍ଦମା ସବୁ ମୋତେ ଦେବେ ବୋଲି ପ୍ରତିଶ୍ରୁତ ହେଲେ । ମୋର ବିଦାୟ ସମୟରେ ଦାଦା ଅବଦୁଲ ଗୋଟିଏ ଠଙ୍କା ଥଳି ଦେବାପାଇଁ ସ୍ଥିର କରିଥିଲେ—କିନ୍ତୁ ତାହା ବଦଳରେ ସେ ମୋ ପାଇଁ ଅବଶ୍ୟକୀୟ ଜିନିସ ପତ୍ର କିଣି ଦେଲେ ।

ନେଟାଲରେ ମୁଁ ଏହିପରି ଅବସ୍ଥାନ କଲି ।



## ଅଷ୍ଟାଦଶ ପରିଚ୍ଛେଦ ।

( ବର୍ଣ୍ଣ ଅନୁଭବ )



ନବାଗତ ଗୋଟିକୁ ନ୍ୟାୟ ଅଦାଲତର ଆଦର୍ଶ ସ୍ୱରୂପ ଧରି ଯାଇପାରେ । ଜଣେ ସମଦର୍ଶିନୀ, ଅନ୍ଧ ଶୀ, କିନ୍ତୁ ତଉଲ ସ୍ତ୍ରୀ ତାହା ସମାନ ଭାବେ ଧରିଥାଏ । ଅନ୍ୟ ଲୋକର ବାହ୍ୟ ଦେଖି ସେ ତାର କୁଳ ଶୀଳ ବିଚାର କରିବ ନାହିଁ ବୋଲି କପାଳ ତାଙ୍କୁ ଜାଣି ଜାଣି ଅନ୍ଧ ଶୀ କରିଛି । କିନ୍ତୁ ଉଚ୍ଚ ଅଦାଲତ କପରି ଏହି ନୀତି ବିରୁଦ୍ଧରେ ଯିବେ ଓ ତାଙ୍କ ଆଦର୍ଶର ନିରର୍ଥକତା ପ୍ରତିପାଦନ କରିବେ ସେଥିପାଇଁ ଅଇନ ସଭ ଚେଷ୍ଟା କରି ବସିଲେ ।

ଉଚ୍ଚ ଅଦାଲତରେ ଏଡ୍‌ଭୋକେଟ୍ ହେବା ସକାଶେ ମୁଁ ଦରଖାସ୍ତ ଦେଇ ଅନୁମତି ମାଗିଲି । ବମ୍ବାଇ ଉଚ୍ଚ ଅଦାଲତରୁ ମୁଁ ଖଣ୍ଡିଏ ପ୍ରବେଶ ଅଧିକାର ପତ୍ର ନେଇ ଯାଇଥିଲି । ମୁଁ ସେଠାରେ ନାମ ଲେଖାଇଲା ବେଳେ ଇଂରେଜୀ ଉପାଧି ପତ୍ର ଖଣ୍ଡି ଦେଇଥିଲି । ଉଚ୍ଚ ଅଦାଲତରେ ପ୍ରବେଶ କରିବାକୁ ହେଲେ ଦୁଇଟି ଚରିତ୍ର ପ୍ରଶଂସା ପତ୍ର ଆବଶ୍ୟକ । ୟୁରୋପିଆନମାନେ ପ୍ରଶଂସା ପତ୍ର ଦେଲେ ବେଶି ମୂଲ୍ୟ ରହିବ ମନେ କରି ସେଠ ଅବଦୁଲଙ୍କ ସମ୍ପର୍କରୁ ଯେଉଁ ଦୁଇ ଜଣ ଖ୍ୟାତନାମା ବେପାରୀଙ୍କୁ ମୁଁ ବନ୍ଧୁ କରି ପାରିଥିଲି ସେମାନଙ୍କ ଠାରୁ ଦୁଇଖଣ୍ଡି ପ୍ରଶଂସାପତ୍ର ସଂଗ୍ରହ କଲି । ଆବେଦନ ପତ୍ରଟି ଆଇନ ସଂଘର କୌଣସି ଜଣେ ସଭ୍ୟଙ୍କ ଦ୍ୱାରା ହାକିମଙ୍କୁ ଦେବା କଥା । ସାଧାରଣତଃ ଏଟର୍ଣ୍ଣି ଜେନେରଲ କିଛି ପାରିଶ୍ରମିକ ନନେଇ ସେ ସବୁ ଦେଇ ଥାନ୍ତି । ମିଃ ଏସକୁମ୍ବ ଦାଦା ଅବଦୁଲ କମ୍ପାନିର ଆଇନ ଉପଦେଶକ ଥିଲେ । ସେ ଏଟର୍ଣ୍ଣି ଜେନେରଲ କାମ କରୁଥାନ୍ତି । ମୋର ଆବେଦନ ପତ୍ରଟି ହାକିମଙ୍କୁ ଦେବେ ବୋଲି ମୁଁ ତାଙ୍କୁ କହିଲି; ସେ ଅକୁଣ୍ଠିତ ଭାବରେ ସ୍ୱୀକାର କଲେ ।

ଅଦାଲତରେ ପ୍ରବେଶ କରିବା ପାଇଁ ଦରଖାସ୍ତ ଦେବାକୁ ନଟାଲର ଆଇନ ସଂଘ ହଠାତ ମୋତେ ଗୋଟିଏ ରେଜିଷ୍ଟ୍ରି ପତ୍ର ଦେଲେ । ସଂଘର ଆପତ୍ତି ମଧ୍ୟରୁ ଗୋଟିଏ ହେଉଛି-ଇଂରେଜ ଉପାଧି ପତ୍ରର ପ୍ରଥମ ନକଲ ଖଣ୍ଡି ମୋର ଆବେଦନ ପତ୍ର ସହିତ ଦିଆ ଯାଇ ନଥିଲା । କିନ୍ତୁ ଆପତ୍ତିର ପ୍ରଧାନକାରଣ ଥିଲା ଅନ୍ୟ ପ୍ରକାର । ଏଡ୍‌ଭୋକେଟମାନେ ଅଦାଲତରେ ଭରତି ହେବା ସମ୍ବନ୍ଧେ ଯେତେବେଳେ ନିୟମ କରାଯାଏ ଜଣେ କଳାଲୋକ ଅଦାଲତରେ ପ୍ରବେଶ କରିବାପାଇଁ ଯେ ଆବେଦନ କରିବେ

ଏହି କଥା କାହାର ଭାବନା ହୋଇ ନଥିଲା । ୟୁରୋପିଅନମାନଙ୍କ କୃତାହି ଯୋଗୁଁ ନେଟାଲର ଅଭିବୃଦ୍ଧି । ସୁତରାଂ କଚେରିରେ ବେଶି ୟୁରୋପିଅନ ରହିବା ଆବଶ୍ୟକ । ଯଦି କଳା ଲୋକ ବେଶି ରହନ୍ତି, ସେମାନେ କ୍ରମେ୨ ୟୁରୋପିଅନମାନଙ୍କ ଅପେକ୍ଷା ବହୁ ସଂଖ୍ୟକ ହୋଇ ପରିଶେଷରେ ସେମାନଙ୍କ ଭିତରେ ଧୂଳି ପକାଇ ପାରନ୍ତି ବୋଲି ସମସ୍ତଙ୍କର ଭୟ ।

ଆଇନ ସଂଘ ସପକ୍ଷରେ ବାଦାନୁବାଦ କରିବା ଲାଗି ଜଣେ ଖ୍ୟାତନାମା ଓକିଲ ନିଯୁକ୍ତ ହୋଇଥିଲେ । ସେ ଦାଦା ଅବଦୁଲ କମ୍ପାନି ସହିତ ସଂଯୁକ୍ତ ଥିବା ଯୋଗୁଁ ତାଙ୍କ ସହିତ ଦେଖା କରିବା ପାଇଁ ସେଠ ଅବଦୁଲଙ୍କ ଦ୍ୱାରା ମୋତେ ସେ ଖବର ଦେଲେ । ମୋ ସହିତ ସେ ମୁକ୍ତ ହୃଦୟରେ କଥା ବାର୍ତ୍ତା କଲେ ଓ ମୋର ବିସ୍ତୃତ ପରିଚୟ ଲୋଡ଼ିବାରୁ ମୁଁ ତାଙ୍କୁ ସବୁ କହିଥିଲି । ତାହା ଶୁଣି ସେ କହିଲେ:—

"ଆପଣଙ୍କ ବିରୁଦ୍ଧରେ କହିବା ପାଇଁ ମୋର କିଛି ନାହିଁ । ମୋର ଭୟ ଥିଲା ଆପଣ ଜଣେ ଏଠାର ବାସିନ୍ଦା । ବିଶେଷ କଥା, ଆପଣ ଦରଖାସ୍ତ ସହିତ ଉପାଧି ପତ୍ରର ପ୍ରଥମ ନକଲ ଦେଇ ନଥିଲେ ବୋଲି ମୋର ସନ୍ଦେହ ହେଲା । ଏପରି ଅନେକ ଲୋକ ଅଛନ୍ତି; ସେମାନେ ଅନ୍ୟମାନଙ୍କର ଉପାଧି ପତ୍ର ମଧ୍ୟ ବ୍ୟବହାର କରି ପକାଇଥାନ୍ତି । ୟୁରୋପିଅନ ବଣିକମାନଙ୍କଠାରୁ ପ୍ରଶଂସା ପତ୍ର ଆଣି ଆପଣ ଯାହା ପଠାଇଅଛନ୍ତି ସେଥିରେ ଆଦୌ ମୂଲ୍ୟ ନାହିଁ । ଆପଣଙ୍କ ସମ୍ବନ୍ଧେ ସେମାନେ ବା କ'ଣ ଜାଣନ୍ତି ? ଆପଣଙ୍କ ସହିତ ସେମାନଙ୍କର ବା କେତେ ଦୂର ସମ୍ବନ୍ଧ ?

ମୁଁ କହିଲି-"କିନ୍ତୁ ଏଠାରେତ ସମସ୍ତେ ମୋର ଅପରିଚିତ ।
ସେଠ ଅବଦୁଲ ମଧ୍ୟ ପ୍ରଥମେ ମୋତେ ଏଠାରେ ଚିହ୍ନିଲେ ।"

ସେ-"କିନ୍ତୁ ଆପଣତ କହୁଛନ୍ତି ଯେ ଆପଣମାନଙ୍କର ଘର ଗୋଟିଏ ସ୍ଥାନରେ ବୋଲି ? ଆପଣଙ୍କ ପିତା ଯଦି ପୋରବନ୍ଦରର ପ୍ରଧାନ ମନ୍ତ୍ରୀ ଥିଲେ ତେବେ ସେଠ ଅଲଦୁଲ ଆପଣଙ୍କ ପରିବାରକୁ ନିଶ୍ଚୟ ଜାଣିଥିବେ । ତାଙ୍କ ଠାରୁ ଯଦି ଆପଣ ପ୍ରଶଂସା ପତ୍ର ଆଣନ୍ତେ ତାହା ହେଲେ ମୋର ଆଦୌ ଆପତ୍ତି ଉଠନ୍ତା ନାହିଁ । 'ଆଇନ ସଙ୍ଘକୁ' ମୁଁ କହନ୍ତି ଯେ ଆପଣଙ୍କ ବିରୁଦ୍ଧରେ ଯିବା ପାଇଁ ମୁଁ ସକ୍ଷମ ନୁହେଁ" ।

ଏହା ଶୁଣି ମୁଁ କ୍ରୁଦ୍ଧ ହେଲି, କିନ୍ତୁ ସମ୍ଭାଳି ଗଲି । ମୁଁ ମନେ ମନେ ଭାବିଲି "ମୁଁ ଯଦି ଦାଦା ଅବଦୁଲଙ୍କ ପ୍ରଶଂସା ପତ୍ର ଖଣ୍ଡି ଦରଖାସ୍ତ ସହିତ ଦେଇଥାନ୍ତି, ତାହା ନାମଞ୍ଜୁର ହୋଇ ଥା'ନ୍ତା ଓ ୟୁରୋପିୟାନ ମାନଙ୍କଠାରୁ ପ୍ରଶଂସା ପତ୍ର ଆଣିବା ସକାଶେ କହିଥାନ୍ତେ । ଏଡ଼ଭୋକେଟ ସ୍ୱରୂପ ଭରତି ହେବାକୁ ହେଲେ ମୋର ଜନ୍ମ ତାରିଖ ଓ ଆଜୀବନ ଘଟଣାର ଆବଶ୍ୟକତା କାହିଁକି ? ମୋର ଜନ୍ମ ନୀଚରେ ହେଉ କମ୍ବା ଉଚ୍ଚରେ ହେଉ ତାହା କିପରି ବା ମୋର ଅନ୍ତରାୟ ହେବ" ? କିନ୍ତୁ ମୁଁ ଅସ୍ଥିର ନହୋଇ କୋମଳ ଭାବେ ତାଙ୍କୁ କହିଲି:—

"ମୋ ସମ୍ବନ୍ଧେ ଏତେ କଥା ଜାଣିବା ସକାଶେ 'ଆଇନସଙ୍ଘ'ର ଦାବି କରିବା କ୍ଷମତା ଅଛି ବୋଲି ମୁଁ ସ୍ୱୀକାର ନକଲେ ମଧ୍ୟ ଆପଣ ଯେଉଁ ପ୍ରଶଂସା ପତ୍ର ଖଣ୍ଡି ଲୋଡୁ ଅଛନ୍ତି ତାହା ଯୋଗାଇବା ପାଇଁ ମୁଁ ପ୍ରସ୍ତୁତ ଅଛି ।"

ସେଠ ଅବଦୁଲଙ୍କ ଠାରୁ ପ୍ରଶଂସା ପତ୍ର ଆଣି 'ଆଇନ ସଙ୍ଘ'ର ଓକିଲଙ୍କୁ ଠିକ ସମୟରେ ତାହା ଦେଲି । ସେ ତାହା ପାଇ ତୃପ୍ତ ହେଲେ

ବୋଲି କହିଲେ; କିନ୍ତୁ ଅଇନ ସଂଘର ମନ ମାନିଲା ନାହିଁ । ମୋ ଆବେଦନ ପତ୍ର ବିରୁଦ୍ଧରେ ସଙ୍ଘ ପକ୍ଷରୁ ଉଚ୍ଚ ଅଦାଲତରେ ଆପତ୍ତି ଉଠିଲା । କିନ୍ତୁ ମିଃ ଏସକୁମ୍ବଙ୍କ, କଚେରିକୁ ମଧ୍ୟ ନଡ଼ାଇ ଆପତ୍ତିଟି ନାମଞ୍ଜୁର କରି ଯାଇଥିଲା । ସେବିଷୟ ନେଇ ପ୍ରଧାନ ନ୍ୟାୟପତି କହିଥିଲେ—

ଉପାଧି ପତ୍ରର ପ୍ରଥମ ନକଲ ଆବେଦନ ପତ୍ର ସହି ଦିଆଯାଇନାହିଁ ବୋଲି ଯେ ଆପତ୍ତି ଉଠିଛି ସେଥିରେ କିଛି ସତ୍ତା ନାହିଁ । ସେ ଯଦି ଗୋଟିଏ ମିଥ୍ୟା ପ୍ରଶଂସା ପତ୍ର ଆଣି ଅଛନ୍ତି ସେଥିପାଇଁ ସେ ଦଣ୍ଡ ପାଇ ପାରନ୍ତି ଓ ଦୋଷୀ ବୋଲି ବିବେଚିତ ହେଲେ ଏଡ୍‌ଭୋକେଟ ତାଲିକାରୁ ତାଙ୍କ ନାମ କଟାଯାଇପାରେ । କଳା ଗୋରା ମଧ୍ୟରେ ପ୍ରଭେଦ ରଖିବା ନ୍ୟାୟାନୁମୋଦିତ କାର୍ଯ୍ୟନୁହେ । ସୁତରାଂ ମିଃ ଗାନ୍ଧୀ ଏଡ୍‌ଭୋକେଟ ତାଲିକା ଭୁକ୍ତ ହେବା ସକାଶେ ଅଦାଲତ ତାଙ୍କର ପ୍ରତିବନ୍ଧକ ହେବାପାଇଁ ଅଧିକାର ନାହିଁ । ଆମ୍ଭେ ତାଙ୍କର ଅବେଦନ ପତ୍ର ଗ୍ରହଣ କରୁଅଛୁଁ । ମିଃ ଗାନ୍ଧି ! ଆପଣ ଏଥର ନିୟମାନୁସାରେ ପ୍ରତିଜ୍ଞା କରି ପାରନ୍ତି ।”

ମୁଁ ଠିଆ ହୋଇ ରେଜିଷ୍ଟ୍ରାରଙ୍କ ଆଗରେ ପ୍ରତିଜ୍ଞା କଲି । ତା ପରେ ପ୍ରଧାନ ବିଚାରପତି ମୋତେ କହିଲେ—

“ମିଃ ଗାନ୍ଧି ! ଏଥର ଆପଣ ମୁଣ୍ଡରୁ ପଗଡ଼ିଟି ବାହାର କରି ଦେବାକୁ ହେବ । କଚେରିର ନିୟମାନୁସାରେ ଏଠାର ବାରିଷ୍ଟରମାନେ ଯେପରି ପୋଷାକ ବ୍ୟବହାର କରିବାକୁ ହୁଏ ଆପଣ ମଧ୍ୟ ସେହିପରି ପୋଷାକ ପରିଧାନ କରିବାକୁ ହେବ ।”

ମୁଁ ମୋର ସୀମା ଦେଖି ପାରିଥିଲି । ଜିଲା ମାଜିଷ୍ଟ୍ରେଟ କୋର୍ଟରେ ପଗଡ଼ି ବ୍ୟବହାର କରିବା ପାଇଁ ଧରି ବସିଥିଲି, କିନ୍ତୁ ଉଚ୍ଚ ଅଦାଲତର

ଆଦେଶ ପାଇ ମୁଁ ତାହା ବାହାର କରି ଦେଲି । ମୁଁ ଯଦି ଅର୍ଦ୍ଦେଶ ବିରୁଦ୍ଧରେ ବାହାର ଥାନ୍ତି ମୋର ବ୍ୟବହାର ଯେ ଅଯଥାର୍ଥ ବୋଲି ପ୍ରମାଣିତ ହୋଇଥାନ୍ତା, ତାହାନୁହେଁ । କିନ୍ତୁ ଅତି ବେଶି ଗୁରୁତର ବିଷୟ ନେଇ ଲଢିବା ସକାଶେ ଶକ୍ତି ସାମର୍ଥ୍ୟ ସଞ୍ଚିତ ରଖିବାପାଇଁ ମୋର ଇଚ୍ଛା ହେଲା । ପଗଡ଼ି ପିନ୍ଧିବା ପାଇଁ ଲଢିବାକୁ ଯାଇ କ୍ଷମତା ନଷ୍ଟ କରିବା ଅନୁଚିତ ମନେ କଲି—ତାହା ଅଧିକ ଉପାଦେୟ ବିଷୟ ପାଇଁ ବିନି-ଯୋଗ କରିବା କଥା ।

ସେଠ ଅବଦୁଲ ଓ ଅନ୍ୟାନ୍ୟ ବନ୍ଧୁମାନେ ମୋର ସମ୍ମତି ଦାନ ( କିଣ ଦୁର୍ବଳତା ? ) କୁ ପସନ୍ଦ କଲେ ନାହିଁ । ଅଦାଲତରେ ପଗଡ଼ି ବାନ୍ଧିବା ସକାଶେ ଲଢିବାପାଇଁ ସେମାନଙ୍କର ଅଭିମତ । ମୁଁ ସେମା-ନଙ୍କ ସହିତ ଯୁକ୍ତି ତର୍କ କରିବା ପାଇଁ ବାହାରିଲି ଓ ‘ଯେ ଦେଶେ ଯାଇ ସେ ଫଳ ଖାଇ’ ଏହି ଉକ୍ତିର ସତ୍ୟତା ସେମାନଙ୍କୁ ବୁଝାଇ ଦେବାପାଇଁ ଚେଷ୍ଟା କଲି । ମୁଁ କହିଲି—“ଭାରତରେ ଯଦି କୌଣସି ଇଂରେଜ କର୍ମଚାରୀ କିମ୍ବା ବିଚାରପତି ପଗଡ଼ି ବାହାର କରି ଦେବା ଲାଗି ଆଦେଶ ଦିଅନ୍ତି ସେହି ଆଦେଶ ପାଳନ କରିବା ପାଇଁ ଅମଙ୍ଗ ହେଲେ ନ୍ୟାୟ-ସଙ୍ଗତ ହେବ । କିନ୍ତୁ ଅଦାଲତର ଜଣେ କର୍ମଚାରୀ ହୋଇ ନେଟାଲ ପ୍ରଦେଶ ଅଦାଲତରେ ଯେ ପରଂପରା ପ୍ରଥା ଚାଲି ଆସିଛି, ତାର ବିରୁ-ଦ୍ଧରେ ଯାଇଥିଲେ ଅଭଦ୍ରୋଚିତ ବ୍ୟବହାର ହୋଇଥାନ୍ତା ।”

ଏହିଯୁକ୍ତି ଦ୍ୱାରା ମୋର ବନ୍ଧୁମାନଙ୍କୁ ତୃପ୍ତ କରିବାକୁ ଚେଷ୍ଟା କଲି, କିନ୍ତୁ ସେମାନେ ସମ୍ପୂର୍ଣ୍ଣ ପରିତୃପ୍ତ ହେଲେ ବୋଲି କହି ନପାରେ, ଭିନ୍ନ ଭିନ୍ନ ସମୟରେ ଗୋଟିଏ କଥା ଭିନ୍ନ ଭିନ୍ନ ଦୃଷ୍ଟିରେ ଦେଖାଯାଇ ପାରେ ବୋଲି ମୁଁ ସେମାନଙ୍କୁ ବୁଝାଇ ପାରି ନଥିଲି । କିନ୍ତୁ ଆଜୀବନ ସତ୍ୟପ୍ରତି

ଅନୁରାଗ ଯୋଗୁଁ ମୁଁ ସମାଧାନର ମର୍ଯ୍ୟାଦା ହୃଦୟଙ୍ଗମ କରି ପାରିଥିଲି । ମୁଁ ପରେ ଦେଖିଲି ଏହି ଲକ୍ଷଣ ସତ୍ୟାଗ୍ରହର ଏକ ପ୍ରଧାନ ଅଙ୍ଗ ହୋଇଥିଲା । ସେଥିଲାଗି ଅନେକ ସମୟରେ ମୋର ଜୀବନ ଭୟ-ସଙ୍କୁଳ ବୋଲି ବିବେଚିତ ହୋଇଅଛି ଓ ମୁଁ ବନ୍ଧୁମାନଙ୍କର ଅପ୍ରୀୟ ପାତ୍ର ମଧ୍ୟ ହୋଇ-ଅଛି । କିନ୍ତୁ ସତ୍ୟ କଠିନ ଅପରିବର୍ତ୍ତନୀୟ ହେଲେ ମଧ୍ୟ ପୁଷ୍ପ ପରି କୋମଳ ।

"ଆଇନ ସଙ୍ଘ"ର ଆପତ୍ତି ଯୋଗୁଁ ଦକ୍ଷିଣ ଆଫ୍ରିକାରେ ମୋର ନାଆଁ ଆଉ ଟିକିଏ ବେଶି ଭାବେ ପ୍ରଚାରିତ ହୋଇଗଲା । ଅନେକ ପତ୍ରିକା 'ଆଇନ ସଙ୍ଘ'ର ଆପତ୍ତିକୁ ତିରସ୍କାର କଲେ—ସଙ୍ଘଟା ପରଶ୍ରୀକାତର ବୋଲି କହିବାକୁ ଲାଗିଲେ । ଏହି ଘଟଣା ଯୋଗୁଁ ମୋତେ ବେଶି ଲୋକ ଜାଣିଗଲେ ଓ ମୋର କାର୍ଯ୍ୟଟା ଟିକିଏ ସରଳ ହେଲା ।

## ଊନବିଂଶ ପରିଚ୍ଛେଦ ।

( ନେଟାଲ ଭାରତୀୟ କଂଗ୍ରେସ । )

ଓକାଲତି ମୋର ଗୋଟିଏ ଗୌଣ ବ୍ୟବସାୟ ହୋଇ ରହିଲା । ମୁଁ ଯଦି ନେଟାଲରେ ରହିବାକୁ ହୁଏ ତାହାହେଲେ ଲୋକ ହିତକର କାର୍ଯ୍ୟରେ ମନ ନିବେଶ କରିବା କଥା । ଭୋଟ ଦେବା କ୍ଷମତା ରଦ୍ଦ କରିବା ଲାଗି ଯେଉଁ ବିଲ୍ ଆଗତ ହୋଇଥିଲା ସେ ସମ୍ବନ୍ଧେ ମୁଁ ପୂର୍ବରୁ କହିଛି । ସେ ସମ୍ପର୍କରେ ଯେଉଁ ଆବେଦନ ପତ୍ର ପଠାଇ ଥିଲୁଁ ତାହା ଯଥେଷ୍ଟ ନୁହେ । ଉପନିବେଶର ସଚିବଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ହେଲେ ଅନବରତ ଆନ୍ଦୋଳନ ଦରକାର । ଏଥିଲାଗି ଗୋଟିଏ ସ୍ଥାୟୀ ଅନୁଷ୍ଠାନର ଆବଶ୍ୟକତା ଅନୁଭୂତ ହେଲା । ସୁତରାଂ ମୁଁ ସେଠ ଅବଦୁଲ୍ ଓ ଅନ୍ୟାନ୍ୟ

ବନ୍ଧୁମାନଙ୍କ ସହ ଏ ସମ୍ବନ୍ଧେ କଥାବାର୍ତ୍ତା କଲି ଓ ସମସ୍ତେ ଏକମତ ହେଲୁ ଯେ ଗୋଟିଏ ସାଧାରଣ ସ୍ଥାୟୀ ଅନୁଷ୍ଠାନ ରଖିବୁଁ । ଏହି ନୂତନ ଅନୁଷ୍ଠାନକୁ କି ନାଆଁ ଦେବାକୁ ହେବ ଏହା ଭାବି ଭାବି ମୁଁ ବ୍ୟସ୍ତ ହୋଇଥିଲି । ତାହା କୌଣସି ନିର୍ଦ୍ଦିଷ୍ଟ ଦଳ ସହିତ ସଂପୃକ୍ତ ନ ରହିବା କଥା । ମୁଁ ଜାଣିଥିଲି, 'କଂଗ୍ରେସ' ନାମ ଶୁଣିଲେ ଇଂଲଣ୍ଡର ରକ୍ଷଣଶୀଳ ଦଳ ନାକ ଟେକି ଥାନ୍ତି, କିନ୍ତୁ କଂଗ୍ରେସ ଯେ ଭାରତର ଜୀବନ । କଂଗ୍ରେସ ସପକ୍ଷରେ ନେଟାଲ ଭାରତୀୟ ମାନଙ୍କ ସହାନୁଭୂତି ଲୋଡ଼ିବା ମୋର ଇଚ୍ଛା ଥିଲା । ଯେହେତୁ ନାମ କରଣ ସକାଶେ ମୋର ଯେ ଦୁର୍ବଳତା ଓ ଆଶଙ୍କା ଥିଲା ତାହା ଦୂରିତ ହେଲା ଓ ଅନୁଷ୍ଠାନଟିକୁ 'ନେଟାଲ ଭାରତୀୟ କଂଗ୍ରେସ' ନାମ ଦେବା ଲାଗି ମୁଁ ପ୍ରସ୍ତାବ କଲି । କାହିଁକି ସେହି ନାମ ଦେବାକୁ ହେବ ତାହା ବିସ୍ତୃତ ଭାବେ ସମସ୍ତଙ୍କୁ ବୁଝାଇ କହିଥିଲି । ମେ ୨୨ ତାରିଖରେ 'ନେଟାଲ ଭାରତୀୟ କଂଗ୍ରେସ' ସ୍ଥାପିତ ହେଲା ।

ସେ ଦିନ ଦାଦା ଅବଦୁଲଙ୍କ ଘରଟି ଲୋକରେ ପୂରିଗଲା । କଂଗ୍ରେସ ରଖିବା ପାଇଁ ବହୁ ଉତ୍ସାହର ସହିତ ସମସ୍ତେ ସ୍ୱୀକାର କଲେ । କଂଗ୍ରେସର ନିୟମାବଳୀ ବଡ଼ ସରଳ ଥିଲା କିନ୍ତୁ ସେଥିଲାଗି ଯେଉଁ ଚାନ୍ଦା ଦେବା କଥା ତାହା ବେଶି । ଯେଉଁମାନେ ମାସିକ ପାଞ୍ଚ ସିଲିଂ ଦେଇ ପାରିବେ ସେମାନେ କେବଳ କଂଗ୍ରେସର ସଭ୍ୟ ହେବେ । ଧନୀଲୋକମାନେ ନିଜ ନିଜ ଶକ୍ତି ଅନୁସାରେ ଚାନ୍ଦା ଦେବା ଲାଗି ଅନୁରୋଧ କରି ଯାଇଥିଲା । ଅବଦୁଲ ସେଠ ମାସିକ ଦୁଇ ପଉଣ୍ଡ ଦେବା ପାଇଁ ତାଲିକାରେ ଲେଖିଲେ । ସମସ୍ତଙ୍କ ଅପେକ୍ଷା ତାଙ୍କ ଚାନ୍ଦା ବେଶି । ଆଉ ଦୁଇ ଜଣ ବନ୍ଧୁ ମଧ୍ୟ ସେତିକି ଲେଖା ଦେବାକୁ ସ୍ୱୀକାର କଲେ ।

ମୁଁ ମଧ୍ୟ ତ୍ରିଶାକର ଦେବା ଉଚିତ ମନେ କରୁନଥିଲି—ସୁତରାଂ ମାସିକ ଏକ ପାଉଣ୍ଡ ଲେଖାରେ ଦେବା ପାଇଁ ଲେଖିଲି । ମୋ ପକ୍ଷେ ଏହା କିଛି ସାମାନ୍ୟ ନୁହେଁ । କିନ୍ତୁ ତାହା ମୋ ମୁଣ୍ଡକୁ ବଳି ପଡ଼ୁଛି ବୋଲି ମୁଁ ଭାବି ନଥିଲି । ଭଗବାନ ମୋର ସାହାଯ୍ୟ ଥିଲେ । ଏକ ପାଉଣ୍ଡ ଦେଇ ବହୁତ ଲୋକ ସଭ୍ୟ ହେଲେ । କିନ୍ତୁ ଦଶ ସିଲିଙ୍ଗ ଚାନ୍ଦା ଦେବା ସଭ୍ୟଙ୍କ ସଂଖ୍ୟା ସବୁଠାରୁ ବେଶି । ଏହା ଛଡ଼ା ଦାନ ସ୍ୱରୂପ ଅନେକ ଧନ ମିଳିଥିଲା ।

କିଛି ଦିନ ପରେ ଦେଖା ଗଲା, ମାଗିବା ଛଡ଼ା କେହିହେଲେ ଚାନ୍ଦା ଧନ ଦେଲେ ନାହିଁ । ଦରବାନ ବାହାରେ ଯେଉଁ ସବୁ ସଭ୍ୟ ଥିଲେ ସବୁବେଳେ ସେମାନଙ୍କଠାରୁ ଯିବା ଅସମ୍ଭବ ହୋଇ ପଡ଼ିଲା । ଲୋକଙ୍କର କ୍ଷଣିକ ଉତ୍ସାହ ଓ ଉତ୍ତେଜନା ପରିକ୍ଷଣରେ ମଉଳିବାକୁ ଲାଗିଲା । ଚାନ୍ଦା ଦେବା ପାଇଁ ଦରବାନର ସଭ୍ୟମାନଙ୍କୁ ମଧ୍ୟ ଅନେକ ଥର ମାଗିବାକୁ ପଡ଼ୁଥାଏ ।

ମୁଁ ସମ୍ପାଦକ ଥିଲି, ସୁତରାଂ ଚାନ୍ଦା ସଂଗ୍ରହ ଭାର ମୋ ଉପରେ ଥାଏ ଏବଂ ସମସ୍ତ ଆଦିଲା, ମୋର କିରାଣୀଙ୍କୁ ମଧ୍ୟ ଦିନଯାକ ଚାନ୍ଦା ସଂଗ୍ରହ କାର୍ଯ୍ୟରେ ନିଯୁକ୍ତ କରିବାକୁ ପଡ଼ିଲା । ସେ ବଡ଼ ବିରକ୍ତ ହେଲେ । ଯଦି ଅନୁଷ୍ଠାନଟିକୁ ଉନ୍ନତ କରିବାକୁ ହୁଏ ତାହାହେଲେ ଚାନ୍ଦାଟା ମାସିକ ବଦଳରେ ବାର୍ଷିକ କରି ତାହା ଆଗତୁରା ଆଦାୟ କଲେ ଭଲ ହେବ ବୋଲି ମୁଁ ଭାବିଲି । ସୁତରାଂ କଂଗ୍ରେସର ଗୋଟିଏ ସଭା ଡକାଇଲି । ଚାନ୍ଦାଟା ମାସିକ ନକରି ବାର୍ଷିକ କରିବା ପ୍ରସ୍ତାବଟି ସମସ୍ତେ ପସନ୍ଦ କଲେ ଓ ଅତି ତ୍ରିଶାରେ ବାର୍ଷିକ ତିନି ପାଉଣ୍ଡ ଲେଖାରେ ଚାନ୍ଦା ଦେବା ପାଇଁ ନିର୍ଦ୍ଧାରିତ ହେଲା । ଚାନ୍ଦା ଆଦାୟ କାର୍ଯ୍ୟଟା ଏହାପରି ସୁରୁଖୁରୁରେ ଚାଲିଗଲା ।

ପଇସା ଧାର ଆଣି ଲୋକସେବା କାମ କରିବା ଉଚିତ ନୁହେଁ ବୋଲି ମୁଁ ଆଗରୁ ଜାଣିଥିଲି । ଅନ୍ୟାନ୍ୟ ବିଷୟ ନେଇ ଲୋକଙ୍କ ପ୍ରତିଜ୍ଞାରେ ବିଶ୍ୱାସ କରାଯାଇ ପାରେ କିନ୍ତୁ ପଇସା ବିଷୟରେ ନୁହେଁ । ଚାନ୍ଦା ଦେବା ସକାଶେ ଅନେକେ ସ୍ୱୀକାର କରି ଥାନ୍ତି କିନ୍ତୁ ଧନ ଦେଲା ବେଳକୁ କେହିହେଲେ ଶୀଘ୍ର ଦେବା କଥା ମୁଁ କେବେ ଦେଖି ନାହିଁ । ନେଟାଲବାସୀ ଭାରତୀୟମାନେ ସେଥିରୁ ବା ଉପର ବାହାର ହେବେ ? ହାତରେ ପାଣି ନଥିଲେ ଆମ୍ଭେମାନେ ଉକ୍ତକାମ କରି ନଥାଉଁ । ସୁତରାଂ କଂଗ୍ରେସ ପକ୍ଷରୁ କେବେହେଲେ ଋଣ କରାଯାଇ ନଥିଲା ।

ସଭ୍ୟ ସଂଗ୍ରହ କରିବା ଲାଗି ମୋର ସହକର୍ମୀମାନେ ଅସାମାନ୍ୟ ଉତ୍ସାହ ଦେଖାଇ ଥିଲେ । ସେ କାର୍ଯ୍ୟ କରିବା ପାଇଁ ସେମାନଙ୍କୁ ଆନନ୍ଦ ଲାଗେ ଓ ପଶ୍ଚାନ୍ତରେ ତାହା ଏକ ଅମୂଲ୍ୟ ଅନୁଭୂତି । ଅନେକ ଲୋକ ନଗଦ ଚାନ୍ଦା ଦେଇ ଆନନ୍ଦର ସହିତ ସଭ୍ୟ ହେଲେ । ପ୍ରତି ପୁରପଲ୍ଲୀ ଭିତରେ କାମ କରିବା ଦୁଃସାଧ୍ୟ; ଲୋକ ହିତକର କାମ କ'ଣ ତାହା କେହି ଜାଣି ନଥିଲେ । ତଥାପି ଆମ୍ଭେମାନେ ଅନେକ ଦୂର ଦେଶରୁ ଆମନ୍ତ୍ରଣ ପତ୍ର ପାଉଁ ଥାଉଁ ଏବଂ ପ୍ରତି ସ୍ଥାନର ବଡ ବଡ଼ ବେପାରୀମାନେ ଆମ୍ଭର ଆତିଥ୍ୟ ଗ୍ରହଣ କରିଥାନ୍ତି ।

ଥରେ ଏପରି ଗସ୍ତ ସମୟରେ ଆମ୍ଭର ଅବସ୍ଥା ଟିକିଏ କଷ୍ଟକର ହୋଇଥିଲା । ସେତେବେଳେ ଭାବିଥିଲୁଁ ଯେ ଆମ୍ଭେମାନେ ଯାହାଙ୍କର ଅତିଥି ଥିଲୁ ସେ ଛଅ ପଉଣ୍ଡ ଚାନ୍ଦା ଦେବେ, କିନ୍ତୁ ତିନି ପଉଣ୍ଡରୁ ଅଧିକ ଦେବା ପାଇଁ ସେ ନାରାଜ ହେଲେ । ଆମ୍ଭେମାନେ ଯଦି ତାଙ୍କ ଠାରୁ ସେହି ଦେୟଟା ଗ୍ରହଣ କରିଥାନ୍ତୁ, ସମସ୍ତେ ତାଙ୍କୁ ଅନୁକରଣକରି ସେତିକି ମାତ୍ର ଦେଇଥାନ୍ତେ ଓ ଆମ୍ଭର ଆଦାୟ ସବୁ ଊଣା ହୋଇ

ଯାଆନ୍ତା । ସେତେବେଳକୁ ବେଶି ରାତି ହେଲାଣି, ଆମ୍ଭେ ସମସ୍ତେ ଭୋକଲା ହୋଇଥିଲୁଁ କିନ୍ତୁ ଯାହା ପାଇବା ପାଇଁ ଆମେମାନେ ଧରି ବସିଛୁଁ ତାହା ମିଳିବା ଯାଏ କପଡ଼ ବା ଭୋଜନ ବରବୁଁ ? ତାହାଙ୍କୁ କେତେ ବୁଝାଇ କହିଲୁ କିନ୍ତୁ କିଛି ଫଳ ହେଲାନାହିଁ । ସେ ଅଟଳ ଓ ଅଚଳ ରହିଲେ । ସହରର ଅନ୍ୟାନ୍ୟ ବେପାରୀମାନେ ତାଙ୍କ ସହିତ ଯୁକ୍ତି ତର୍କ କଲେ; ରାତ୍ରଯାକ ଆମ୍ଭେମାନେ ଅନିଦ୍ର ରହିଲୁଁ । ଉଭୟ ପକ୍ଷ ଲେଶ ମାତ୍ର ପ୍ରତିଜ୍ଞା ଭଙ୍ଗ କରିବୁ ନାହିଁ ବୋଲି ସ୍ଥିର କଲୁଁ । ମୋର ସହକର୍ମୀମାନଙ୍କ ମଧ୍ୟରୁ ଅନେକେ କ୍ରୋଧରେ ଜଳି ଉଠୁଥାନ୍ତି ସତ, କିନ୍ତୁ ସେମାନେ ସହିଷ୍ଣୁତା ହରାଇ ନଥିଲେ । ପାହାନ୍ତିଆ ହୋଇ ଆସିଲା, ସେ ହାର ମାନିଲେ, ଛଅ ପଉଣ୍ଡ ଚାନ୍ଦା ଦେଲେ ଓ ଆମ୍ଭମାନଙ୍କୁ ଭୂରି ଭୋଜନ ଦେଲେ । ଟୋଙ୍ଗେଟରେ ଘଟଣାଟି ହୋଇଥିଲା, କିନ୍ତୁ ଏ ସମ୍ବନ୍ଧେ ସୁଦୂର ଉତ୍ତର ଉପକୂଳସ୍ଥ ଷ୍ଟେଞ୍ଜରଠାରୁ ଆରମ୍ଭ କରି ଡରଲସଟାଉନ ପର୍ଯ୍ୟନ୍ତ କେନ୍ଦ୍ର ସ୍ଥାନର ଲୋକେ ମଧ୍ୟ ଜାଣିଥିଲେ । ଏହି ଘଟଣା ଲାଗି ଆମ୍ଭର ଚାନ୍ଦା ଆଦାୟ କାର୍ଯ୍ୟଟା ମଧ୍ୟ ଶୀଘ୍ର ହୋଇଗଲା ।

ଚାନ୍ଦା ଆଦାୟ କରିବା ଯେ ଏକ ମାତ୍ର କାମ ଥିଲା, ତାହା ନୁହେ । ଆବଶ୍ୟକୀୟ ଧନ ଛଡ଼ା ଅଧିକ ଧନ ହାତରେ ରଖିବା ଉଚିତ ନୁହେ ବୋଲି ମୁଁ ଅନେକ ଦିନରୁ ଶିଖିଥିଲି ।

ମାସକୁ ଥରେ କିମ୍ବା ଆବଶ୍ୟକ ପଡ଼ିଲେ ସପ୍ତାହକୁ ଥରେ କଂଗ୍ରେସର ଅଧିବେଶନ ହେଉଥାଏ । ସେଥିରେ ବିଗତ ଅଧିବେଶନର କାର୍ଯ୍ୟ ବିବରଣୀ ପଢା ଯାଏ ଓ ବିବିଧ ବିଷୟ ନେଇ ତର୍କ ବିତର୍କ ହୁଏ । ସାଧାରଣ ବିଷୟ ଚର୍ଚ୍ଚା କରିବା ପାଇଁ କିମ୍ବା ସ୍ଥୂଳଭାବେ ଆବଶ୍ୟକୀୟ ଉତ୍ତର ଦେବା ଲାଗି ଲୋକଙ୍କର ଅଭ୍ୟାସ ନଥିଲା । ଛିଡ଼ା ହୋଇ ପଦେ

ଅଧେ କହିବା ସକାଶେ ସମସ୍ତେ ଚନ୍ତିତ ହୁଅନ୍ତି । ସଭା ସମିତିରେ କିପରି କାର୍ଯ୍ୟ ମାନ ଚଳିବାକୁ ହୁଏ, ସେ ସବୁ ମୁଁ ସେମାନଙ୍କୁ ବୁଝାଇ କହିଲି, ସମସ୍ତେ ତାହା ମାନିଥିଲେ । ତାହା ଏକ ପ୍ରକାର ଶିକ୍ଷା ବୋଲି ଅନେକେ ଅନୁଭବ କଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ବ୍ୟକ୍ତି ସଭାରେ କହିବା ଶିଖି ନଥିଲେ, କିନ୍ତୁ ସେମାନେ ବନ୍ଧୁ ଲୋକ ଆଗରେ ଜନ ସାଧାରଣ ବିଷୟ ନେଇ କହିବା ଅଭ୍ୟାସ କରି ପାରିଥିଲେ ।

ସାଧାରଣ କାମ କରିବାକୁ ଗଲାବେଳେ ଛୋଟ ଛୋଟ ବାବତରେ ବେଶି ଧନ ଖରଚ ହୋଇଯାଏ ଜାଣି ରସିଦ ବହି ମଧ୍ୟ ପ୍ରଥମେ ନ ଛପାଇବା ପାଇଁ ମୁଁ ସ୍ଥିର କରିଥିଲି । ମୋର ଅଫିସରେ ଗୋଟିଏ ଲିଥ ଯନ୍ତ୍ର ଥାଏ । ରସିଦ ଓ କାର୍ଯ୍ୟ ବିବରଣୀ ସବୁ ମୁଁ ଲିଥକରି ଦିଏ । କଂଗ୍ରେସ ପାଣ୍ଠିରେ ଯେତେବେଳେ ବେଶି ଧନ ହେଲା ଏବଂ କଂଗ୍ରେସର ସଭ୍ୟସଂଖ୍ୟା ଓ କାର୍ଯ୍ୟ ବଢିଲା ସେ ସବୁ ଛପାଇଲି । ପ୍ରତ୍ୟେକ ଅନୁଷ୍ଠାନ ଏହିପରି ବ୍ୟୟ ସଙ୍କୋଚ ଭାବେ ଚଳିବା ବାଞ୍ଛନୀୟ । କିନ୍ତୁ ମୁଁ ଜାଣେ ସବୁବେଳେ ତାହା କାର୍ଯ୍ୟରେ ଦେଖାଯାଏ ନାହିଁ । ସେହେତୁ ନେଟାଲ କଂଗ୍ରେସ ପରି ଗୋଟିଏ ଛୋଟ ଅଥଚ ଉନ୍ନତ ଅନୁଷ୍ଠାନର ପ୍ରାରମ୍ଭରୁ ଏହିପରି ସାମାନ୍ୟ ବିଷୟ ଗୁଡ଼ିକରେ ସତର୍କ ରହିବା ଉଚିତ ବୋଲି ମୁଁ ମନେ କଲି ।

ଲୋକେ ଆମ୍ଭମାନଙ୍କୁ ଯେଉଁ ପଇସା ପଠ ଦିଅନ୍ତି ସେଥିପାଇଁ ରସିଦ ନେବାକୁ ଅମନଯୋଗୀ ହେଉଥାନ୍ତି କିନ୍ତୁ ରସିଦ ଦେବା-ପାଇଁ ଆମ୍ଭେମାନେ ଧରିବସୁ । ପ୍ରତି ପାହୁଲା ପୂରା ଲେଖାରେ ଥାଏ ଓ ୧୮୯୪ ସାଲର ନେଟାଲ କଂଗ୍ରେସ କାଗଜ ପତ୍ରରୁ ସେ ବର୍ଷର ଅଙ୍କକଷା ଆୟ ବ୍ୟୟ ହିସାବ ଏବେ ମଧ୍ୟ ମିଳିବ ବୋଲି ମୁଁ ମୁକ୍ତ କଣ୍ଠରେ କହୁ-

ପାରେ । ହିସାବ ପତ୍ର ସବୁ ସତର୍କରେ ରଖିବା ଯେ କୌଣସି ଅନୁଷ୍ଠାନର ଶୁଭ ଲକ୍ଷଣ । ତାହା ନହେଲେ ଅନୁଷ୍ଠାନଟିର ଦୁର୍ଣ୍ଣାମ ହୁଏ । ଉପଯୁକ୍ତ ହିସାବପତ୍ର ବିନା ସତ୍ୟରକ୍ଷା କରିବା ଅସମ୍ଭବ ।

କଂଗ୍ରେସର ଅନ୍ୟ ଏକ କାର୍ଯ୍ୟ ଥିଲା ନେଟାଲରେ ଜନ୍ମ ଗ୍ରହଣ କରିଥିବା ଶିକ୍ଷିତ ଭାରତବାସୀଙ୍କର ସେବା କରିବା । କଂଗ୍ରେସ ତରଫରୁ "କଲୋନିଏଲ ଭାରତୀୟ ଶିକ୍ଷା ସଂଘ" ବାହାର କରାଗଲା । ଶିକ୍ଷିତ ଯୁବକମାନଙ୍କୁ ସେହି ସଙ୍ଘର ବେଶି ସଭ୍ୟ ସଙ୍ଖ୍ୟା । ସେମାନେ ଅତି ଅଳ୍ପ ଚାନ୍ଦା ଦେଉଥାନ୍ତି । ସଙ୍ଘର କାର୍ଯ୍ୟ ଥିଲା, ସେମାନଙ୍କର ଅଭାବ ଓ ଅଭିଯୋଗ ସବୁ ପ୍ରଚାର କରିବା, ସେମାନଙ୍କ ମନରେ ସଦ୍‌ଭାବ ଜାଗରିତ କରାଇବା, ଭାରତୀୟ ବେପାରୀମାନଙ୍କ ସଂସ୍ରବରେ ସେମାନଙ୍କୁ ଆଣିବା ଓ ନିଜ ସମ୍ପ୍ରଦାୟ ଲାଗି କାର୍ଯ୍ୟ କରିବା ସକାଶେ ସୁବିଧା ଦେବା । ତାହା ଏକ ପ୍ରକାର ବାଦାନୁବାଦ ସମିତି କହିଲେ ଚଳେ । ସଭ୍ୟମାନେ ଧାରାବାହିକ ରୂପେ ମିଶୁଥାନ୍ତି ଓ ନାନା ବିଷୟ ନେଇ କହୁଥାନ୍ତି କିମ୍ବା ପଢୁଥାନ୍ତି । ସଙ୍ଘ ତରଫରୁ ଗୋଟିଏ ପାଠାଗାର ମଧ୍ୟ ଖୋଲା ଯାଇଥିଲା ।

ପ୍ରଚାର କରିବା କଂଗ୍ରେସର ଅନ୍ୟ ଏକ କାର୍ଯ୍ୟ । ନେଟାଲ ଭାରତୀୟମାନଙ୍କ ଅବସ୍ଥା ସମ୍ବନ୍ଧେ ଦକ୍ଷିଣ ଆଫ୍ରିକା ଓ ଲଂଣ୍ଡନବାସୀ ଇଂରେଜମାନଙ୍କୁ ଓ ଭାରତର ଲୋକଙ୍କୁ ଜଣାଇବା ପ୍ରଚାର—କାର୍ଯ୍ୟ ଅନ୍ତର୍ଭୁକ୍ତ । ଏହି ଉଦ୍ଦେଶ୍ୟ ରଖି ମୁଁ ଦୁଇଟି ଖୋଟି ଲେଖା ପତ୍ରିକାରେ ବାହାର କଲି । ପ୍ରଥମଟି—"ଦକ୍ଷିଣ ଆଫ୍ରିକାର ପ୍ରତ୍ୟେକ ଇଂରେଜ ଲୋକଙ୍କୁ ନିବେଦନ" । ସେଥିରେ ନେଟାଲର ଭାରତୀୟମାନଙ୍କ ଅବସ୍ଥା ସମ୍ବନ୍ଧେ ନାନା ପ୍ରମାଣ ଓ ଦୃଷ୍ଟାନ୍ତ ଦେଇ ଗୋଟିଏ ବିସ୍ତୃତ ବିବରଣୀ ଦିଆଯାଇ ଥିଲା । ଅନ୍ୟ ଲେଖାଟି—'ଭାରତୀୟମାନଙ୍କ ଭୋଟାଧିକାର ଓ

'ଏକ ନିବେଦନ' । ସେଥିରେ ଭାରତୀୟମାନଙ୍କ ଭୋଟ ସମ୍ପର୍କରେ ପ୍ରମାଣ ସହ ଏକ ସ୍ଥୂଳ ବିବରଣୀ ଦେଇଥିଲି । ଏହି ଦୁଇଟି ଲେଖିବା ପାଇଁ ମୁଁ ବହୁ ପରିଶ୍ରମ କରି ନାନା ବିଷୟ ପଢ଼ିଥିଲି । ମୋର ଶ୍ରମ ଅନୁଯାୟୀ ଫଳ ମଧ୍ୟ ଫଳିଲା । ଲେଖା ଦୁଇଟି ଯଥେଷ୍ଟ ପ୍ରଚାରିତ ହେଲା ।

ଏସବୁ ଆନ୍ଦୋଳନ ଯୋଗୁଁ ଭାରତୀୟମାନେ ଦକ୍ଷିଣ ଆଫ୍ରିକାରେ ବହୁ ସଙ୍ଖ୍ୟକ ବନ୍ଧୁ ସଂଗ୍ରହ ପାଇଥିଲେ ଓ ଭାରତର ସମୁଦାୟ ରାଜନୈତିକ ଦଳର ଆଦରର ପାତ୍ର ହୋଇ ଥିଲେ । ବିଶେଷ କଥା, ଦକ୍ଷିଣ ଆଫ୍ରିକାବାସୀ ଭାରତୀୟମାନେ ସେଥି ଲାଗି କାର୍ଯ୍ୟର ଗୋଟିଏ ନିର୍ଦ୍ଦିଷ୍ଟ ପନ୍ଥା ଦେଖି ପାରିଥିଲେ ।



## ବିଂଶ ପରିଚ୍ଛେଦ ।

( ବାଲ୍ୟସ୍ମୃତି )



ହୃଦୟର ଅକପଟ ଓ ପବିତ୍ର ଆକାଂକ୍ଷା ସବୁବେଳେ ସଫଳ ହୋଇଥାଏ । ମୋ ଅନୁଭବରେ ମୁଁ ଏହାର ସତ୍ୟତା ଅନେକଥର ଦେଖି ପାରିଛି । ଦରିଦ୍ରଙ୍କ ସେବା ସବୁବେଳେ ମୋର ଅନ୍ତରର ଭାବନା ଏବଂ ସେହି ଭାବନାର ପ୍ରେରଣାରେ ମୁଁ ସବୁବେଳେ ଦୁଃସ୍ଥମାନଙ୍କ ମଧ୍ୟରେ ରହେ ଓ ମୁଁ ନିଜେ ସେମାନଙ୍କ ମଧ୍ୟରୁ ଜଣେ ବୋଲି ଭାବନା କରିଥାଏ ।

ନେଟାଲରେ ଜନ୍ମ ଗ୍ରହଣ କରିଥିବା ଭାରତୀୟମାନେ ଓ କିରାଣୀ ମାନେ 'ନେଟାଲ ଭାରତୀୟ କଂଗ୍ରେସ'ରେ ସଭ୍ୟ ହୋଇ ପାରୁଥିଲେହେଁ ସାଧାରଣ କୁଲି ଓ "ଇନଡେଞ୍ଚରଡ଼ କୁଲି" ମାନେ (ଯେଉଁମାନେ ନିର୍ଦ୍ଦିଷ୍ଟ ସମୟ ପାଇଁ କାମ କରିବା ପାଇଁ ଚୁକ୍ତି ପତ୍ର ଲେଖିଥାନ୍ତି) ସଭ୍ୟ ହୋଇ ନଥିଲେ । ଚାନ୍ଦା ଦେଇ କଂଗ୍ରେସ ସଭ୍ୟ ହେବା ପାଇଁ ସେମାନଙ୍କର କ୍ଷମତା ନଥିଲା । ସେମାନଙ୍କର ସେବା କରି କେବଳ କଂଗ୍ରେସ ସେମାନଙ୍କ ସହିତ ସମ୍ବନ୍ଧ ରଖିବା କଥା । ଏପରି ସେବା କରିବା ପାଇଁ ସମୟ ଆସିଲା; କିନ୍ତୁ କଂଗ୍ରେସ କିମ୍ବା ମୁଁ କୌଣସି କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତ ନଥିଲୁଁ । ମୋଟ ଉପରେ ମୁଁ ତିନି କିମ୍ବା ଚାରି ମାସ ପାଇଁ ଓକାଲତି କରିଛି କି ନାହିଁ ଓ କଂଗ୍ରେସ ମଧ୍ୟ ତାର ଶୈଶବାବସ୍ଥାରେ ଅଛି, ହେନେ ଜଣେ ତାମିଲ ବ୍ୟକ୍ତି ଜୀର୍ଣ୍ଣ ଶୀର୍ଣ୍ଣ ଖଦ ପିନ୍ଧି ପଗଡ଼ିଟିଏ ହାତରେ ଧରି ଆସି ମୋ ଆଗରେ ଥରି ଥରି କାନ୍ଦିବାକୁ ଲାଗିଲେ । ତାଙ୍କର ପ୍ରଭୁ ତାଙ୍କୁ ମାଡ଼ ଦେଇଥିବା ଯୋଗୁଁ ଆଗ ଦାନ୍ତ ଦୁଇଟି ଭାଙ୍ଗି ଯାଇଛି ଓ ଭୁଣ୍ଡରୁ ଧାର ଧାର ରକ୍ତ ବୋହୁଛି । ମୁଁ ତାଙ୍କ ସମ୍ବନ୍ଧେ ମୋର ତାମିଲ କିରାଣୀଠାରୁ ବିସ୍ତର ବିବରଣୀ ପାଇଥିଲି । ଆଘାତ ପ୍ରାପ୍ତ ତାମିଲ ବ୍ୟକ୍ତିଙ୍କର ନାଆଁ 'ବାଲସୁନ୍ଦରମ୍' । ଦରବାନର ଜଣେ ଖ୍ୟାତିନାମା ୟୁରୋପିଅନଙ୍କ ପାଖରେ ସେ ଚାକିରି କରୁଥିଲେ । ସେ ବାଲସୁନ୍ଦରମ୍ ପ୍ରତି କ୍ରୁଦ୍ଧ ହୋଇ ଆତ୍ମ ସଂଯମ ହରାଇ ଥିଲେ ଓ ତାଙ୍କୁ ଏପରି କଠିନ ଦଣ୍ଡ ଦେଇଥିଲେ ଯେ ତାଙ୍କର ଦୁଇଟି ଦାନ୍ତ ଭାଙ୍ଗି ଯାଇଥିଲା ।

ମୁଁ ଜଣେ ଡାକ୍ତରଙ୍କ ପାଖକୁ ତାଂକୁ ପଠାଇଲି । ସେ ସମୟରେ କେବଳ ଗୋରା ଡାକ୍ତରମାନେ ଥାଆନ୍ତି । ବାଲସୁନ୍ଦରମ୍‌ଙ୍କୁ

କିପରି ଧରଣର ମାଡ଼ ହୋଇଅଛି ତାହା ଲେଖି ଦେବା ପାଇଁ ମୁଁ ଡ଼ାକ୍ତରଙ୍କୁ ଅନୁରୋଧ କଲି; ସେ ଖଣ୍ଡେ ପତ୍ର ଲେଖି ଦେଲେ । ସେ ଖଣ୍ଡି ଧରି ବାଲସୁନ୍ଦରମ୍ ସହ ସିଧା ସେଧା ମାଜିଷ୍ଟ୍ରେଟଙ୍କ ଠାକୁ ଗଲି ଓ ତାଙ୍କଠାରେ ବାଲସୁନ୍ଦରମଙ୍କ ଅଭିଯୋଗ ପତ୍ର ଦେଲି । ସେ ତାହା ପଢ଼ି ବଡ଼ କ୍ରୁଦ୍ଧ ହେଲେ ଓ ହଠାତ୍ ବାଲସୁନ୍ଦରମ୍ଙ୍କ ପ୍ରଭୁଙ୍କଠାକୁ 'ସମନ' ପଠାଇଲେ ।

ବାଲସୁନ୍ଦରମ୍ଙ୍କ ପ୍ରଭୁ ଦଣ୍ଡ ପାଆନ୍ତୁ ବୋଲି ମୋର ଇଚ୍ଛା ନଥିଲା । ବାଲସୁନ୍ଦରମ୍ କିପରି ତାଙ୍କଠାରୁ ମୁକ୍ତ ହେବେ, ଏହି କେବଳ ମୋର ଇଚ୍ଛା । ଚୁକ୍ତିପତ୍ର ଲେଖିଥିବା କୁଲିଙ୍କ ସମ୍ବନ୍ଧେ ମୁଁ ଆଇନ ଦେଖିଲି । ପୂର୍ବରୁ ଖବର ନଦେଇ ଯଦି ଜଣେ ସାଧାରଣ ଚାକର ବାହାରି ଯାଏ ସିଭିଲ ଅଦାଲତରେ ତାର ପ୍ରଭୁ ମକଦ୍ଦମା କରି ପାରନ୍ତି । କିନ୍ତୁ ଚୁକ୍ତିପତ୍ର ଲେଖି ଥିବା କୁଲିର କଥା ସମ୍ପୂର୍ଣ୍ଣ ଭିନ୍ନ । ସେ ଯଦି ନକହି ବାହାରି ଯାଏ ତାର ପ୍ରଭୁ କ୍ରିମିନାଲ ଅଦାଲତରେ ମକଦ୍ଦମା କରନ୍ତି ଓ ସେ ଦୋଷୀ ବିବେଚିତ ହେଲେ ଜେଲ ଦଣ୍ଡ ଭୋଗେ । ସୁତରାଂ ଏହିପରି କୁଲି ପ୍ରଥାକୁ ସର ୱିଲିଏମ୍ ହଣ୍ଟର କ୍ରୀତ ଦାସତ୍ୱ ଅପେକ୍ଷା ନିକୃଷ୍ଟ ବୋଲି କହିଥିଲେ । ଚୁକ୍ତିପତ୍ର ଲେଖିଥିବା କୁଲି ମଧ୍ୟ କ୍ରୀତ ଦାସ ପରି ପ୍ରଭୁର ନିଜ ଧନ କହିଲେ ଚଳେ ।

ବାଲସୁନ୍ଦରମଙ୍କୁ ମୁକ୍ତ କରିବା ପାଇଁ ଦୁଇଟି ବାଟ ଉନ୍ମୁକ୍ତ ଥିଲା । ଚୁକ୍ତିପତ୍ର ଲେଖି ଥିବା କୁଲିମାନଙ୍କର ତତ୍ତ୍ୱାବଧାରକଂକୁ କହି ତାଙ୍କ ଚୁକ୍ତିପତ୍ର ରଦ୍ଦ କରିବା କିମ୍ବା ତାଙ୍କୁ ଅନ୍ୟ କାହାର ଅଧୀନରେ ରଖିବା ହେଉଛି ପ୍ରଥମ ଉପାୟ । ତାହା ନହେଲେ ତାଙ୍କୁ ମୁକ୍ତ କରିଦେବା ପାଇଁ ତାଙ୍କ ପ୍ରଭୁଂକୁ କହିବା ହେଉଛି ଦ୍ୱିତୀୟ ପନ୍ଥା । ବାଲସୁନ୍ଦରମ୍ଙ୍କ ପ୍ରଭୁଙ୍କଠାକୁ ମୁଁ ଯାଇ କହିଲି, "ଆପଣଙ୍କ ବିରୁଦ୍ଧରେ ଅଦାଲତକୁ ଯାଇ

ଅପଣଙ୍କ ଦଣ୍ଡ ବିଧାନ କରିବା ମୋର ଇଚ୍ଛାନୁହେ । ଲୋକଙ୍କୁ କଠିନ ଦଣ୍ଡ ଦେଇଅଛନ୍ତି ବୋଲି ଆପଣ ବୋଧହୁଏ ଅନୁଭବ କରି ସାରଲେଣି । ଆପଣ ଯଦି ଚୁକ୍ତିପତ୍ର ଖଣ୍ଡି ଅନ୍ୟ କାହାକୁ ଦଅନ୍ତି ତାହାହେଲେ ମୁଁ ପରିତୃପ୍ତ ହେବି ।" ମୋର ଏ ପ୍ରସ୍ତାବରେ ସେ ସମ୍ମତ ହେଲେ । ତାପରେ କୁଲି ନିଯୁକ୍ତାବଧାରକଙ୍କ ସହିତ ମୁଁ ଦେଖାକଲି । ବାଲସୁନ୍ଦରମଙ୍କ ପାଇଁ ଜଣେ ନୂତନ ପ୍ରଭୁ ଯଦି ମିଳନ୍ତି, ତାହାହେଲେ ତାଙ୍କର କିଛି ଆପତ୍ତି ନାହିଁ ବୋଲି ସେ ମଧ୍ୟ କହିଲେ ।

ତାଙ୍କ ଲାଗି ଜଣେ ପ୍ରଭୁଙ୍କୁ ଖୋଜିବା ପାଇଁ ମୁଁ ବାହାରିଲି; ସେ ଜଣେ ୟୁରୋପିଅନ ହୋଇଥିବା କଥା, କାରଣ ଭାରତୀୟମାନେ ଚୁକ୍ତିପତ୍ର ଲେଖି ଥିବା କୁଲିମାନଙ୍କୁ ଗ୍ରହଣ କରି ନଥାନ୍ତି । ସେ ସମୟରେ ମୁଁ ଅତି ଅଳ୍ପ ୟୁରୋପିଅନମାନଙ୍କୁ ଜାଣିଥିଲି । ସେମାନଙ୍କ ମଧ୍ୟରୁ ଜଣକଠାକୁ ଗଲି । ସେ ବାଲସୁନ୍ଦରମ୍‌ଙ୍କୁ ଚାକର ସ୍ୱରୂପ ଗ୍ରହଣ କରିବା ପାଇଁ ସ୍ୱୀକାର କଲେ । ତାଙ୍କର ଏହି ଉଦାରତା ଦେଖି ମୁଁ କୃତଜ୍ଞତା ପ୍ରକାଶ କଲି । ମାଜିଷ୍ଟ୍ରେଟ ବାଲସୁନ୍ଦରମ୍‌ଙ୍କର ପ୍ରଭୁଙ୍କୁ ଦୋଷୀ ରୂପେ ଧରନେଲେ ସତ, କିନ୍ତୁ ସେ ଚୁକ୍ତିପତ୍ର ଖଣ୍ଡି ହସ୍ତାନ୍ତର କରିବା ପାଇଁ ପ୍ରସ୍ତୁତ ଅଛନ୍ତି ବୋଲି ମଧ୍ୟ ରାୟରେ ଲେଖିଥିଲେ ।

ଚୁକ୍ତିପତ୍ର ଲେଖିଥିବା କୁଲିଙ୍କ ମହଲରେ ବାଲସୁନ୍ଦରମ୍‌ଙ୍କ ବିଷୟ ନେଇ ଚହଳ ପଡ଼ିଗଲା ଓ ମୁଁ ସେମାନଙ୍କ ବନ୍ଧୁରୂପେ ପରିଗଣିତ ହେଲି । ବନ୍ଧୁ ଆଦରର ସହିତ ମୁଁ ସେମାନଙ୍କ ବନ୍ଧୁତ୍ୱ ଗ୍ରହଣ କରିଥିଲି । ଦଳ ଦଳ ହୋଇ କୁଲିମାନେ ମୋ' କଚେରୀକୁ ଆସିବାକୁ ଲାଗିଲେ, ସୁତରାଂ ସେମାନଙ୍କ ସୁଖ ଦୁଃଖ ସବୁ ଜାଣିବା ପାଇଁ ମୋତେ ଉତ୍ତମ ସୁବିଧା ମିଳିଥିଲା ।

ସୁଦୂର ମାନ୍ଦ୍ରାଜରେ ମଧ୍ୟ ବାଲସୁନ୍ଦରମ୍‌ଙ୍କ କଥା ପ୍ରତିଧ୍ୱନିତ ହେଲା । ମାନ୍ଦ୍ରାଜ ପ୍ରଦେଶରୁ ଯେଉଁ କୁଲିମାନେ ନିର୍ଦ୍ଦିଷ୍ଟ ସମୟ କାମ କରିବା ପାଇଁ ନେଟାଲକୁ ଯାଇଥିଲେ; ସେମାନେ ସମସ୍ତେ ଏ ବିଷୟ ଜାଣିଲେ ।

ଏହି ଘଟଣାରେ କିଛି ଯେ ବିଶେଷତ୍ୱ ଥିଲା, ତାହା ନୁହେଁ, କିନ୍ତୁ ନେଟାଲରେ କୁଲିମାନଙ୍କ ସକାଶେ ନିର୍ଭୀକଭାବେ କାମ କରିବା ପାଇଁ ଜଣେ ଅଛନ୍ତି, ଏହି କଥା ତାଙ୍କୁ ବେଶି ଆନନ୍ଦିତ ତଥା ବିସ୍ମିତ କରିଥିଲା ଓ ସେମାନେ ବଡ଼ ଆଶାନ୍ୱିତ ହୋଇଥିଲେ ।

ମୁଁ ପୂର୍ବେ କହିଛି; ବାଲସୁନ୍ଦରମ୍ ଯେତେବେଳେ ମୋ ଅଫିସକୁ ଆସିଲେ ତାଙ୍କ ହାତରେ ପଗଡ଼ିଟିଏ ଥିଲା । ଘଟଣାଟିରୁ ଆମ୍ଭମାନଙ୍କର ଅପମାନର ସୂଚନା ମିଳେ । ପଗଡ଼ି ବାହାର କରିଦେବା ଲାଗି ମୋତେ ଯେଉଁ ଆଦେଶ ଦିଆ ଯାଇଥିଲା ସେ ସମ୍ବନ୍ଧେ ମୁଁ ପୂର୍ବେ କହି ସାରିଛି । ଯଦି ଜଣେ କୁଲି କିମ୍ବା ଅନ୍ୟ କେହି ଅପରିଚିତ ଭାରତୀୟ କୌଣସି ଏକ ୟୁରୋପିଅନଙ୍କୁ ଦେଖିବାକୁ ଯାଆନ୍ତି; ତାହାହେଲେ ମୁଣ୍ଡରୁ ପଗଡ଼ି କିମ୍ବା ଟୋପି ବାହାର କରିବା ପାଇଁ ହୁଏ । ବାଧ୍ୟ ହୋଇ ସେମାନେ ଏହି ଅଭ୍ୟାସ କରି ଥିଲେ । କୃତାଞ୍ଜଳି ପୁଟରେ ନମସ୍କାର କଲେ ମଧ୍ୟ ଯଥେଷ୍ଟ ହେଉ ନଥିଲା । ବାଲସୁନ୍ଦରମ୍ ଭାବିଲେ ମୋ' ପ୍ରତି ମଧ୍ୟ ସେହିପରି ବ୍ୟବହାର କରିବେ । ଏହା ମୋ' ଜୀବନର ପ୍ରଥମ ଅନୁଭୂତି । ମୋତେ ବଡ଼ ଅପମାନ ବୋଧ ହେଲା—ମୁଣ୍ଡରେ ପଗଡ଼ି ବାନ୍ଧିବା ପାଇଁ ମୁଁ ତାଙ୍କୁ କହିଲି । ବହୁତ ଭାବନା ପରେ ସେ ପଗଡ଼ି ବାନ୍ଧିଲେ କିନ୍ତୁ, ସେ ଯେ କି ଅପାର ଆନନ୍ଦ ଅନୁଭବ କରିଥିଲେ, ତାହା ମୁଁ ଦେଖି ପାରିଥିଲି ।

ଭାଇ ଓ ପଡ଼ୋଶୀମାନଙ୍କ ଅପମାନ ଦେଖି ଲୋକେ ଯେ କିପରି ନିଜକୁ ଗୌରବାନ୍ୱିତ ମନେ କରନ୍ତି, ମୁଁ ବୁଝି ପାରୁନାହିଁ, ତାହା ମୋ ପକ୍ଷେ ଗୋଟିଏ ସମସ୍ୟା ହୋଇ ରହିଛି ।



# ଏକବିଂଶ ପରିଚ୍ଛେଦ ।

## ( ତିନ ପଉଣ୍ଡ କର । )



ବାଲସୁନ୍ଦରଂମଙ୍କ ଘଟଣା ଯୋଗୁଁ ମୁଁ ଚୁକ୍ତିପତ୍ର ଲେଖାଇଥିବା ଭାରତୀୟମାନଙ୍କ ସଂସ୍ରବରେ ବେଶି ଆସିଥିଲି । ସେମାନଙ୍କଠାରୁ ଏକ କଠିନ କର ଆଦାୟ କରିବା ପାଇଁ ଯୋଗାଡ଼ ଲାଗିଥିଲା ବୋଲି ମୁଁ ସେମାନଙ୍କ ଅବସ୍ଥା ସମ୍ବନ୍ଧେ ବେଶି ଜାଣିବା ପାଇଁ ବାହାରି ଥିଲି ।

୧୮୯୪ ସାଲରେ ନେଟାଲ ସରକାର ସେମାନଙ୍କଠାରୁ ବାର୍ଷିକ ୨୫ ପଉଣ୍ଡ କର ଆଦାୟ କରିବା ପାଇଁ ବସିଲେ । ପ୍ରସ୍ତାବଟି ଶୁଣି ମୁଁ ସ୍ତମ୍ଭିଭୂତ ହେଲି । ବିଚାର କରିବା ଲାଗି ବିଷୟଟିକୁ ମୁଁ କଂଗ୍ରେସ ଆଗରେ ଉପସ୍ଥାପିତ କଲି—କର ବିରୁଦ୍ଧରେ ଯିବା ପାଇଁ ଆବଶ୍ୟକୀୟ କାର୍ଯ୍ୟ କରିବାକୁ ହେବ ବୋଲି ଠିକ ହେଲା ।

ଉକ୍ତ କରର ଉତ୍ପତ୍ତି ସମ୍ବନ୍ଧେ ଏଠାରେ କିଛି କହିବା ଦରକାର ।

ନେଟାଲବାସୀ ୟୁରୋପିଅନମାନେ ୧୮୬୦ ଖ୍ରୀଷ୍ଟାବ୍ଦରେ ଦେଖିଲେ ଯେ ନେଟାଲରେ ଭଲ ଆଖୁ ଚାଷ ହୋଇ ପାରିବ । ସୁତରାଂ ସେମାନଙ୍କୁ କୁଲି ଦରକାର ପଡ଼ିଲା । ବାହାର କୁଲିଙ୍କ ସାହାଯ୍ୟ ବିନା

ଆଖି, ଗୃହ ଓ ଚାଷ ଅମଦାନ ହେବା ଅସମ୍ଭବ । ନେଟାଲ 'କୁଲି' ମାନଙ୍କ ହାତରେ ଏହି ରକମର କାମ ହୁଏନାହିଁ । ନେଟାଲ ସରକାର ଭାରତ ସରକାରଙ୍କ ସହିତ ପରାମର୍ଶ କରି ଭାରତୀୟ କୁଲିମାନଙ୍କୁ ନିଯୁକ୍ତ କରିବା ସକାଶେ ଅନୁମତି ନେଲେ । କୁଲି ସଂଗ୍ରହ ଲାଗିଲା--ଯେଉଁ କୁଲିମାନେ କାମ କରିବାକୁ ସ୍ୱୀକୃତ ହେଲେ ସେମାନେ ନେଟାଲରେ ପାଞ୍ଚ ବର୍ଷ ପର୍ଯ୍ୟନ୍ତ କାମ କରିବାଲାଗି ଚୁକ୍ତି ପତ୍ରରେ ସ୍ୱାକ୍ଷର କରିଥିଲେ । ପାଞ୍ଚ ବର୍ଷ ଶେଷରେ ସେମାନେ ମୁକ୍ତ ହେବେ ଓ ନେଟାଲରେ ବାସ କରି ଜମି ବାଡ଼ିର ଅଧିକାରୀ ହେବେ ବୋଲି ମଧ୍ୟ ସେ ପତ୍ରରେ ଲେଖା ଥିଲା । କିନ୍ତୁ ତାହା ପ୍ରଲୋଭନ ମାତ୍ର; କାରଣ ଗୋରା ଲୋକମାନଙ୍କ ଇଚ୍ଛା ଯେ ପାଞ୍ଚ ବର୍ଷ ଶେଷ ହେଲା ପରେ ଭାରତୀୟ କୁଲିମାନଙ୍କ ସାହାଯ୍ୟରେ ସେମାନେ ନିଜ ନିଜର ଜମି ବାଡ଼ିରୁ ଭଲ ଫସଲ ଆଦାୟ କରିବେ ।

କିନ୍ତୁ ଭାରତୀୟମାନଙ୍କଠାରୁ ଯାହା ଆଶା କରାଯାଇ ଥିଲା ତାହା ଅପେକ୍ଷା ସେମାନେ ଅଧିକ ପରିଶ୍ରମ କରୁଥିଲେ । ସେମାନେ ବହୁତ ପନିପରିବା ଆଦାୟ କରୁଥାନ୍ତି, ବିଶେଷ କଥା, ଭାରତୀୟ ପରିବା ଆମଦାନି କରିବା ଯୋଗୁଁ ସ୍ଥାନୀୟ ପରିବା ସବୁ ଶସ୍ତା ହେବାକୁ ବସିଲା । ସେମାନେ ଆମ୍ବଗଛ ମଧ୍ୟ ଲଗାଇ ଥିଲେ । କେବଳ ଗୃହରେ ତାଙ୍କର କାମ ଶେଷ ହୋଇ ନଥିଲା, ସେମାନେ ବେପାର ମଧ୍ୟ କରୁଥିଲେ; ଘର ତୋଳିବା ପାଇଁ ଅନେକେ ପଡ଼ିଆ କିଣିଥିଲେ ଓ ଅଳ୍ପଦିନ ଭିତରେ ଅନେକ କୁଲି ଜମିବାଡ଼ି କରି ରହିବାକୁ ଲାଗିଲେ । ଭାରତରୁ ମଧ୍ୟ ବଣିକମାନେ ଯାଇ ସେଠାରେ ବେପାର କରି ସୁଖରେ ରହିଲେ । ସ୍ୱର୍ଗୀୟ ସେଠ ଅବୁବେକର ଅମଦ ସେମାନଙ୍କ ମଧ୍ୟରୁ ଜଣେ । ସେ ଅଳ୍ପ ସମୟରେ ଜଣେ ବଡ଼ ବେପାରି ହୋଇ ଉଠିଲେ ।

ଗୋରା ବେପାରିମାନଙ୍କ ମହଲରେ ଚହଲ ପଡ଼ିଗଲା । ଯେତେବେଳେ ଗୋରାମାନେ ଭାରତୀୟ କୁଲିମାନଙ୍କୁ ନିଯୁକ୍ତ କରନ୍ତି, ସେମାନଙ୍କର ବେପାର କରିବା ଶକ୍ତି ନଥିଲା ବୋଲି ସେମାନଙ୍କର ଧାରଣା । ସେମାନେ ଭାରତୀୟ କୁଲିମାନଙ୍କୁ ସ୍ୱତନ୍ତ୍ର ଗୃହୀରୂପେ ଗ୍ରହଣ କରିପାରନ୍ତି, କିନ୍ତୁ ବେପାରରେ ପ୍ରତିଯୋଗୀ ହେଲେ ସେମାନେ ସହିବା କଥା ନୁହେଁ ।

ଭାରତୀୟମାନଙ୍କ ପ୍ରତି ବୈରଭାବର ବୀଜ ପତନ ଏହିଠାରୁ ଆରମ୍ଭ। ଆଉ ଅନ୍ୟାନ୍ୟ ବିଷୟ ମଧ୍ୟ ସେହି ଭାବକୁ କ୍ରମେ ବଢାଇ ଥିଲା । ଆମର ରହିବା ଢଙ୍ଗ, ସରଳ ଜୀବନ, ସାମାନ୍ୟ ଲାଭରେ ଆମର ଯେ ପରିତୃପ୍ତି, ସ୍ୱାସ୍ଥ୍ୟ ପ୍ରତି ଆମର ଯେ ଅମନୋଯୋଗିତା, ଘର ଗୃହ ପାଖ ନିର୍ମଳ ରଖିବାରେ ଯେ ଅବହେଳା, ଆଉ ଘର ସବୁ ଭଲ ରୂପେ ତିଆର କରିବା ପାଇଁ ଯେ କୃପଣତା, ଏବଂ ଧର୍ମର ପାର୍ଥକ୍ୟ—ଏହାସବୁ ସେହି ବୈର ଭାବାଗ୍ନିରେ ତୈଳ ନିକ୍ଷେପ କରିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବ୍ୟବସ୍ଥାପକ ସଭା ଦ୍ୱାରା ଆଇନ ଜାରି କରି ବୈର ନର୍ଯ୍ୟାତନ ସ୍ପୃହା ଚରିତାର୍ଥ କରିବା ଗୋରାମାନଙ୍କର ଇଚ୍ଛା । ସୁତରାଂ ଭୋଟ ଦେବା କ୍ଷମତା ରଦ୍ଦ କରିବା ସଙ୍କାଶେ ବ୍ୟବସ୍ଥାପକ ସଭାରେ ବିଲ ଆଗତ କରାଗଲା ଓ ଚୁକ୍ତିପତ୍ର ଲେଖିଥିବା କୁଲିମାନଙ୍କ ଉପରେ କର ଧାର୍ଯ୍ୟ ହେଲା । ଏହି ଆଇନ ବାହାରେ ଆହୁରି ଅନେକ ଛୋଟ ଛୋଟ ନର୍ଯ୍ୟାତନାର ସୂତ୍ରପାତ ହୋଇ ସାରିଥିଲା ।

ସର୍ବ ପ୍ରଥମେ ପ୍ରସ୍ତାବ ଥିଲା ଯେ, ଭାରତୀୟ କୁଲିମାନଙ୍କୁ ବଳାତ୍କାରରେ ଫେରିତ ଦେବାକୁ ହେବ—ଏପରି କଲେ ସେମାନଙ୍କର ପାଞ୍ଚ ବର୍ଷ ମିଆଦ ଭାରତରେ ଶେଷ ହେବ । କିନ୍ତୁ ଭାରତ ସରକାର

ଏଥିରେ ଏକମତ ହେବା ସମ୍ଭବ ନୁହେଁ । ସୁତରାଂ ନିମ୍ନଲିଖିତ ମର୍ମରେ ଆଉ ଗୋଟିଏ ପ୍ରସ୍ତାବ କରାଗଲା:—

(କ) ନିର୍ଦ୍ଦିଷ୍ଟ ସମୟ ପାଇଁ କୁଲି କାମ କରିସାରି ଚୁକ୍ତି ପତ୍ର ଲେଖାଇ ଥିବା କୁଲିମାନେ ଭାରତକୁ ଫେରି ଯିବାକୁ ହେବ, ନତୁବା—

(ଖ) ପ୍ରତି ଦୁଇ ବର୍ଷକୁ ଥରେ ଚୁକ୍ତିପତ୍ର ପୁନର୍ବାର ଲେଖିବାକୁ ହେବ, କିନ୍ତୁ ପ୍ରତି ଥର ଲେଖିଲା ବେଳେ ଅଧିକ ଦରମା ବଢ଼ିଯିବ, ନତୁବା —

(ଗ) ଭାରତକୁ ଫେରି ଯିବା ପାଇଁ କିମ୍ବା ପୁନର୍ବାର ଚୁକ୍ତିପତ୍ର ଲେଖିବା ପାଇଁ ଯଦି ସେମାନେ ନାରାଜ ହୁଅନ୍ତି, ତାହାହେଲେ ବାର୍ଷିକ ୨୫ ପାଉଣ୍ଡ ଲେଖା କର ଦେବାକୁ ହେବ ।

ପ୍ରସ୍ତାବଟିକୁ ଗ୍ରହଣ କରିବା ଲାଗି କହିବା ପାଇଁ ସର ହେନେରି ବିନସ୍ ଓ ମିଃ ମେସନଙ୍କ ନେତୃତ୍ୱରେ ଗୋଟିଏ ଡେପୁଟେଶନ ଭାରତ ସରକାରଙ୍କଠାକୁ ପଠାଗଲା । ଲର୍ଡ ଏଲଗିନ୍ ସେତେବେଳେ ଭାରତର ବଡ଼ଲାଟ ଥିଲେ । ୨୫ ପାଉଣ୍ଡ କର ସକାଶେ ସେ ଏକମତ ହେଲେ ନାହିଁ ସତ, କିନ୍ତୁ ମୁଣ୍ଡ ଗଣତି ଅନୁସାରେ ତିନି ପାଉଣ୍ଡ ଲେଖାରେ କର ଆଦାୟ କରିବା ପାଇଁ ଅନୁମତି ଦେଲେ । ଜଣେ ବଡ଼ଲାଟଙ୍କ ପକ୍ଷେ ଏହି ଅନୁମତି ଦାନ ଗୋଟିଏ ଗର୍ହିତ ଦୋଷ ବୋଲି ମୁଁ ସେତେବେଳେ ଭାବିଥିଲି ଓ ଏବେ ସୁଦ୍ଧା ସେହି କଥା ଭାବୁଛି । ସମ୍ମତି ଦାନ ବେଳେ ସେ ଭାରତର ଲାଭାଲାଭ ସମ୍ବନ୍ଧେ ଦୃଷ୍ଟି ଦେଇ ନଥିଲେ । ନେଟାଲ ୟୁରୋପିଅନମାନଙ୍କର ସୁବିଧା ଦେଖିବାତ ତାଙ୍କର କାର୍ଯ୍ୟ ନୁହେ । ତିନି ଚାରି ବର୍ଷ ମଧ୍ୟରେ ଜଣେ କୁଲି ଓ ତାର ସ୍ତ୍ରୀ, ୧୬ ବର୍ଷରୁ ଊର୍ଦ୍ଧ୍ୱ ପ୍ରତ୍ୟେକ ପୁଅ ଓ ୧୩ ବର୍ଷରୁ ଊର୍ଦ୍ଧ୍ୱ ପ୍ରତ୍ୟେକ ଝିଅ

ଏହି କର ଦେବାକୁ ପଡ଼ିଥିଲା । ପତି, ପତ୍ନୀ ଓ ଦୁଇଟି ପିଲା—ଏହିପରି ଗୋଟିଏ ପରିବାରରୁ, ବିଶେଷତଃ ପତିର ହିସାବର ମାସିକ ଆଦାୟ ଚଉଦ ସିଲିଙ୍ଗରୁ ଊର୍ଦ୍ଧ୍ୱ ନହେଉଥିବା ସ୍ଥଳେ ବାର୍ଷିକ ବାର ପାଉଣ୍ଡ କର ଆଦାୟ କରିବା ବଡ଼ ନୃଶଂସ କାର୍ଯ୍ୟ ଏବଂ ଜଗତର କୌଣସି ଠାରେ ଏହିପରି କର ସମ୍ବନ୍ଧେ ଶୁଣା ନାହିଁ ।

ଏହି କର ବିରୁଦ୍ଧରେ ଲଢ଼ିବା ପାଇଁ ଆମ୍ଭେମାନେ ଯୋଗାଡ଼ କଲୁଁ । ନେଟାଲ ଭାରତୀୟ କଂଗ୍ରେସ ଯଦି ଏ ବିଷୟରେ ନୀରବ ରହିଥାନ୍ତା, ତାହାହେଲେ ଭାରତ ବଡ଼ଲାଟ ବୋଧହୁଏ ୨୫ ପାଉଣ୍ଡ କର ଆଦାୟ କରିବା ପାଇଁ ସ୍ୱୀକାର ଅନୁମତି ଦେଇଥାନ୍ତେ । ୨୫ ପାଉଣ୍ଡ ସ୍ଥଳେ ଯେ ତିନ ପାଉଣ୍ଡ ହେଲା ତାହା ବୋଧହୁଏ କଂଗ୍ରେସର ଆନ୍ଦୋଳନ ଯୋଗୁଁ । ଏହା ମୋର ଭୁଲ ଧାରଣା ହୋଇ ପାରେ । କଂଗ୍ରେସ ଆନ୍ଦୋଳନ ପ୍ରତି ଦୃଷ୍ଟି ନଦେଇ ପ୍ରଥମରୁ ଭାରତ ସରକାର ୨୫ ପାଉଣ୍ଡ କର ନାମଞ୍ଜୁର କରି ଥାଇ ପାରନ୍ତି । କିନ୍ତୁ ସେ ଯାହା-ହେଉ ଭାରତ ସରକାରଙ୍କ ପକ୍ଷେ ତାହା ବିଶ୍ୱାସଘାତକତାର କାର୍ଯ୍ୟ ! ଭାରତର ଶୁଭାକାଂକ୍ଷୀ ହୋଇ ସେ ଏହିପରି ଗୋଟିଏ ଅମାନୁଷିକ କର ମଞ୍ଜୁର କରିବା ଉଚିତ ନଥିଲା ।

କଂଗ୍ରେସ ଲଢ଼ିବା ଯୋଗୁଁ ୨୫ ପାଉଣ୍ଡ ପରିବର୍ତ୍ତେ ୩ ପାଉଣ୍ଡ କର ଦେବା ପାଇଁ ଯେ ସ୍ଥିର ହେଲା ତହିଁର କଂଗ୍ରେସର ବେଶି କିଛି କୃତିତ୍ୱ ନାହିଁ । ପୂର୍ଣ୍ଣିମାନଙ୍କରେ କୁଲିମାନଙ୍କର ଦାବି ବଜାୟ ରଖିନାହିଁ ବୋଲି କଂଗ୍ରେସ ଅନୁତାପ କରିଥାଏ । ସେହି ଦିନଠାରୁ କରଟା ନଦେବା ସକାଶେ କଂଗ୍ରେସ ବଦ୍ଧପରିକର ହୋଇ ଥାଏ, କିନ୍ତୁ ମନୋ-ବାଞ୍ଛା ପୂର୍ଣ୍ଣ ହେଲା ବେଳକୁ ୨୦ ବର୍ଷ ଯାଇଥିଲା ଏବଂ ଯେତେବେଳେ

କଂଗ୍ରେସର ଅଭିଳାଷ ପୂର୍ଣ୍ଣ ହୁଏ, ତାହା କେବଳ ନେଟାଲ ଭାରତୀୟମାନଙ୍କ ଲାଗି ନୁହେ, କିନ୍ତୁ ଦକ୍ଷିଣ ଆଫ୍ରିକାର ସମସ୍ତ ଭାରତୀୟମାନଙ୍କ କାର୍ଯ୍ୟ ଯୋଗୁଁ । ସ୍ୱର୍ଗୀୟ ମିଃ ଗୋଖେଲଙ୍କ ପ୍ରତି ଯେ ବିଶ୍ୱାସଘାତକତା ଦେଖା ଯାଇଥିଲା ତାହା ଫଳରେ କଂଗ୍ରେସ ଶେଷ ଥର ଲାଗି ସରକାରଙ୍କ ବିରୁଦ୍ଧରେ ଅଣ୍ଟା ଭିଡି ଠିଆ ହୋଇଥିଲା । ଭାରତୀୟ କୁଲିମାନେ ଆନ୍ଦୋଳନରେ ମନ ପ୍ରାଣ ଢାଳି ଦେଇଥିଲେ——ସରକାର ପକ୍ଷରୁ ଯେଉଁ ଗୁଳି କରା ଯାଇଥିଲା ତାହା ଫଳରେ ସେମାନଙ୍କ ମଧ୍ୟରୁ ଅନେକେ ପ୍ରାଣ ହରାଇ ଥିଲେ, ଓ ପ୍ରାୟ ଦଶ ହଜାର କୁଲି ଆନନ୍ଦର ସହିତ ଜେଲ ଯାଇଥିଲେ ।

କିନ୍ତୁ ପରିଶେଷରେ ସତ୍ୟର ଜୟ ହେଲା । ଭାରତୀୟମାନଙ୍କ ନିର୍ଯାତନା ଭୋଗ ସତ୍ୟର ମୂକ ସାକ୍ଷୀ ଓ ଜ୍ୱଳନ୍ତ ସୂଚନା । ତଥାପି ଅକପଟ ବିଶ୍ୱାସ, ସହିଷ୍ଣୁତା ଓ ଅନବରତ କାର୍ଯ୍ୟ ବିନା ସତ୍ୟର ମଧ୍ୟ ଜୟ ସମ୍ଭବପର ହୋଇ ନଥାନ୍ତା । କୁଲି ସମ୍ପ୍ରଦାୟ ଯଦି ଆନ୍ଦୋଳନରୁ ବିରତ ହୋଇଥାନ୍ତେ, କଂଗ୍ରେସ ଯଦି ନୀରବରେ ଉକ୍ତ କର ଦେବା ପାଇଁ ସ୍ୱୀକାର କରି ଥାନ୍ତା, ତାହାହେଲେ ଆଜି ସୁଦ୍ଧା ଭାରତୀୟ କୁଲିମାନଙ୍କଠାରୁ ସେହି ଗର୍ହିତ କର ଆଦାୟ କରା ଯାଉଥାନ୍ତା ଏବଂ କେବଳ ଦକ୍ଷିଣ ଆଫ୍ରିକାବାସୀ ଭାରତୀୟମାନେ ନୁହନ୍ତି ସାରା ଭାରତ ଆଜି ଲଜ୍ଜିତ ଓ ଅପମାନିତ ହେଉଥାନ୍ତା ।



# ଦ୍ୱାବିଂଶ ପରିଚ୍ଛେଦ ।

( ଶଢ଼ୋ ଧର୍ମପାଠ । )

———ঃঃ০ঃঃ———

ଆତ୍ମଜ୍ଞାନ ଲାଭ ସକାଶେ ମୋର ବଳବତୀ ଇଚ୍ଛା ଥିଲା ବୋଲି ଭାରତୀୟମାନଙ୍କ ସେବାରେ ମୁଁ କାୟ, ମନ ଓ ବାକ୍ୟ ସନ୍ନିବେଶ କରିଥିଲି । ଦେଶ ଦଶ ସେବା କରିବା ଧର୍ମ ବୋଲି ମୁଁ ଧରି ନେଇ ଥିଲି—କାରଣ ଭଗବାନ କେବଳ ସେବା ମାର୍ଗରେ ନିକଟତର ହୋଇ ପାରନ୍ତି ବୋଲି ମୋର ଧାରଣା । ଭାରତ ମୋର ସେବାରେ ସ୍ଥୂଳ-ଚେଷ୍ଟା ନ କରି ସୁଦ୍ଧା ମୁଁ ଭାରତର ସେବକ ହୋଇ ପାରିଥିଲି, କାରଣ ମୋର ସେ ଦଗେ ପ୍ରବୃତ୍ତି ଥିଲା । ମୁଁ ଦକ୍ଷିଣ ଆଫ୍ରିକାକୁ ଯାଇଥିଲି ଭ୍ରମଣ ଉଦ୍ଦେଶ୍ୟରେ, କାଥିଅବାଡ଼ ଦ୍ୱନ୍ଦ୍ୱରୁ ରକ୍ଷା ପାଇବା ପାଇଁ ଓ ମୋର ଭରଣ ପୋଷଣର ବ୍ୟବସ୍ଥା କରିବା ଲାଗି; କିନ୍ତୁ ମୁଁ ଦେଖିଲି, ଭଗବାନଙ୍କୁ ପାଇବା ଇଚ୍ଛାରେ ମୋର ମନ ପ୍ରଧାବିତ ଓ ଆତ୍ମଜ୍ଞାନ ଲାଭ ସକାଶେ ଅନ୍ୱେଷିତ ।

ଖ୍ରୀଷ୍ଟିଆନ ବନ୍ଧୁମାନେ ମୋଠାରେ ଯେଉଁ ଜ୍ଞାନ ଲାଭ ପିପାସା ଜାଗରିତ କରିଥିଲେ, ତାହା ନିବାରିତ ହେବାର ନୁହେ । ମୁଁ ଯଦି ପ୍ରତି ଆମନଯୋଗୀ ହେଲେ ମଧ୍ୟ ସେମାନେ ମୋତେ ସୁଖ ଶାନ୍ତିରେ ରଖାଇ ଦେଉନ୍ତି ନାହିଁ । "ଦକ୍ଷିଣ ଆଫ୍ରିକା ଧର୍ମ ପ୍ରଚାରକ ସଂଘ"ର ନେତା ମିଃ ସ୍ପେନ୍‌ସରୱାଲଟନ ଦରବାନ ଠାରେ ମୋ ସହିତ ପରିଚିତ ହୋଇଥିଲେ । ମୁଁ ତାଙ୍କ ପରିବାରରୁ ଜଣେ ବୋଲି ପରିଗଣିତ ହେଲି । ପ୍ରିଟୋରିଆସ୍ଥ ଖ୍ରୀଷ୍ଟିଆନମାନଙ୍କ ସହିତ ମୋର ସମ୍ପର୍କ ଥିବାରୁ ମୁଁ ୱାଲଟନଙ୍କୁ ବନ୍ଧୁ

ରୂପେ ପାଇଥିଲି । ତାଙ୍କର ବ୍ୟବହାର ସବୁ ସ୍ୱତନ୍ତ୍ର । ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ପାଇଁ ମୋତେ ସେ କେବେହେଲେ ଅନୁରୋଧ କରିଥିବା ମୋର ମନେନାହିଁ । କିନ୍ତୁ ସେ ମୋର ଆଦର୍ଶ ସ୍ଥାନୀୟ ହୋଇଥିଲେ ଓ ତାଙ୍କର ଗୀତ ନୀତି ସବୁ ମୁଁ ଦେଖୁଥିଲି । ସ୍ପାଲ୍ଡିନଂକ ପତ୍ନୀ ଜଣେ ଉଚ୍ଚମନା ଓ ଶିକ୍ଷିତା ସ୍ତ୍ରୀ । ଏହି ଦମ୍ପତ୍ତିଙ୍କର ଆନ୍ତରିକ ବ୍ୟବହାରରେ ମୁଁ ପରିତୃପ୍ତ ହୋଇଥିଲି । ଆମ୍ଭମାନଙ୍କ ମଧ୍ୟରେ ଯେଉଁସବୁ ମତାନ୍ତର ଥାଏ ସେ ସମ୍ବନ୍ଧେ ଆମ୍ଭେମାନେ ଭଲରୂପେ ଜାଣିଥିଲୁଁ । କେତେ ଯୁକ୍ତି ତର୍କ କଲେ ସୁଦ୍ଧା ତାହା ଦୂର ହେବାର ନୁହେ । ପରନ୍ତୁ ଯୁକ୍ତି ତର୍କରେ ଯଦି ସହିଷ୍ଣୁତା, ଦୟାଳୁତା ଓ ସତ୍ୟର ଅପଳାପ ହୋଇ ନଥାଏ ତାହା ବଡ଼ ସୁଫଳ ପ୍ରଦ । ମୁଁ ସେ ଦୁହିଙ୍କ ନମ୍ରତା, ଅଧ୍ୟବସାୟ ଓ କର୍ମାନୁରାଗ ଦେଖି ଆପ୍ୟାୟିତ ହୋଇଥିଲି ଓ ଆମ୍ଭେମାନେ ସବୁବେଳେ ପରସ୍ପର ଦେଖା ସାକ୍ଷାତ କରୁଥିଲୁଁ ।

ଏହି ବନ୍ଧୁତା ଯୋଗୁଁ ମୋର ଧର୍ମାନୁରାଗ ସଞ୍ଜୀବିତ ରହିଥିଲା । ପ୍ରିଟୋରିଆରେ ଥିଲାବେଳେ ଧର୍ମ ପାଠ ସକାଶେ ମୁଁ ଯେଉଁ ଅବସର ପାଇଥିଲି ଏବେ ଆଉ ତାହା ପାଇବା ଅସମ୍ଭବ । କିନ୍ତୁ ଯେଉଁ ସାମାନ୍ୟ ସମୟ ପାଇଁ ମୁଁ ଅବସର ପାଏ ତାହା ସଦ୍‌ବ୍ୟବହାର କରିଥାଏ । ଆଧ୍ୟାତ୍ମିକ ବିଷୟ ନେଇ ବନ୍ଧୁମାନଙ୍କ ଠାରୁ ମୁଁ ଯାହା ଲେଖାଲେଖି କରୁଥାଏ ତାହା ସ୍ଥଗିତ ରଖି ନଥିଲି । ରାୟଚାନ୍ଦ ଭାଇ ମୋର ପଥ ପ୍ରଦର୍ଶକ ହୋଇଥାନ୍ତି । କେହି ଜଣେ ବନ୍ଧୁ ମୋଠାକୁ ନର୍ମଦାଶଙ୍କର କୃତ "ଧର୍ମ ବିଚାର" ବହି ଖଣ୍ଡିଏ ପଠାଇ ଦେଇଥିଲେ । ବହିଟିର ମୁଖବନ୍ଧ ବଡ଼ ଉପାଦେୟ । କବି ଯେ କିପରି ବାସ ଶୂନ୍ୟ ହୋଇ ବୁଲୁଥିଲେ ତାହା ମୁଁ ଶୁଣିଥିଲି । ଆଧ୍ୟାତ୍ମିକ ବିଷୟ ପଢାପଢ଼ି କରି ତାଙ୍କ ଜୀବନରେ ଯେଉଁ

ପରିବର୍ତ୍ତନ ଆସିଥିଲା ତାହାର ସବିସ୍ତର ବର୍ଣ୍ଣନା ମୁଖବନ୍ଧରୁ ପଢି ମୋର ମନ ମୁଗ୍ଧ ହୋଇଗଲା । ପୁସ୍ତକଟି ପ୍ରତି ମୋର ଆଦର ବଢିଲା ଓ ମନଯୋଗ ଦେଇ ତାହା ଆମୂଳାନ୍ତ ପଢିଲି । ବହୁ ଆଦରର ସହିତ ମେକ୍ସ ମୁଲର ଲିଖିତ 'ଭାରତ କଣ ଆମକୁ ଶିଖାଇ ପାରେ ?' ଓ 'ଯୋଗ ରହସ୍ୟ ବାଦୀ ସଙ୍ଘ' ଦ୍ୱାରା ଅନୂଦିତ 'ଉପନିଷଦ୍' ବହିଗୁଡିକ ମଧ୍ୟ ପଢିଲି । ଏସବୁ ବହି ପଢିବା ଯୋଗୁଁ ହିନ୍ଦୁ ଧର୍ମ ପ୍ରତି ମୋର ସମ୍ମାନ ବଢିଲା । କିନ୍ତୁ ଅନ୍ୟାନ୍ୟ ଧର୍ମ ପ୍ରତି ଯେ ମୋର ବୈରଭାବ ଥିଲା, ତାହା ନୁହେ । ୱାଶିଂଟନ୍ ଇର୍‌ଭିଙ୍ଗ ଲିଖିତ 'ମହମ୍ମଦଙ୍କ ଜୀବନୀ' ଓ କବି କାରଲାଇଲଙ୍କ 'ମହମ୍ମଦ' ଶୀର୍ଷକ ପ୍ରବନ୍ଧ ମଧ୍ୟ ପଢିଥିଲି । ଏ ଦୁଇଟି ଲେଖା ପଢିବା ଯୋଗୁଁ ମହମ୍ମଦଙ୍କ ପ୍ରତି ମୋର ସମ୍ମାନ ବଢିବାକୁ ଲାଗିଲା । 'ଜରଥୁଷ୍ଟ୍ରଙ୍କ ବାଣୀ' ନାମକ ଆଉ ଖଣ୍ଡିଏ ବହି ମଧ୍ୟ ପଢିଥିଲି ।

କ୍ରମେ୨ ଅନ୍ୟାନ୍ୟ ଧର୍ମରେ ବେଶି ପ୍ରବେଶ ଲାଭ କଲି । ଧର୍ମପାଠ ଯୋଗୁଁ ମୋର ଆତ୍ମପରୀକ୍ଷା ଶକ୍ତି ବିକଶିତ ହେଲା ଓ ପଢିବା-ବେଳେ ଯାହା ମୋର ମନକୁ ଆକର୍ଷଣ କରୁଥାଏ ତାହା କାର୍ଯ୍ୟରେ ପରିଣତ କରିବା ଅଭ୍ୟାସ ବଳବତ୍ତର ହେବାକୁ ଲାଗିଲା । ହିନ୍ଦୁ ଧର୍ମ ଶାସ୍ତ୍ର ପଢି ମୁଁ ଯେତେଦୂର ବୁଝି ପାରିଥିଲି ସେ ଅନୁସାରେ ସାମାନ୍ୟ କିଛି ଯୋଗ ସାଧନ ଅଭ୍ୟାସ ଆରମ୍ଭ କଲି । କିନ୍ତୁ ମୁଁ ସେଥିରେ ବେଶି କୃତୀତ୍ୱ ଲାଭ କରି ପାରିନଥିଲି ଓ ଠିକ କଲିଯେ ଭାରତକୁ ଆସିଲେ କୌଣସି ଏକ ସୁଦକ୍ଷ ଯୋଗୀଙ୍କଠାରେ ତାହା ଶିଖିବି । ମୋର ସେ ଆଶା ଆହୁରି ଫଳବତୀ ହୋଇ ନାହିଁ ।

ଟଲଷ୍ଟଇଙ୍କ ବହି ସବୁ ମୁଁ ବେଶି ମନ ଦେଇ ପଢିଥାଏ । ତାଙ୍କ 'ସଂକ୍ଷିପ୍ତ ଉପଦେଶ—କଣ କରିବାକୁ ହେବ ?' ଏବଂ ଆଉ କେତେ

ଖ୍ରୀଷ୍ଟି ବହି ପ୍ରତି ମୋର ମନ ମୁଗ୍ଧ ହୋଇଥିଲା । ମନୁଷ୍ୟ ଈଶ୍ୱରପ୍ରେମର ଅଧିକାରୀ ହୋଇ ପାରେ, ଏକଥା ମୁଁ କ୍ରମେ ୨ ଅନୁଭବ କରି ପାରୁଥିଲି ।

ଠିକ ସେ ସମୟରେ ମୁଁ ଆଉ ଗୋଟିଏ ଖ୍ରୀଷ୍ଟିଆନ ପରିବାର ସମ୍ପର୍କରେ ଆସିଲି । ତାଙ୍କର ପ୍ରସ୍ତାବ ଅନୁସାରେ ମୁଁ ପ୍ରତି ରବିବାର ଦିନ ୱେସେଲିଅନ ଗିରିଜାକୁ ଯାଉଥାଏ । ଏହି ଦିନମାନଙ୍କରେ ସବୁ-ବେଳେ ତାଙ୍କ ଘରେ ଭୋଜନ କରିବା ପାଇଁ ମୁଁ ଆମନ୍ତ୍ରିତ ହୋଇଥାଏ । କିନ୍ତୁ ଗିରିଜାକୁ ଯାଇ ମୋର କିଛି ପରିବର୍ତ୍ତନ ହୋଇ ନଥିଲା । ସେଠାର ବକ୍ତୃତା ସବୁ ମୋତେ ନୀରସ ବୋଧ ହେଉଥାଏ । ଯେଉଁମାନେ ସେଠାରେ ରୁଣ୍ଡ ହୁଅନ୍ତି ସେମାନେ ସମସ୍ତେ ଧାର୍ମିକ ବ୍ୟକ୍ତି ବୋଲି ମୋର ଧାରଣା ନଥାଏ । ସେମାନେ ସତ୍ ଭକ୍ତ ନଥିଲେ । ସେମାନଙ୍କୁ ଦେଖି ମୋର ଧାରଣା ହେଲା ଯେ ସେମାନେ ସଂସାର କଥାରେ ଲିପ୍ତ ଆଉ ଗିରିଜାକୁ ଯାଆନ୍ତି କେବଳ କ୍ରୀଡ଼ା କୌତୁକ ସକାଶେ କିମ୍ବା କୌଳିକ ପ୍ରଥା ରକ୍ଷିବା ସକାଶେ । ସମୟେ ୨ ଗିରିଜାରେ ବସି ମୁଁ ଢୋଳାଉ ଥାଏ ବୋଲି ମୋତେ ବଡ଼ ଅପମାନିତ ଲାଗେ, କିନ୍ତୁ ସଭାରେ ମୋ ଭଳିଆ ଆହୁରି ଅନେକ ବ୍ୟକ୍ତି ଥିବା ଯୋଗୁଁ ଅପମାନଟା ତେତେ ବାଧେ ନାହିଁ । କିନ୍ତୁ ଏହି ଅବସ୍ଥାରେ ମୁଁ ଆଉ ବେଶି ଦିନ କଟାଇ ନଥିଲି, ଅଳ୍ପ ଦିନ ଭିତରେ ଗିରିଜାକୁ ଯିବା ବନ୍ଦ କରିଦେଲି ।

ମୁଁ ଯେଉଁ ଖ୍ରୀଷ୍ଟିଆନ ଘରଠାକୁ ପ୍ରତି ରବିବାର ଦିନ ଯାଉଥାଏ ସହସା ତାହା ବନ୍ଦ ହୋଇଗଲା । ଆଉ ତାଙ୍କ ଘରଠାକୁ ଯିବାକୁ ହେବ ନାହିଁ ବୋଲି ମୁଁ ପ୍ରକାରାନ୍ତରେ ଆଦେଶ ପାଇଲି ବୋଲି କୁହା-ଯାଇ ପାରେ । ଘଟଣାଟିର ବିବରଣୀ ଏହି- ସେ ଘରର ସ୍ତ୍ରୀ ବଡ଼ ସରଳା ଓ ସତ୍ ସ୍ୱଭାବା, କିନ୍ତୁ ଟିକିଏ ସଂକୀର୍ଣ୍ଣମନା । ଆମ୍ଭେମାନେ ସବୁବେଳେ ଧର୍ମ

ସମ୍ବନ୍ଧେ ଯୁକ୍ତିତର୍କ କରୁଥାଉଁ । ସେ ସମୟରେ ମୁଁ ଅରନଲଡ୍‌ ଲିଖିତ "ଏସିଆର ଅଲୋକ" ଶୀର୍ଷକ ବହିଖଣ୍ଡି ପୁନର୍ବାର ପଢ଼ୁଥିଲି । ଆମ୍ଭେ ଦୁହେଁ ଦିନେ ଯିଶୁ ଓ ବୁଦ୍ଧଙ୍କ ଜୀବନ ତୁଳନା କରିବାକୁ ଆରମ୍ଭ କଲୁ । ମୁଁ କହିଲି:—"ଦେଖ ଗୌତମଙ୍କ ହୃଦୟ କେପରି ଦୟାଶୀଳ । ତାଙ୍କ ଦୟା ଯେ ମନୁଷ୍ୟ ସମାଜ ପ୍ରତି ଆବଦ୍ଧ ଥିଲା ତାହା ନୁହେଁ, ସମସ୍ତ ଜୀବ ଜନ୍ତୁ ତାଙ୍କ ଦୟାର ପାତ୍ର ଥିଲେ । ସେ ଛେଳି ପିଲାଟିକୁ ଆଦରର ସହିତ କାନ୍ଧରେ ଧରିବା କଥା ଭାବିଲେ କାହାର ହୃଦୟ ପ୍ରେମରେ ନଉଚ୍ଛୁଳିବ ? ଯିଶୁଙ୍କଠାରେ ସମସ୍ତ ଜୀବ ଜନ୍ତୁଙ୍କ ପ୍ରତି ଦୟା ଓ ପ୍ରେମ ଦେଖିବାକୁ ମିଳେ ନାହିଁ ।' ଏହି କଥା ଶୁଣି ସେ ସ୍ତ୍ରୀଙ୍କ ମନରେ ବଡ଼ ଆଘାତ ହେଲା । ମୁଁ ତାଙ୍କ ମନର କଥା ବୁଝିପାରି ଶୀଘ୍ର କଥାଟାର ଉପସଂହାର କରିଦେଲି । ଆମ୍ଭେ ଦୁହେଁ ଖାଇବା ଘରକୁ ଗଲୁଁ । ତାଙ୍କ ପାଞ୍ଚ ବର୍ଷର ଶିଶୁଟି ଆମ୍ଭମାନଙ୍କ ପାଖରେ ଥିଲା । ପିଲାମାନଙ୍କ ମଧ୍ୟରେ ଥିଲା ବେଳେ ମୁଁ ସ୍ୱର୍ଗସୁଖ ଅନୁଭବ କରୁଥାଏ,—ତା'ଙ୍କର ସେହି ଶିଶୁଟିକୁ ଅନେକ ଦିନରୁ ମୁଁ ଆଦର କରୁଥାଏ । ପିଲାଟିର ଥାଳିର ମାଂସ ଖଣ୍ଡିକୁ ନିନ୍ଦା କରି ଓ ମୋ' ଥାଳିର ଫଳକୁ ପ୍ରଶଂସା କରି କହିବାରୁ ସରଳ ଶିଶୁ ମୋ କଥାରେ ଭୁଲିଯାଇ ମୋ ସହିତ ମିଶି ଫଳର ପ୍ରଶଂସା କଲା ।

କିନ୍ତୁ ତା'ର ମାଆ ? ସେ ବଡ଼ ବ୍ୟଥିତା ହେଲେ ଏବଂ ମୋତେ ନିରବ ରହିବାକୁ କହିଲେ । ମୁଁ ସଂଯତ ହେଲି ଓ ବିଷୟ ପରିବର୍ତ୍ତନ କରି ଦେଲି । ପର ସପ୍ତାହରେ ମୁଁ ପୂର୍ବପରି ତାଙ୍କ ଘରଠାକୁ ଗଲାବେଳେ ମୋତେ ବଡ଼ ଭୟ ଲାଗିଲା କିନ୍ତୁ ସେଠାକୁ ନଯିବା ଉଚିତ ମନେ କରି ନଥିଲି ଏବଂ ତାହା ଉଦ୍ଦେଶ୍ୟହୀନ ହେବ ବୋଲି ମଧ୍ୟ ମୋର ଧାରଣା ନଥିଲା । କିନ୍ତୁ ସେ ସ୍ତ୍ରୀ ମୋର ବାଟ ସଫା କରି ଦେଲେ—

ସେ କହିଲେ:—"ଛିଃ ଗାନ୍ଧି ! ମୋର ପିଲା ଆପଣଙ୍କର ସଙ୍ଗୀ ହେବା ଉଚିତ ନୁହେଁ, ଏହା କହିବାକୁ ମୋତେ ଅନୁମତି ଦେବେ ଆଉ ମୋତେ ଭୁଲ୍ ବୁଝିବେ ନାହିଁ । ସବୁ ଦିନେ ସେ ମାଂସ ଖାଇବା ସମ୍ବନ୍ଧରେ ଚିନ୍ତା କରୁଛି ଓ ଆପଣଙ୍କ ଯୁକ୍ତି ତର୍କର ସାହାଯ୍ୟ ନେଇ ଫଳ ଖାଇବା ପାଇଁ ମାଗୁଛି । କଥାଟା ସୀମାତିରିକ୍ତ ହୋଇ ସାରିଲାଣି । ସେ ଯଦି ମାଂସ ଖାଇବା ଛାଡ଼େ ସ୍ୱାସ୍ଥ୍ୟ ଦୁର୍ବଳ ହୋଇ ପଡ଼ିବ ହୁଏତ ତାର ବେମାରି ମଧ୍ୟ ହେବା ସମ୍ଭବ । କିପରି ମୁଁ ତାହା ସହିବି ? ଏଣିକି ଆପଣ ଆମ-ମାନଙ୍କ ସହିତ ଯୁକ୍ତି ତର୍କ କରିବା ଉଚିତ; ପିଲାଙ୍କ ସହିତ ବାଦାନୁବାଦ ଫଳରେ ସେମାନେ ବିପଥ ଗାମୀ ହୋଇ ପାରନ୍ତି ।"

ମୁଁ ଉତ୍ତର ଦେଲି, "ଆପଣଙ୍କ କଥା ଶୁଣି ମୁଁ ନିତାନ୍ତ ଦୁଃଖିତ, ପିଲାଟିର ମାଆ ବୋଲି ଆପଣଙ୍କ ହୃଦୟରେ ତା' ପାଇଁ ଯେ କେତେ ଭାବ ଖେଳ ଯାଉଥିବ, ମୁଁ ଜାଣେ—କାରଣ ମୋର ମଧ୍ୟ ପିଲାମାନେ ଅଛନ୍ତି । ଆମେମାନେ ଶୀଘ୍ର ଏପରି ଅରୁଚିକର ଅବସ୍ଥାର ଉପସଂହାର କରିନେବା । ମୁଁ କଣ ଖାଏ ଓ କଣ ନଖାଏ ତାହା ଦେଖି ପିଲାଟିର ଜୀବନରେ ନିଶ୍ଚୟ ପରିବର୍ତ୍ତନ ଆସିବ । ସୁତରାଂ ଉତ୍କୃଷ୍ଟ ଉପାୟ ହେଉଛି ମୁଁ ଏଠାକୁ ଆଉ ନ ଆସିବା । ଏଥିଦ୍ୱାରା ଆମ ବନ୍ଧୁତ୍ୱରେ କଦାପି ବାଧା ହେବନାହିଁ ।

ବୋଧହୁଏ ଆନନ୍ଦର ସହିତ ସେ କହିଲେ, "ଆପଣଙ୍କୁ ଧନ୍ୟ-ବାଦ ଦେଉଛି ।"



# ତ୍ରୟୋବିଂଶ ପରିଚ୍ଛେଦ ।

( ଗୃହସଂସାର । )

ଘର ପରିଚାଳନା କରିବା ମୋ ପକ୍ଷେ ନୂତନ ଅନୁଭୂତି ନୁହେଁ । କିନ୍ତୁ ନେଟାଲରେ ମୁଁ ଯେଉଁ ଘର କରିଥାଏ, ତାହା ବମ୍ବାଇ ଓ ଲଣ୍ଡନ ଘରଠାରୁ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ନିଜର ସମ୍ମାନ ରକ୍ଷିବା ପାଇଁ ନେଟାଲରେ ବେଶି ଖରଚ କରିବାକୁ ପଡ଼ୁଥାଏ । ନେଟାଲରେ ମୁଁ ଜଣେ ମାତ୍ର ଭାରତୀୟ ବାରିଷ୍ଟର; ସୁତରାଂ ଘର କରଣା ଟିକିଏ ଭଲ ରଖିବା ଆବଶ୍ୟକ ମନେ କରିଥିଲି । ଗୋଟିଏ ଭଲ ଶୁଣା ସ୍ଥାନରେ ମୁଁ ଖଣ୍ଡେ ଘର ରଖିଥାଏ । ଘରଟିରେ ଉପକରଣ ମଧ୍ୟ ବେଶି । ଖାଦ୍ୟ ଜିନିସ ସବୁ ଆଡ଼ମ୍ବର ଶୂନ୍ୟ ହେଲେ ମଧ୍ୟ ଇଂରେଜ ବନ୍ଧୁ ଓ ଭାରତୀୟ ସହକର୍ମୀମାନଙ୍କୁ ଆମନ୍ତ୍ରଣ କରିଥାଏ ବୋଲି ଘର ଖର୍ଚ୍ଚଟା ଟିକିଏ ବେଶି ହୋଇଯାଏ ।

ପ୍ରତ୍ୟେକ ଗୃହସ୍ଥ ସକାଶେ ଜଣେ ଉତ୍ତମ ଚାକର ନିତାନ୍ତ ଦରକାର; କିନ୍ତୁ କପରି ଯେ ଜଣକୁ ଚାକର କରି ରଖିବାକୁ ହେବ ମୁଁ କେବେ ଜାଣିନାହିଁ ।

ମୋର ଜଣେ ବନ୍ଧୁ ମୋ ପାଖରେ ଥାଇ ସମସ୍ତ କାର୍ଯ୍ୟରେ ମୋତେ ସାହାଯ୍ୟ କରୁଥାନ୍ତି । ଏବଂ ଜଣେ ପାଚକ ଘରର ଲୋକ ଭଳିଆ ରହିଥାନ୍ତି । ମୋ ଅଫିସର କିରାଣୀମାନେ ମଧ୍ୟ ମୋ ସହିତ ଖିଆ ପିଆ କରି ମୋର ବସାରେ ଥାଆନ୍ତି ।

ମୁଁ ଭାବୁଛି ଗୃହ ପରିଚାଳନ-ପରୀକ୍ଷାରେ ମୋର କୃତୀତ୍ୱ କମ ନୁହେ, ତଥାପି ସେଥିରେ ମଧ୍ୟ ଜୀବନର ଅସାର ଅନୁଭୂତିର କିଛି ରହି ଥିଲା ।

ମୋର ବନ୍ଧୁ ଜଣକ ବଡ଼ ଚତୁର । ମୋ ପ୍ରତି ତାଙ୍କର ବଡ଼ ବିଶ୍ୱାସ ବୋଲି ମୋର ଧାରଣା ଥାଏ । କିନ୍ତୁ ମୁଁ ନିଜକୁ ନିଜେ ଠକି ଥିଲି । ସେ ମୋ ସହିତ ଥିବା ଜଣେ ଅଫିସ କିରାଣୀର ଶ୍ରୀ ଦେଖିପାରୁ ନଥିଲେ ଏବଂ ଥରେ ଏପରି ଗୋଟିଏ ବ୍ୟୂହ କଲେ ଯେ ମୁଁ କିରାଣୀଟିକୁ ସନ୍ଦେହ କରିବାକୁ ଲାଗିଲି । କିରାଣୀଟି ବଡ଼ ମନୁଆଁ । ମୁଁ ତାଙ୍କୁ ସନ୍ଦେହ କରୁଛି ବୋଲି ଯେତେବେଳେ ସେ ଜାଣିଲେ ମୋର ଘରେ କିମ୍ବା ଅଫିସରେ ନରହି ବାହାରି ଗଲେ । ମୁଁ ତାଙ୍କ ପ୍ରତି ଅଯଥା ବ୍ୟବହାର କରିଛି ବୋଲି ଅନୁଭବ କଲି ଓ ସବୁବେଳେ ମୋର ବିବେକ ମୋତେ ଧିକାରିବାକୁ ଲାଗିଲା ।

ଇତି ମଧ୍ୟରେ ବୋଧହୁଏ କେତେ ଦିନ ସକାଶେ ପାଚକ ଛୁଟି ନେଲେ, କିମ୍ବା ଅନ୍ୟ କୌଣସି କାରଣ ଯୋଗୁ ବାହାରି ଯାଇଥିଲେ । ତାଙ୍କ ଅନୁପସ୍ଥିତିରେ ଅନ୍ୟ ଜଣକୁ ଆଣିବା ଦରକାର ପଡ଼ିଲା । କିଛି ଦିନପରେ ମୁଁ ଶୁଣିଲି ଯେ ନୂତନ ପାଚକଟି ନିତାନ୍ତ ଖରାପ । କିନ୍ତୁ ମୋ ପକ୍ଷେ ସେ ଈଶ୍ୱର-ପ୍ରେରିତ । ସେ ଆସିବା ଦୁଇ ତିନି ଦିନ ଭିତରେ ଦେଖିଲେ ଯେ ମୋ ଘର ଭିତରେ କେତେ ଗର୍ହିତ ପାପ ମୋ ଅଜାଣତରେ ଚାଲି ଆସୁଅଛି । ସୁତରାଂ ମୋତେ ସତର୍କ କରିବା ପାଇଁ ସେ ସ୍ଥିର କଲେ । ମୁଁ ବଡ଼ ସରଳ ବିଶ୍ୱାସୀ ଅଥଚ ନିର୍ଭୀକ ଲୋକ ବୋଲି ଖ୍ୟାତି ଲଭି ଥାଏ । ସୁତରାଂ ସେ ଯାହା ଦେଖିଲେ ତାହା ଅତି ଭୟଙ୍କର ବୋଧ ହେଲା । ସବୁଦିନେ ମଧ୍ୟାହ୍ନ ଏକ ଘଣ୍ଟା ସମୟରେ ଜଳଯୋଗ କରିବା ପାଇଁ ମୁଁ ଅଫିସରୁ ଘରକୁ ଯାଏ । ଦିନେ ବାର ଘଣ୍ଟା ସମୟରେ ପାଚକ ଦୌଡ଼ି ଦୌଡ଼ି କ୍ଳାନ୍ତ ହୋଇ ଅଫିସକୁ ଆସି କହିଲେ "ଶୀଘ୍ର ଘରକୁ ଆସନ୍ତୁ । ଗୋଟିଏ ଆଶ୍ଚର୍ଯ୍ୟ ବିଷୟ ଦେଖିବେ ।"

ମୁଁ ପଚାରିଲି, "ଏବେ ! କାହିଁକି ? କଥାଟା କଣ କହ; ଅଫିସ କାମ ଛାଡ଼ି ଦେଇ ତାହା ଦେଖିବା ପାଇଁ ଏବେ କପରି ମୁଁ ଘରକୁ ଯିବି ?"

ସେ—"ଆପଣ ଯଦି ଏବେ ନ ଆସନ୍ତି ପରେ ଅନୁତାପ କରିବେ, ମୁଁ ଏତିକି ମାତ୍ର କହିପାରେ ।"

ତାଙ୍କର ଏହି ଦୃଢ଼ତାର ଭୁହାଇ ଅନୁରୋଧ ଭିତରେ କିଛି ସତ୍ୟ ଅଛି ବୋଲି ମୁଁ ଅନୁଭବ କଲି । ଜଣେ କର୍ମଚାରୀଙ୍କୁ ସଙ୍ଗରେ ନେଇ ଘରକୁ ଗଲି—ପାଚକ ଆମ୍ଭମାନଙ୍କ ଆଗରେ ଯାଉଥାନ୍ତି । ସେ ମୋତେ ସିଧା ସିଧା ମେଡ଼ ଉପରକୁ ନେଇ ମୋ ବନ୍ଧୁଙ୍କ ଘର ଆଡ଼କୁ ଦେଖାଇ କହିଲେ, "କବାଟ ଖୋଲି ନିଜେ ସବୁ ଦେଖନ୍ତୁ ।"

ମୁଁ ସବୁ ଦେଖିଲି । କବାଟକୁ ଧକା ମାରିଲି, ଉତ୍ତର ପାଇଲି ନାହିଁ । ଏପରି ଜୋର କରି ଧକା ଦେଲି ଯେ କାନ୍ଥ ବାଡ଼ ସବୁ ଡମକିଲା । କବାଟ ଫିଟିଲା, ସେ ଘର ଭିତରେ ଜଣେ ବେଶ୍ୟାକୁ ଦେଖିଲି । ଆଉ କେବେ ହେଲେ ନଆସିବା ପାଇଁ କହି ତାକୁ ଘଉଡ଼ି ଦେଲି ।

ମୋର ବନ୍ଧୁଙ୍କୁ କହିଲି—"ଏହି ମୁହୂର୍ତ୍ତରୁ ତୁମ ସହିତ ମୋର ସବୁ ସମ୍ପର୍କ ତୁଟିଲା । ମୋତେ ଅଜାଯାଏ ଠକି ଥିଲ ଓ ମୋତେ ଜଣେ ବୋକା ବୋଲି ଧରି ନେଇଥିଲ । ମୁଁ ତୁମଠାରେ ଯେଉଁ ବିଶ୍ୱାସ ରଖିଥିଲି, ଏହିପରି କଣ ତାର ପ୍ରତିଦାନ କରୁଛ ?"

ନିଜର ଦୋଷ ସ୍ୱୀକାର କରିବା ଦୂରେଣେ ଥାଉ ମୋତେ ପଦାରେ ପକାଇବା ସକାଶେ ସେ ଭୟ ଦେଖାଇଲେ ।

ମୁଁ କହିଲି, "ମୋର ଲୁଚାଇବା ପାଇଁ କିଛି ନାହିଁ । ମୁଁ ଯାହା କରୁଛି ସେସବୁ ତୁମେ ପ୍ରକାଶ କରିପାର । କିନ୍ତୁ ତୁମେ ଏହି ମୁହୂର୍ତ୍ତରେ ମୋ ଘରୁ ବାହାରି ଯିବାକୁ ହେବ ।"

ତାଙ୍କର ଅବସ୍ଥା ବଡ଼ ଶୋଚନୀୟ ହେଲା । କିନ୍ତୁ ଆଉ କିଛି କରିଯାଇ ନପାରେ । ରନ୍ଧାଳିଆ କିରାଣୀକୁ ମୁଁ କହିଲି; "ପୋଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କଠାକୁ ଯାଇ ମୋର ସଲାମ ଦେବ ଏବଂ ତାଙ୍କୁ କହିବ ଯେ ମୋ ସହିତ ରହିଥିବା ଜଣେ ଲୋକ ଅତ୍ୟାଚାର କରିଅଛନ୍ତି, ତାଙ୍କୁ ଆଉ ଘରେ ରଖିବା ମୋର ଇଚ୍ଛାନୁହେ, କିନ୍ତୁ ସେ ମୋର ଘର ଛାଡ଼ି ଯିବା ପାଇଁ ଇଚ୍ଛା କରୁ ନାହାନ୍ତି । ମୋତେ ଯଦି ପୋଲିସ ସାହାଯ୍ୟ ମିଳେ ତାହାହେଲେ ମୁଁ ଉପକୃତ ହେବି ।"

ଏଥିରୁ ସେ ବୁଝି ପାରିଲେ ଯେ ମୁଁ ଆଉ ଟଳିବାର ନୁହେ । ତାଙ୍କ ପାପ କାର୍ଯ୍ୟ ତାଙ୍କୁ ଭଗ୍ନ ହୃଦୟ କରି ଦେଲା । ସେ ମୋତେ କ୍ଷମା ଭିକ୍ଷା କଲେ, ଓ ପୋଲିସକୁ ଖବର ନଦେବା ସକାଶେ ପ୍ରାର୍ଥନା କରି ହଠାତ୍ ଘରୁ ବାହାରି ଗଲେ ।

ଏ ଘଟଣାଟି ମୋ ଜୀବନରେ ସମୟୋଚିତ ଚେତନା କହିଲେ ଚଳେ । ମୁଁ ଏବେ ଭଲ ରୂପେ ବୁଝି ପାରୁଛି ଯେ ଏହି ପିଶାଚ ପ୍ରକୃତିକ ବନ୍ଧୁ ଦ୍ୱାରା ମୁଁ କେତେର ପ୍ରତାରିତ ହୋଇଥିଲି । ଶୁଭ ଫଳ ଉଦ୍ଦେଶ୍ୟରେ ମୁଁ ତାଙ୍କୁ ଆଶ୍ରୟ ଦେଇଥିଲି ସତ କିନ୍ତୁ ଗୋଟିଏ ଅସାର ଉପାୟ ଧରିଥିଲି । ମୋର ସେ ବନ୍ଧୁ ଖରାପ ପ୍ରକୃତିର ଲୋକ ବୋଲି ମୁଁ ଜାଣି-ଥିଲି, କିନ୍ତୁ ମୋ ପ୍ରତି ତାଙ୍କର ବଡ଼ ବିଶ୍ୱାସ ବୋଲି ମୋର ଧାରଣା ଥାଏ । ତାଙ୍କ ଭଲ କରିବାକୁ ଯାଇ ମୁଁ ନିଜକୁ ପ୍ରାୟ ନାଶ କରୁଥିଲି ।

ବନ୍ଧୁମାନେ ମୋତେ ସତର୍କ କରାଉଥାନ୍ତି । କିନ୍ତୁ ମୁଁ ସେମାନଙ୍କ କଥାରେ ମୂଲ୍ୟ ରଖି ନଥାଏ । ନିର୍ବୋଧତା ମୋତେ ସମ୍ପୂର୍ଣ୍ଣ ଅନ୍ଧ କରି ପକାଇ ଥିଲା ।

ପାଚକର ସାହାଯ୍ୟ ବିନା ମୁଁ ସତ୍ୟଟା ବାହାର କରି ପାରି ନଥାନ୍ତି ଓ ସେ ସମୟରେ ମୁଁ ଯେଉଁ ସମ୍ପର୍କ ବିହୀନ ଜୀବନ ଆରମ୍ଭ କରିଥିଲି, ଉକ୍ତ ବନ୍ଧୁଙ୍କ ସଂସ୍ରବରେ ଆସି ଆଉ ତାହା କରିବା ପାଇଁ ବୋଧହୁଏ ସକ୍ଷମ ହୋଇ ପାରନ୍ତି ନାହିଁ; ତାଙ୍କ ସକାଶେ ମୁଁ ସବୁବେଳେ ବୃଥା ସମୟ ବ୍ୟୟ କରୁଥାନ୍ତି । ମୋଠାରୁ ସବୁ ଲୁଚେଇ ରଖିବା ପାଇଁ ଓ ମୋତେ କୁପଥଗାମୀ କରିବା ପାଇଁ ତାଙ୍କର କ୍ଷମତା ଥିଲା ।

ପୂର୍ବପରି ଭଗବାନ ମୋର ସହାୟତା କଲେ । ମୋର ଅଭିଳାଷ ପବିତ୍ର ଥିଲା, ସୁତରାଂ ଭ୍ରମ ସତ୍ତ୍ୱେ ମୁଁ ରକ୍ଷା ପାଇଥିଲି ଏବଂ ଏହି ଅନୁଭୂତି ମୋତେ ଭବିଷ୍ୟତ ପାଇଁ ସତର୍କ କରାଇ ଥିଲା ।

ପାଚକ ସତେ ଯେପରି ସ୍ୱର୍ଗର ଦୂତ ସ୍ୱରୂପ ମୋଠାକୁ ଆସିଥିଲେ । ସେ ରନ୍ଧା ରନ୍ଧି କାମ କରି ଜାଣନ୍ତି ନାହିଁ, ସେହେତୁ ରାନ୍ଧୁଣିଆ ସ୍ୱରୂପ ମୋ ଘରେ କଦାପି ରହିପାରି ନଥାନ୍ତେ । କିନ୍ତୁ ଅନ୍ୟ କେହି ମୋର ଚକ୍ଷୁ ଫିଟାଇ ପାରି ନଥାନ୍ତେ । ମୁଁ ପରେ ଶୁଣିଲି, ବେଶ୍ୟାଟି ଥରେ ନୁହେଁ ଅନେକ ଥର ଏପରି ଘରକୁ ଆସିଛି କିନ୍ତୁ ଏହି ରାନ୍ଧୁଣିଆ ବ୍ୟତୀତ ଅନ୍ୟ କେହି ସାହସ କରି ମୋତେ କହି ନଥିଲେ; ସେ ବନ୍ଧୁଙ୍କ ପ୍ରତି ମୋର କିପରି ବିଶ୍ୱାସ, ତାହା ସମସ୍ତେ ଜାଣିଥାନ୍ତି । ପାଚକ ବୋଧହୁଏ ମୋଠାକୁ ଆସିଥିଲେ କେବଳ ଏହିକାମ କରିବେ ବୋଲି—କାରଣ ମୋଘରୁ ବାହାରି ଯିବା ପାଇଁ ସେହିକ୍ଷଣି ସେ ଅନୁମତି ମାଗିଲେ ।

ସେ କହିଲେ, "ମୁଁ ଆପଣଙ୍କ ଘରେ ରହି ନପାରେ । ଆପଣ ସହଜରେ ଭୁଲ୍ ଯାଇ ପାରନ୍ତି । ଏହି ସ୍ଥାନ ମୋ ସକାଶେ ନୁହେ ।"

ବାହାର ଯିବା ପାଇଁ ମୁଁ ତାଙ୍କୁ ଅନୁମତି ଦେଲି ।

ଏଥର ମୁଁ ବୁଝିଲି ଉକ୍ତ କତ୍ରୀଣୀଙ୍କ ବର୍ତ୍ତବରେ ମୋତେ ଯେ ଭୁଲାଇ ଥିଲେ ସେ ମୋର ଏହି ବନ୍ଧୁଙ୍କ ଛଡ଼ା ଆଉ କେହି ନୁହନ୍ତି । ସେହି କତ୍ରୀଣୀଙ୍କ ପ୍ରତି ମୁଁ ଯେଉଁ ଅନ୍ୟାୟ କରିଥିଲି ତାର ପ୍ରତିକାର କରିବା ପାଇଁ ମୁଁ କେତେ ଚେଷ୍ଟା କଲି, କିନ୍ତୁ ମୁଁ ତାଙ୍କୁ ସମ୍ପୂର୍ଣ୍ଣ ଭାବେ ତୃପ୍ତ କରି ପାରିଲି ନାହିଁ ବୋଲି ଆଜି ସୁଦ୍ଧା ଅନୁତାପ କରୁଛି । ଗାତ ଟାଙ୍କୁ କେତେ ମରାମତି କଲେ ସୁଦ୍ଧା ଗାତଟା ସବୁ ବେଳେ ଗାତ ।



# ଚତୁର୍ବିଂଶ ପରିଚ୍ଛେଦ ।

( ଗୃହ ପଥେ । )

---

ଏ ସରିକି ମୁଁ ଦକ୍ଷିଣ ଅଫ୍ରିକାରେ ତିନବର୍ଷ ରହି ସାରିଛି, ଲୋକମାନଙ୍କର ଭଲମନ୍ଦ ଅବସ୍ଥା ଜାଣିବା ସୁବିଧା ପାଇଛି ଓ ସେମାନେ ମଧ୍ୟ ମୋତେ ଚହ୍ନିବା ସୁଯୋଗ ପାଇ ଅଛନ୍ତି । ମୁଁ ଅନେକ ଦିନ ସକାଶେ ସେଠାରେ ରହି ଯାଇଥିବା ଯୋଗୁଁ ଛଅ ମାସ ପାଇଁ ଘରକୁ ଯିବା ସକାଶେ ୧୮୯୬ ସାଲରେ ଅନୁମତି ମାଗିଲି । ଓକାଲତିରେ ମୋର ଭଲ ରୋଜଗାର ହେଉଥିଲା ଏବଂ ମୁଁ ଦେଖିଲି ଲୋକେ ମୋର ଉପସ୍ଥିତି ଦରକାର ମନେ କରୁଥିଲେ । ସୁତରାଂ ଭାରତରୁ ମୋର

ପରିବାର ନେଇ ସେଠାରେ ବରାବର ରହିବା ସକାଶେ ନିଷ୍ଟୟ କଲି । ଯଦି ମୁଁ ଭାରତକୁ ଯାଏ, ତାହାହେଲେ କେହି ଲୋକହିତକର କାମ କରିହେବ ଓ ଦକ୍ଷିଣ ଆଫ୍ରିକା ବାସୀ ଭାରତୀୟମାନଙ୍କ ସପକ୍ଷରେ ଲୋକମତ ସଙ୍ଗ୍ରହ କରିହେବ ବୋଲି ମଧ୍ୟ ମୁଁ ଭାବିଥିଲି । ତିନି ପଉଣ୍ଡ କରଟା ପ୍ରତ୍ୟକ୍ଷ ଯନ୍ତ୍ରଣା ହୋଇ ରହିଥାଏ । ତାହା ରଦ କରିବା ଯାଏ ଶାନ୍ତି ଅନୁଭବ କରିବା ସମ୍ଭବ ନୁହେ ।

କିନ୍ତୁ ମୋର ଅନୁପସ୍ଥିତିରେ କଂଗ୍ରେସ ଓ ଶିକ୍ଷା ସଂଘର କାର୍ଯ୍ୟ କିଏ କରିବ ? ଆଦାମଜି ମିଆଁଖାନ ଓ ପାର୍ସୀ ରୁସ୍ତମଜି—ସେ କାମ କରିବେ ବୋଲି ମୁଁ ଭାବିଲି । ବେପାରିମାନଙ୍କ ମଧ୍ୟରୁ ଅନେକେ ଏଥିର କାମ କରିବା ପାଇଁ ଥିଲେ । କିନ୍ତୁ ସେମାନଙ୍କ ମଧ୍ୟରୁ ସମ୍ପାଦକର କାମ ସୁଚାରୁ ରୂପେ ଚଳାଇବା ପାଇଁ ଓ ଭାରତୀୟମାନଙ୍କ ଆଦରଣୀୟ ହୋଇ କେବଳ ଏ ଦୁଇ ଜଣ ଥିଲେ । କାର୍ଯ୍ୟ ଚଳାଇବା ପାଇଁ ସମ୍ପାଦକ କିଛି ଇଂରେଜି ଭାଷା ଜାଣିଥିବା ଦରକାର । ସ୍ୱର୍ଗୀୟ ଆଦାମଜି ମିଆଁଖାନଙ୍କୁ ସମ୍ପାଦକ ସ୍ୱରୂପ ଗ୍ରହଣ କରିବା ସକାଶେ କଂଗ୍ରେସରେ ମୁଁ ପ୍ରସ୍ତାବ କଲି, ମୋର ପ୍ରସ୍ତାବ ମଞ୍ଜୁର କରାଗଲା । ଅନୁଭବରେ ଦେଖା ଗଲା, ତାଙ୍କର ନିଯୁକ୍ତି ବଡ ଆଦରଣୀୟ ଓ ଉପଯୁକ୍ତ ହୋଇଅଛି । ଆଦାମଜି ମିଆଁଖାନ ତାଙ୍କର ଅଧ୍ୟବସାୟ, ଉଦାରତା, ପ୍ରୀତିଭାବ ଓ ମର୍ଯ୍ୟାଦା ଲାଗି ସମସ୍ତଙ୍କର ଆଦରଣୀୟ ହୋଇଥିଲେ ଓ ପ୍ରତ୍ୟେକ ଲୋକ ବୁଝିନେଲେ ଯେ ସମ୍ପାଦକ କାମ କରିବାକୁ ହେଲେ ବାରିଷ୍ଟର ପାଶ କରିବା କିମ୍ବା ବେଶି ଇଂରେଜି ଜାଣିବା ନିତାନ୍ତ ଦରକାର ନୁହେ ।

୧୮୯୬ ସାଲର ମଧ୍ୟ ଭାଗରେ କଲିକତାକୁ ଯାଉଥିବା "ଏସ: ଏସ: ପଂଗୋଲା" ନାମକ ଜାହାଜରେ ମୁଁ ଭାରତକୁ ବାହାରିଲି ।

ସେତେବେଳେ ଯାତ୍ରୀମାନଙ୍କ ସଂଖ୍ୟା ଅତି ଅଳ୍ପ । ସେମାନଙ୍କ ମଧ୍ୟରୁ ଦୁଇଜଣ ଇଂରେଜ ହାକିମଙ୍କ ସହିତ ମୋର ଘନିଷ୍ଠ ସମ୍ବନ୍ଧ ରହି[illegible] । [illegible] ସହିତ ମୁଁ ପ୍ରତିଦିନ ଏକ ଘଣ୍ଟା ଚେସ ଖେଳୁଥାଏ । [illegible] ମୋତେ "ତାମିଲ ଆତ୍ମଶିକ୍ଷକ" ( Tamil Self T[illegible]cher ) ବୋଲି ବହି ଖଣ୍ଡିଏ ଦେଲେ । ମୁଁ ତାହା ପଢିବାକୁ ଆରମ୍ଭ କଲି । ମୋର ନେଟାଲ ଅନୁଭୂତିରୁ ମୁଁ ବୁଝି ପାରିଥିଲି ଯେ ମୁସଲମାନମାନଙ୍କ ସହିତ ସମ୍ପର୍କ ରଖିବାକୁ ହେଲେ ଉର୍ଦ୍ଦୁ ଭାଷା ଓ ମାନ୍ଦ୍ରାଜୀମାନଙ୍କ ସହିତ ସମ୍ବନ୍ଧ ରଖିବାକୁ ହେଲେ ତାମିଲ ଭାଷା ଶିଖିବାକୁ ହେବ ।

ମୋର ଇଂରେଜ ବନ୍ଧୁ ମୋ ସହିତ ଉର୍ଦ୍ଦୁ ଭାଷା ପଢୁଥାନ୍ତି । ତାଙ୍କର ଅନୁରୋଧରୁ ଯାତ୍ରୀମାନଙ୍କ ଭିତରୁ ଜଣେ ଉର୍ଦ୍ଦୁ ଶିକ୍ଷକଙ୍କୁ ମୁଁ ବାଛି ନେଲି । ଆମ୍ଭେ ଦୁହେଁ ଉର୍ଦ୍ଦୁ ପଢ଼ାରେ ବେଶି ଶିକ୍ଷା କରି ପାରିଥିଲୁଁ । ମୋ ଅପେକ୍ଷା ଉକ୍ତ ବନ୍ଧୁଙ୍କର ସ୍ମରଣ ଶକ୍ତି ଅଧିକ । ଥରେ ଦେଖିଥିବା ପଦ ତାଙ୍କ ମନରୁ ଆଉ ପାସୋରିବାର ନୁହେ । ଉର୍ଦ୍ଦୁ ଅକ୍ଷର ଗୁଡିକ ଚିହ୍ନିବା ପାଇଁ ମୋତେ ଅନେକ ସମୟରେ ଅସୁବିଧା ହୋଇଥାଏ । ମୁଁ କିନ୍ତୁ ଅଧ୍ୟବସାୟ କରି ସୁଦ୍ଧା ଉକ୍ତ ବନ୍ଧୁଙ୍କୁ ହଟାଇ ପାରିନଥିଲି ।

କିନ୍ତୁ ତାମିଲ ଭାଷାରେ ମୁଁ ଭଲ ଶିକ୍ଷା ପାଇଥିଲି । ମୋତେ କୌଣସି ଠାରୁ ସାହାଯ୍ୟ ମିଳିନଥାଏ ସତ, କିନ୍ତୁ "ତାମିଲ ଆତ୍ମ ଶିକ୍ଷକ ବହି ଖଣ୍ଡି ସୁନ୍ଦର ଲେଖା ଯାଇଥିବା ଯୋଗୁଁ ବାହାର ସାହାଯ୍ୟ ବେଶି ଦରକାର କରିନଥିଲି ।

ଭାରତରେ ପ୍ରବେଶ କଲା ପରେ ମଧ୍ୟ ଏହିପରି ପଢ଼ାପଢି କରୁଥିବି ବୋଲି ଆଶା କରିଥିଲି, କିନ୍ତୁ ତାହା ଅସମ୍ଭବ ହୋଇ ପଡିଲା ।

୧୮୯୩ ସାଲରୁ ଆଜି ପର୍ଯ୍ୟନ୍ତ ମୋର ଅଧିକାଂଶ ପଢ଼ା ଜେଲ ଭିତରେ ହୋଇଅଛି । ଦକ୍ଷିଣ ଆଫ୍ରିକା ଜେଲରେ ତାମିଲ ଓ ଏରବ୍ଡ଼ା ଜେଲରେ ଉର୍ଦ୍ଦୁ ଶିଖିଥିଲି । କିନ୍ତୁ ତାମିଲ କଥା କହିବା ମୁଁ ଶିଖି ନଥିଲି, ଏବଂ ଯାହା କିଛିଏ ଆସୁଥିଲା ଅଭ୍ୟାସ ନଥିବାରୁ ତାହା ମଧ୍ୟ ଏବେ ପାସୋର ଅସିଲାଣି ।

ତାମିଲ କିମ୍ବା ତେଲୁଗୁ ଅନଭିଜ୍ଞତା କିପରି ଅନ୍ତରାୟ ହୋଇ-ଅଛି ତାହା ମୁଁ ଆଜି ସୁଦ୍ଧା ଅନୁଭବ କରୁଅଛି । ଦକ୍ଷିଣ ଆଫ୍ରିକାରେ ଦ୍ରାବିଡ଼ମାନେ ମୋତେ ଯେଉଁ ପ୍ରେମ କରୁଥିଲେ ତାହା ମୋର ପାସୋରିବାର ନୁହେ । ମୁଁ ଯଦି କୌଣସି ଜଣେ ତେଲୁଗୁ କିମ୍ବା ତାମିଲ ବନ୍ଧୁଙ୍କୁ ଦେଖେ, ଦକ୍ଷିଣ ଆଫ୍ରିକାରେ ତାଙ୍କ ଜାତୀୟ ଲୋକଙ୍କ ବିଶ୍ୱସ୍ତତା, ଅଧ୍ୟବସାୟ ଓ ନିସ୍ୱାର୍ଥପରତା ହିଁ ମନେ ପଡ଼େ । ସେମାନେ ସମସ୍ତେ ଅଶିକ୍ଷିତ; ସ୍ତ୍ରୀ ଓ ପୁରୁଷ ସମସ୍ତେ ସମାନ । ଦକ୍ଷିଣ ଆଫ୍ରିକାରେ ଯେଉଁ ଅହିଂସା ଯୁଦ୍ଧ ଲାଗିଥିଲା ତାହା କେବଳ ଦରିଦ୍ର ଓ ଅଶିକ୍ଷିତ ଲୋକଙ୍କ ସକାଶେ; ଏବଂ ଦରିଦ୍ର ଅଶିକ୍ଷିତ ଲୋକମାନେହିଁ ସେଥିରେ ଯୋଗ ଦେଉଥିଲେ । ସେ ଯାହାହେଉ ଭାଷା ଅନଭିଜ୍ଞତା ସେମାନଙ୍କ ସ୍ନେହରୁ ମୋତେ ବଞ୍ଚିତ କରି ନଥିଲା । ସେମାନେ ସାମାନ୍ୟ ହିନ୍ଦୁସ୍ତାନୀ କିମ୍ବା ସାମାନ୍ୟ ଇଂରେଜୀ କହୁଥାନ୍ତି, ସୁତରାଂ ଆମ କାର୍ଯ୍ୟରେ କିଛି ବାଧା ହୁଏ ନାହିଁ । ତାମିଲ ଓ ତେଲୁଗୁ ଶିଖି ସେମାନଙ୍କର ସ୍ନେହର ପ୍ରତିଦାନ କରିବା ମୋର ଇଚ୍ଛା ଥିଲା । ମୁଁ କହିଛି, ତାମିଲରେ ମୋର ସାମାନ୍ୟ କିଛି ପାରଦର୍ଶିତା ଥିଲା, କିନ୍ତୁ ଭାରତକୁ ଆସିବା ପରେ ତେଲୁଗୁ ଶିଖିବା ପାଇଁ ଚେଷ୍ଟା କରି କେବଳ ଅକ୍ଷର ଛଡ଼ା ଆଉ କିଛି ଶିଖି ପାରି ନଥିଲି । ମୋର ଏବେ ସନ୍ଦେହ ହେଉଛି ଏ ଭାଷା ଗୁଡ଼ିକ

ଆଜି ମୁଁ ଶିଖି ପାରିବି ନାହିଁ । ସୁତରାଂ ମୁଁ ଆଶାକରୁଛି ଦ୍ରାବିଡମାନେ ଯେପରି ହିନ୍ଦୁସ୍ଥାନୀ ଶିଖିବେ । ଦକ୍ଷିଣ ଆଫ୍ରିକାର ଦ୍ରାବିଡମାନଙ୍କ ମଧ୍ୟରୁ ଯେଉଁମାନେ ଇଂରାଜି କହିପାରନ୍ତି ନାହିଁ ଯେ କୌଣସି ଭାବରେ ହେଉ ସେମାନଙ୍କୁ ହିନ୍ଦୀ ତଥା ହିନ୍ଦୁସ୍ଥାନୀ କହି ଆସେ । ଯେଉଁମାନେ ଇଂରେଜି କହି ପାରନ୍ତି ସେମାନେ କେବଳ ହିନ୍ଦୁସ୍ଥାନୀ ଶିଖନ୍ତି ନାହିଁ—ସତେ ଯେପରି ଇଂରେଜି ଭାଷା ଅଭିଜ୍ଞତା ଆମ୍ଭ ନିଜ ନିଜ ଭାଷା ଶିକ୍ଷାର ଅନ୍ତରାୟ ହୋଇ ପଡ଼େ ।

କିନ୍ତୁ ଏସବୁ ଅପ୍ରାସଙ୍ଗିକ କଥା ଏଠାରେ କାହିଁକି ? ମୋର ଯାତ୍ରା ବିବରଣୀର ଅବତାରଣା କରାଯାଉ । ପାଠକଙ୍କୁ ଏସଃ ଏସଃ ପାଙ୍ଗୋଲା ନାହାଜ କପ୍ତାନଙ୍କର ସାମାନ୍ୟ ପରିଚୟ ଦେବା ଦରକାର । ଆମ୍ଭେ ଦୁହେଁ ସ୍ନେହସୂତ୍ରରେ ଆବଦ୍ଧ ହୋଇ ଯାଉଥିଲୁ । କପ୍ତାନ ପ୍ଲିମାଉଥ୍ର ବାସିନ୍ଦା । ଆମର କଥାବାର୍ତ୍ତା ନୌଯାତ୍ରୀ ସୁଲଭ କଥା ନୁହେଁ—ସେ ସବୁ ଆଧ୍ୟାତ୍ମିକ କଥା । ନୀତି ଓ ବିଶ୍ୱାସ ମଧ୍ୟରେ ପାର୍ଥକ୍ୟ ଅଛି ବୋଲି ତାଙ୍କର ଧାରଣା । ବାଇବଲର ଶିକ୍ଷା ସବୁ ତାଙ୍କ ପକ୍ଷେ ପିଲା ଖେଳ ପରି । ବାଇବଲର ସୌନ୍ଦର୍ଯ୍ୟ କେବଳ ତାର ସରଳତା ମଧ୍ୟରେ ନିହିତ ବୋଲି ସେ କହନ୍ତି-ସ୍ତ୍ରୀ, ପୁରୁଷ, ବାଳକ ବାଳିକା ସମସ୍ତେ ଯୀଶୁଙ୍କ ଠାରେ ଓ ତାଙ୍କ ତ୍ୟାଗରେ ବିଶ୍ୱାସ କଲେ ସେମାନଙ୍କର ପାପ ସବୁ ଧୋଇ ହୋଇ ଯାଏ । କପ୍ତାନଙ୍କ କଥା ଶୁଣି ପ୍ରିଟୋରିଆରେ ମୁଁ ଯେଉଁ ପ୍ଲିମାଉଥ୍ ଖ୍ରୀଷ୍ଟ-ଧର୍ମୀଭାଇଙ୍କୁ ଦେଖିଥିଲି ତାଙ୍କ କଥା ମୋର ମନେ ପଡ଼ିଲା । ଯେଉଁ ଧର୍ମ କୌଣସି ନୈତିକ ଅନ୍ତରାୟରେ ମନୁଷ୍ୟଙ୍କୁ ଆବଦ୍ଧ ରଖେ କପ୍ତାନଙ୍କ ପକ୍ଷେ ତାହା ଭଲ ଧର୍ମ ନୁହେ । ସବୁବେଳେ ମୋର ଫଳାହାର କଥା ନେଇ ଯୁକ୍ତି ତର୍କ ଗୃହଥାଏ । ମୁଁ କାହିଁକି ମାଂସ ନ

ଖାଇବ ? ଗୋମାଂସ ଖାଇବା ନିଷେଧ କାହିଁକି ? ମନୁଷ୍ୟର ଆମୋଦ ପ୍ରମୋଦ ଲାଗି ଭଗବାନ ଯେପରି ଉଦ୍ଭିଦ ସଂସାର ସୃଷ୍ଟି କରି ଅଛନ୍ତି ଜୀବ ଜନ୍ତୁ କଣ ସେହି ଉଦ୍ଦେଶ୍ୟରେ ସୃଷ୍ଟ ହୋଇ ନାହାନ୍ତି ? ଏହିପରି ପ୍ରଶ୍ନ ଯୋଗୁଁ ଉଭୟେ ବଳେ ବଳେ ଆଧ୍ୟାତ୍ମିକ ବିଷୟ ନେଇ କଥା ବାର୍ତ୍ତା କରିଥାଉଁ ।

କିନ୍ତୁ କେହି କାହାକୁ ତୃପ୍ତ କରି ପାରି ନଥିଲୁ । ମୋର ଦୃଢ଼ ଧାରଣା—ଧର୍ମ୍ମ ଓ ନୀତି ମଧ୍ୟରେ ପ୍ରଭେଦ କିଛି ନାହିଁ । ତାଙ୍କର ଧାରଣା ଠିକ୍ ବିପରୀତ, ତାହା ଭୁଲ ବୋଲି ସେ ଲେଶ ମାତ୍ର ସନ୍ଦେହ କରି ନଥାନ୍ତି ।

୨୪ ଦିନ ପରେ ମୋର ଯାତ୍ରା ଶେଷ ହେଲା—ହୁଗୁଳି ନଦୀର ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇ ମୁଁ କଲିକତାରେ ଓହ୍ଲାଇଲି, ଠିକ ସେହି ଦିନ ଗାଡ଼ିରେ ବମ୍ବାଇ ବାହାରି ଗଲି ।

## ପଞ୍ଚବିଂଶ ପରିଚ୍ଛେଦ ।

( ଭାରତରେ । )

ମୁଁ ବମ୍ବାଇକୁ ଯାଉଥିବା ବେଳେ ଆଲ୍ଲାହାବାଦଠାରେ ୪୫ ମିନିଟ ପାଇଁ ଗାଡ଼ି ରହିଲା । ସହର ଭିତରେ ବୁଲି ଏହି ସମୟ୍ଟିକ ଅତି ବାହିତ କରିବା ପାଇଁ ମୁଁ ସ୍ଥିର କଲି । ଜଣେ ଡ଼ାକ୍ତରଙ୍କ ଠାରୁ କିଛି ଔଷଧ କିଣିବା ପାଇଁ ମଧ୍ୟ ମୋତେ ଦରକାର ଥିଲା । ଦୋକାନୀ ବାଲା ଯାଇ ଶୋଇ ପଡ଼ିଥିଲେ । ସୁତରାଂ ଔଷଧ ଦେବା ପାଇଁ ଅଯଥା ଡେରି

କରିଥିଲେ । ମୁଁ ଷ୍ଟେସନ ଠାରୁ ଆସିଲା ବେଳକୁ ଗାଡ଼ି ସେହିକ୍ଷଣି ଛାଡ଼ିଲା । ମୋଲାଗି ଷ୍ଟେସନ ମାଷ୍ଟର ଏକ ମିନଟ ସକାଶେ ଗାଡ଼ିଟି ରଖିଥିଲେ, କିନ୍ତୁ ମୁଁ ନ ଆସିବାର ଦେଖି ମୋର ଜିନିସ ପତ୍ର ସବୁ ଗାଡ଼ିରୁ ବାହାର କରି ଦେଇଥିଲେ ।

କେଲନେର ହୋଟେଲରେ ମୁଁ ଗୋଟିଏ ବଖରା ଭଡ଼ା ନେଲି ଓ ସେହିକ୍ଷଣି ସେଠାରେ କାର୍ଯ୍ୟ ଆରମ୍ଭ କରିବା ପାଇଁ ନିଷ୍ପତ୍ତି କଲି । ଆଲ୍ଲାହାବାଦରୁ 'ପାଇଓ୍ୱନର' ( Pioneer ) ନାମକ ଯେଉଁ ପତ୍ରିକା ଖଣ୍ଡି ବାହାରେ, ତା ସମ୍ବନ୍ଧେ ମୁଁ ଅନେକ କଥା ଶୁଣିଥିଲି—ତାହା ଭାରତୀୟ ଜାତୀୟ ଜାଗରଣର ବିରୁଦ୍ଧ ମତ ବାଦୀ ବୋଲି ମଧ୍ୟ ବୁଝି ପାରିଥିଲି । ମୋର ମନେ ଅଛି ସେତେବେଳେ ମିଃ ଚେସନି ପତ୍ରିକାର ସମ୍ପାଦକ ଥିଲେ । ପ୍ରତ୍ୟେକ ଦଳରୁ ସାହାଯ୍ୟ ପାଇବା ମୋର ଇଚ୍ଛା । ସୁତରାଂ ଚେସନିଙ୍କ ଠାରୁ ଖଣ୍ଡିଏ ପତ୍ର ଲେଖିଲି । ମୁଁ ଗାଡ଼ି ନ ପାଇବା ବିଷୟ ଲେଖି ତା ପର ଦିନ ଗାଡ଼ିରେ ଯିବା ଯାଏ ମୁଁ ତାଙ୍କ ସହିତ ଦେଖା କରିବି ବୋଲି ଅନୁରୋଧ କରିଥିଲି । ସେ ସ୍ୱୀକାର କରିଥିଲେ ଓ ମୋର କଥା ସବୁ ସହିଷ୍ଣୁ ଭାବେ ଶୁଣିଥିଲେ ବୋଲି ମୋର ଆନନ୍ଦର ସୀମା ରହିନଥିଲା । ମୁଁ ଯାହା ତାଙ୍କ ପତ୍ରିକାରେ ଲେଖିବି, ସେଥି ପ୍ରତି ସେ ଦୃଷ୍ଟି ଦେବେ ବୋଲି ସ୍ୱୀକାର କଲେ ସତ, କିନ୍ତୁ ଭାରତୀୟମାନଙ୍କ ସମୁଦାୟ ଦାବୀ ସମର୍ଥନ କରିବା ପାଇଁ ପ୍ରତିଶ୍ରୁତ ହୋଇ ପାରିବେ ନାହିଁ ବୋଲି ମଧ୍ୟ କହିଥିଲେ । ବିପକ୍ଷ ପକ୍ଷର ଭାବ ବୁଝିବା ଓ ସେଥି ପ୍ରତି ମଧ୍ୟ ଉପଯୁକ୍ତ ଦୃଷ୍ଟି ଦେବା ଉଚିତ ବୋଲି ସେ ମନେ କରିଥିଲେ ।

ମୁଁ କହିଲି—“ବିଷୟଟି ଭଲରୂପେ ବୁଝି ସେ ସମ୍ବନ୍ଧେ ଆପଣଙ୍କ ପତ୍ରିକାରେ ସମାଲୋଚନା କଲେ ଯଥେଷ୍ଟ । ଖାଣ୍ଟି ନ୍ୟାଯ୍ୟ ଛଡ଼ା ମୋର ଆଉ ଅଧିକା କିଛି ମାଗିବା ପାଇଁ ଅଭିଳାଷ ନାହିଁ । ତାହା ଆମର ନ୍ୟାଯ୍ୟଦାବୀ ।”

ଦିନର ଅବଶିଷ୍ଟାଂଶ ସହର ବୁଲିବାରେ ଆଉ ତ୍ରିବେଣୀର ମୁହାଣ ଦୃଶ୍ୟ ଦେଖିବାରେ କଟିଥିଲା । ବୁଲିଲା ବେଳେ ମଧ୍ୟ କିପରି ଭାବେ କାର୍ଯ୍ୟ ଆରମ୍ଭ କରିବାକୁ ହେବ, ତାହା ମୁଁ ମନେ ମନେ ଭାବୁଥାଏ ।

ପାଇଓନିଅରର ପତ୍ରିକାର ସମ୍ପାଦକ ସହିତ ମୋର ଏହି ଆକସ୍ମିକ ଦେଖା ପରବର୍ତ୍ତୀ ଅନେକ ଘଟଣାର ଜନ୍ମାତ୍ମକ କହିଲେ ଚଳେ । ସେ ସବୁ ଘଟଣା ଯୋଗ ମୁଁ ବିନା ବିଚାରରେ ନେଟାଲରେ ଦଣ୍ଡ ପାଇଥିଲି ।

ମୁଁ ବମ୍ବାଇରେ ନ ରହି ସିଧା ସିଧା ରାଜକୋଟ ବାହାରି ଗଲି ଓ ଦକ୍ଷିଣ ଆଫ୍ରିକାର ଅବସ୍ଥା ସମ୍ବନ୍ଧେ ଖଣ୍ଡିଏ କାଗଜ ଲେଖିବା ପାଇଁ ଯୋଗାଡ଼ କଲି । କାଗଜଟି ଲେଖିସାରି ତାହା ଛପା ହେଲା ବେଳକୁ ମାସେ କାଳ ଲାଗିଥିଲା । କାଗଜଟିର ମଲାଟଟି ସବୁଜ ରଙ୍ଗ ହୋଇଥିବା ଯୋଗୁଁ ତାକୁ ‘ସବୁଜ କାଗଜ’ ବୋଲି କୁହାଗଲା । ସେଥିରେ ଦକ୍ଷିଣ ଆଫ୍ରିକାର ଭାରତୀୟମାନଙ୍କ ଅବସ୍ଥା ସମ୍ବନ୍ଧେ ମୁଁ ଜାଣି ଜାଣି ବେଶି ଲେଖି ନଥିଲି । ପୂର୍ବେ ଯେଉଁ ଦୁଇଟି କାଗଜ କଥା ଉଲ୍ଲେଖ କରିଛି; ସେଥିରେ ଯେପରି କଡ଼ା ଭାଷା ପ୍ରୟୋଗ କରିଥିଲି, ଏହି କାଗଜଟିରେ ସେପରି କରି ନଥିଲି । ମୁଁ ଜାଣିଥିଲି କଥାଟା ବାସ୍ତବିକ ବଡ଼ ହୋଇ ନଥିଲେ ମଧ୍ୟ ଦୂରରୁ ଶୁଣାଗଲେ ତାହା ବଡ଼ ଦିଶେ ।

କାଗଜଟିର ଦଶହଜାର ନକଲ ଛପାଯାଇ ଭାରତର ପ୍ରତ୍ୟେକ ରାଜନୈତିକ ନେତାମାନଙ୍କଠାକୁ ଓ ସମସ୍ତ ସମ୍ବାଦ ପତ୍ରମାନଙ୍କଠାକୁ ଗୋଟିଏ ନକଲ ପଠାଗଲା । ପାଇଓନିଅର ପତ୍ରିକା ସବୁ ପ୍ରଥମେ ସମ୍ପାଦକୀୟ ସ୍ତମ୍ଭରେ ସେ ବିଷୟ ନେଇ ଲେଖିଲେ । ପ୍ରବନ୍ଧର ସାରାଂଶ ରୁଟର ଇଂଲଣ୍ଡକୁ ପଠାଇଲେ ଓ ଉକ୍ତ ଲେଖାର ସାରାଂଶ ଲଣ୍ଡନଠାରୁ ନେଟାଲକୁ ପଠା ଯାଇଥିଲା । ତାହା ଛପାଇଲେ ତିନଧାଡ଼ି ହେବ । ନେଟାଲରେ ଭାରତୀୟମାନଙ୍କ ପ୍ରତି ଯେପରି ବ୍ୟବହାର କରାଯାଉ ଥିଲା ଓ ମୁଁ ସେ ସମ୍ବନ୍ଧେ ଯାହା ଲେଖିଥିଲି, ସେ ସବୁର ପ୍ରକୃତ ଖବର ପଠାଯାଇ ନଥିଲା ଓ ଯାହା ପଠାଯାଇ ଥିଲା ତାହା ମୋର ଭାଷାରେ ମଧ୍ୟ ନୁହେ । ଏହାର ଫଳରେ ନେଟାଲରେ କି କାଣ୍ଡ ହେଲା ତାହା ପରେ କହିବି । ଇତି ମଧ୍ୟରେ ପ୍ରତ୍ୟେକ ବଡ଼ ବଡ଼ ଖବର କାଗଜ ଏହି ବିଷୟ ନେଇ ସମାଲୋଚନା କଲେ ।

ଏସବୁ କାଗଜ ଗୁଡ଼ିକ ଡାକରେ ପଠାଇବାର ଯୋଗାଡ଼ କରିବା କିଛି ସାମାନ୍ୟ କାର୍ଯ୍ୟ ନୁହେ । କାଗଜ ଗୁଡ଼ାଇ ଅଠା ଲଗାଇବା ସକାଶେ ମଜୁରି ଦେଲେ ଅନେକ ଖରଚ ହେବା କଥା । କିନ୍ତୁ ମୁଁ ଗୋଟିଏ ସରଳ ଉପାୟ ଭାବିନେଲି । ମୋର ଘର ପାଖର ପିଲା ମାନଙ୍କୁ ରୁଣ୍ଡ କରାଇ ସେମାନଙ୍କର ସକାଳ ବେଳା ସ୍କୁଲ ପରେ ଘଣ୍ଟାଏ ଦୁଇ ଘଣ୍ଟା କାମ କରିବା ଲାଗି ସେମାନଙ୍କୁ ଅନୁରୋଧ କଲି । ଆଦରର ସହିତ ସେମାନେ ଏହା କରିବା ପାଇଁ ସ୍ୱୀକାର କଲେ । ମୁଁ ତାଙ୍କୁ ଆଶୀର୍ବାଦ କରିବି ଓ ପୁରସ୍କାର ସ୍ୱରୂପ ଉପଯୋଗ ହୋଇ ସାରିଥିବା ଡାକ ଟିକଟ ଦେବି ବୋଲି କହିଲି । କ୍ଷଣେକ ଭିତରେ ସେମାନେ କାର୍ଯ୍ୟଟି ତୁଟାଇ ଦେଲେ । ଛୋଟ ପିଲାମାନଙ୍କୁ ସ୍ୱେଚ୍ଛାସେବକ ଭାବେ ନିଯୁକ୍ତ କରିବା ଏହା ମୋର

ପ୍ରଥମ ପରୀକ୍ଷା । ସେହି ଶ୍ରେଷ୍ଠ ବନ୍ଧୁମାନଙ୍କ ମଧ୍ୟରୁ ଦୁଇଜଣ ଏବେ ମୋର ସହକର୍ମୀ ।

ଠିକ ଏହି ସମୟରେ ବମ୍ବାଇରେ ପ୍ଲେଗ ଆରମ୍ଭ ହେଲା— ଚତୁର୍ଦ୍ଦିଗରେ କୋଲାହଳ ପଡିଲା । ରାଜକୋଟରେ ମଧ୍ୟ ଆରମ୍ଭ ହେବ ବୋଲି ଭୟ ହେଉଥାଏ । ସ୍ୱାସ୍ଥ୍ୟ ( Sanitation ) ବିଭାଗରେ ମୁଁ କିଛି ସହାୟତା କରି ପାରିବି ଭାବି ମୋତେ ରାଜଧାନୀରେ ନିଯୁକ୍ତ କରିବା ପାଇଁ ପ୍ରସ୍ତାବ କଲି । ମୋର ପ୍ରସ୍ତାବ ଗୃହୀତ ହେଲା ଓ ଘର ବାହାର ସଫା ରଖିବା ପାଇଁ ଯେଉଁ ତଦନ୍ତ କମିଟି ଗଠିତ ହୋଇଥିଲା, ସେଥିରେ ମୁଁ ଜଣେ ସଭ୍ୟ ନିର୍ବାଚିତ ହେଲି । ପାଇଖାନା ସବୁ ନିର୍ମଳ ରଖିବା ଦରକାର ବୋଲି ମୁଁ ସର୍ବ ପ୍ରଥମେ ଧରି ବସିଲି । ପ୍ରତି ସାହିରେ ସେ ସବୁ ତଦନ୍ତ କରିବା ପାଇଁ କମିଟି ସ୍ଥିର କଲେ । ଗରିବ ଲୋକମାନେ ସେମାନଙ୍କ ପାଇଖାନା ପରିଦର୍ଶନ କରିବା ପାଇଁ କିଛି ଆପତ୍ତି କରି ନଥିଲେ; ବିଶେଷ କଥା, ପାଇଖାନାରେ କିଛି ଉନ୍ନତି କରିବା ପାଇଁ ପ୍ରସ୍ତାବ କଲେ ସେମାନେ ତାହା ଗ୍ରହଣ କରିଥିଲେ । କିନ୍ତୁ ଆମ୍ଭେ-ମାନେ ଯେତେବେଳେ ଧନୀମାନଙ୍କ ନିକଟକୁ ଗଲୁ କେହି କେହି ଆମ୍ଭମାନଙ୍କୁ ଘରକୁ ଯିବାକୁ ମଧ୍ୟ ଅନୁମତି ଦେଲେନାହିଁ; ଆମ୍ଭମାନଙ୍କ ପ୍ରସ୍ତାବ ଗ୍ରହଣ କରିବା ତ ଦୂରର କଥା । ଧନୀମାନଙ୍କ ପାଇଖାନା ଅପେକ୍ଷାକୃତ ଅପରିଷ୍କୃତ ଥିବା କଥା ଆମ୍ଭେମାନେ ଜାଣି ପାରିଥିଲୁଁ । ସେ ଗୁଡିକ ସବୁ ଅନ୍ଧାର, ମଇଳା ଓ ନାନାଦି ପୋକରେ ପୂର୍ଣ୍ଣ ଓ ଦୁର୍ଗନ୍ଧ । ଆମ୍ଭେମାନେ ଯେଉଁ ପ୍ରସ୍ତାବ କରିଥିଲୁ ତାହା ବଡ଼ ସହଜ—ମଇଳା ସବୁ ତଳେ ନପକାଇ ବାଲଟିରେ ପକାଇବା, ମୂତ୍ରମଧ୍ୟ ବାଲଟିରେ ଭରତି କରିବା, ବାହାର କାନ୍ଥ ଓ ପାଇଖାନା ମଧ୍ୟରେ ଯେଉଁ କାନ୍ଥ-

ଥାଏ ଯେ ସବୁ ଭାଙ୍ଗିବା ଦ୍ୱାରା ପାଇଖାନା ଗୁଡ଼ାକୁ ଆଲୋକ ଓ ପବନ ଯୋଗାଇବା ଓ ପାଇଖାନା ସଫା କରିବା ପାଇଁ ମେହେନ୍ତରକୁ ସୁବିଧା ଦେବା । ଧନୀ ଲୋକମାନେ ଶେଷ ପ୍ରସ୍ତାବକୁ ଆପତ୍ତି କଲେ ଓ ଅନେକ ସ୍ଥାନରେ ତାହା ଗ୍ରହଣ କରାଗଲା ନାହିଁ ।

ଅସ୍ପୃଶ୍ୟ ଲୋକମାନଙ୍କ ଘରସବୁ ଦେଖିବା ମଧ୍ୟ କମିଟି ଦ୍ୱାରରେ ଥିଲା । କମିଟିରୁ ଜଣେ ସଭ୍ୟ ମାତ୍ର ମୋ ସହିତ ସେଠାକୁ ଯିବା ପାଇଁ ଅଗ୍ରସର ହୋଇଥିଲେ । କମିଟିର ଅବଶିଷ୍ଟ ସଭ୍ୟମାନଙ୍କ ପକ୍ଷେ ସେ ସ୍ଥାନ, ବିଶେଷତଃ ସେସ୍ଥାନର ପାଇଖାନା ପରିଦର୍ଶନ କରିବା ଅସ୍ୱାଭାବିକ ଓ ଅସଙ୍ଗତ ବ୍ୟାପାର । କିନ୍ତୁ ମୋ' ପକ୍ଷେ ତାହା ଆଦର-ଣୀୟ କାର୍ଯ୍ୟ । ଅସ୍ପୃଶ୍ୟ ସ୍ଥାନକୁ ଯିବା ମୋର ତାହା ପ୍ରଥମ ଥର । ଆମ୍ଭମାନଙ୍କ, ସେଠାରେ ଦେଖି ସ୍ତ୍ରୀ ପୁରୁଷ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ସେମାନଙ୍କ ପାଇଖାନା ପରିଦର୍ଶନ କରିବା ସକାଶେ ଅନୁମତି ଦେବା ପାଇଁ ମୁଁ ସେମାନଙ୍କୁ କହିଲି ।

"ଆମ୍ଭମାନଙ୍କର ପାଇଖାନା" ! କହି ଆଶ୍ଚର୍ଯ୍ୟରେ ସେମାନେ ଚିତ୍କାର କରି ଉଠିଲେ ଓ କହିଲେ, "ଆମ୍ଭେମାନେ ପଦାରେ ଯାଇ-ଝାଡ଼ା ଫେର ଥାଉଁ । ଆପଣମାନଙ୍କ ଭଳିଆ ବଡ଼ ଲୋକଙ୍କ ପାଇଁ ପାଇ-ଖାନାର ସୃଷ୍ଟି ।"

ମୁଁ—"ଅଚ୍ଛା ହେବେ, ଆମ୍ଭେମାନେ ତୁମର ଘର ସବୁ ଦେଖିବୁ, ତୁମର କିଛି ଆପତ୍ତି ଅଛି" ?

ସେମାନେ:—"ମହାଶୟ ! ଆପଣ ନିଃଶଙ୍କରେ ଆସିପାରନ୍ତି । ଆମ ଘରର କନ୍ଦି ଚକନ୍ଦି ମଧ୍ୟ ଦେଖିପାରନ୍ତି । ଆମରତ ଘର ନୁହେଁ, ତାହା ସବୁ ଗାତ ଗୁଡ଼ିଏ" ।

ମୁଁ ଘର ଭିତରକୁ ଯାଇ ଦେଖିଲି ଓ ଆନନ୍ଦିତ ହେଲି; ଭିତର ଯେପରି ବାହାର ମଧ୍ୟ ସେହିପରି ନିର୍ମଳ । ଘର ପ୍ରବେଶ ପଥଗୁଡ଼ିକ ଭଲ ରୂପେ ପରିଷ୍କୃତ ହୋଇଥିଲା, ଘରର ତଳସବୁ ସୁନ୍ଦର ଭାବେ ଗୋବରରେ ଲିପା ଯାଇଥିଲା ଓ ଘରେ ଯେଉଁ କେତୋଟି ଡ଼ାଲ ମାଠିଆ ଥିଲା ସେସବୁ ନିର୍ମଳ ଥିଲା ଓ ଝକଝକ ଦିଶୁଥିଲା । ସେହି ସ୍ଥାନରେ ପ୍ଳେଗଆରମ୍ଭ ହେବାର କୌଣସି ଆଶଙ୍କା ଦେଖି ନଥିଲୁଁ ।

ଜଣେ ଧନୀ ଲୋକଙ୍କ ପାଇଖାନାରେ ଆମ୍ଭେମାନେ ଯାହା ଦେଖିଥିଲୁ, ତା'ର ସବିସ୍ତର ବର୍ଣ୍ଣନା ନକରି ମୁଁ ରହିନପାରେ । ପ୍ରତି ବଖରାରେ ନଳାଥାଏ, ପାଣି ଓ ମୂତ ଯିବା ପାଇଁ ତାହା ବ୍ୟବହୃତ ହୁଏ । ସୁତରାଂ ଗୋଟାଯାକ ଘର ଦୁର୍ଗନ୍ଧରେ ପୂର୍ଣ୍ଣ । ଆଉ ଗୋଟିଏ ଦୋ .ମହଲା ଘରେ ଏକ ଶୋଇବା ବଖରା ଥାଏ, ସେହି ବଖରାର ନଳାଟିରେ ମୂତିବା ଓ ଝାଡ଼ା ଫେରିବା ପାଇଁ ବ୍ୟବହାର କରୁଥାନ୍ତି । ଉକ୍ତ ନଳାରୁ ତଳକୁ ଗୋଟିଏ ଲୁହା 'ପାଇପ' ଖଞ୍ଜା ହୋଇଥାଏ । ଏହି ବଖରାରୁ ଯେଉଁ ଦୁର୍ଗନ୍ଧ ବାହାରେ, ତାହା ସହ୍ୟ କରିବା ନିତାନ୍ତ ଅସମ୍ଭବ । ଘର ବାସୀମାନେ କିପରି ଯେ ଶୋଉଥିବେ, ତାହା ପାଠକମାନେ ଅନୁମାନ କରି ନିଅନ୍ତୁ ।

ଭଦ୍ର, ମନ୍ଦିର ହାବେଲିକୁ ମଧ୍ୟ କମିଟି ପରିଦର୍ଶନ କରିଥିଲେ । ହାବେଲିର ଅର୍ଚ୍ଚକ ଆମ୍ଭ ପରିବାର ସହିତ ବଡ଼ ସମ୍ପୃକ୍ତ । ସୁତରାଂ ଦେବାଳୟ ପରିଦର୍ଶନ କରିବା ପାଇଁ ସେ ଆମ୍ଭଙ୍କୁ ଅନୁମତି ଦେଲେ ଓ ଯେ କୌଣସି ପ୍ରସ୍ତାବ ଗ୍ରହଣ କରିବା ପାଇଁ ସ୍ୱୀକାର କଲେ । ହାବେଲିର ଭିତରେ ଏପରି ଏକ ସ୍ଥାନଥିଲା, ଅର୍ଚ୍ଚକ ନିଜେ ତାହା କେବେହେଲେ ଦେଖି ନଥିଲେ । ସେ ସ୍ଥାନଟିରେ ଅଇଁଠା ଖଲି ଓ ଅନ୍ୟାନ୍ୟ ମଇଳା

ଜିନିଷ ସବୁ ଫିଙ୍ଗା ଯାଇଥାଏ — ଏବଂ କୂଅ ଓ ଚଲ ବସାକର ରହୁଥାନ୍ତି । ପାଇଖାନା ଗୁଡ଼ିକ ଅପରିଷ୍କୃତ ହେବାତ ସ୍ୱାଭାବିକ କଥା । ଆମ୍ଭମାନଙ୍କ ପ୍ରସ୍ତାବ ଗୁଡ଼ିକରୁ ହାବେଲିର ଅଧିକ କେତୋଟି ପ୍ରସ୍ତାବ କାର୍ଯ୍ୟରେ ପରିଣତ କରିଥିଲେ, ତାହା ମୁଁ ଦେଖିପାରି ନଥିଲି—କାରଣ ମୁଁ ରାଜକୋଟରେ ବେଶି ଦିନ ରହିବାକୁ ହୋଇ ନଥିଲା ।

ଗୋଟିଏ ଉପାସନା ମନ୍ଦିରରେ ଏପରି ଅପରିଷ୍କୃତ ଜିନିଷ ଥିବା ଦେଖି ମୋତେ ବଡ଼ କଷ୍ଟ ବୋଧ ହେଲା । ଯେଉଁ ସ୍ଥାନଟି ପବିତ୍ର ବୋଲି ବିବେଚିତ, ସେଠାରେ ସ୍ୱାସ୍ଥ୍ୟର ନିୟମ ଗୁଡ଼ିକ ଭଲରୂପେ ପାଳନ କରିବା ଉଚିତ ବୋଲି ସମସ୍ତେ କହିବେ । ସ୍ମୃତି ଲେଖକମାନେ ବାହ୍ୟିକ ଓ ଅନ୍ତରିକ ନିର୍ମଳତା ଲାଗି ବେଶି କହି ଅଛନ୍ତି, ଏହା ମୁଁ ସେତେବେଳେ ସୁଦ୍ଧା ଜାଣିଥିଲି ।

## ଷଡ଼୍‌ବିଂଶ ପରିଚ୍ଛେଦ ।

( ବ୍ରିଟିଷ ଅନୁରକ୍ତି )

———o———

ମୁଁ ଯେପରି ବ୍ରିଟିଶ ଶାସନ ପ୍ରଣାଳୀକୁ ଭକ୍ତି କରୁଥିଲି ଅନ୍ୟ କେହି ତଦ୍ରୂପ ଭକ୍ତି କରୁଥିବା ଦୃଷ୍ଟାନ୍ତ ମୁଁ ପାଇନାହିଁ । ମୋର ସତ୍ୟ-ପ୍ରୀତି ସେହି ଭକ୍ତିର ମୂଳ ତତ୍ତ୍ୱ ବୋଲି ମୁଁ ଏବେ ବୁଝି ପାରୁଅଛି । ରାଜଭକ୍ତି ତଥା ଯେ କୌଣସି ସଦଗୁଣ ଅନୁକରଣ କରିବା କଥା ମୋଠାରେ ସମ୍ଭବ-ନାହିଁ । ନେଟାଲର ପ୍ରତ୍ୟେକ ସଭାରେ ଜାତୀୟ ସଙ୍ଗୀତ ଗାନ କରାଯାଏ ଓ ପ୍ରତ୍ୟେକ ସଭାରେ ମୁଁ ଉପସ୍ଥିତ ହୋଇଥାଏ । ମୁଁ ମଧ୍ୟ ସେହି

ଗାନରେ ଯୋଗଦେବା ଉଚିତ ବୋଲି ମୁଁ ସେତେବେଳେ ମନେ କରିଥିଲି । ବ୍ରିଟିସ ଶାସନରେ ଦୋଷ ଅଛି ବୋଲି ମୁଁ ଯେ ଜାଣି ନଥିଲି ତାହା ନୁହେଁ; କିନ୍ତୁ ମୋର ସେତେବେଳେ ବିଶ୍ୱାସ ଥିଲା ଯେ ମୋଟ ଉପରେ ବ୍ରିଟିଶ ଶାସନ ଗ୍ରହଣୀୟ ଓ ତାହା ଶାସିତମାନଙ୍କର ମଙ୍ଗଳ କାରକ ।

ଦକ୍ଷିଣ ଅଫ୍ରିକାରେ ମୁଁ ଯେଉଁ ବର୍ଣ୍ଣ-ଭେଦ-ଭାବ ଦେଖିଥିଲି, ତାହା ବ୍ରିଟିଶ ଲୋକଙ୍କର ପୁରୁଷାନୁଗତ କଥା ନୁହେ ଓ ତାହା କେବଳ କ୍ଷଣିକ ପାଇଁ ବୋଲି ମୋର ଧାରଣା ଥିଲା । ସୁତରାଂ ରାଜଭକ୍ତିରେ ଇଂରେଜ ଲୋକଙ୍କର ମୁଁ ପ୍ରତିଦ୍ୱନ୍ଦୀ ହୋଇଥିଲି । ବହୁ ଅଧ୍ୟବସାୟର ସହିତ ମୁଁ ଜାତୀୟ ସଙ୍ଗୀତର ବୃତ୍ତି ଶିଖିଲି ଓ ତାହା ଗାନ କଲାବେଳେ ମୁଁ ସେଥିରେ ଯୋଗ ଦେଲି । ରାଜଭକ୍ତିର ପରିଚୟ ଦେବା ପାଇଁ ଯେତେବେଳେ ସମୟ ଆସେ, ବୃଥା ଆଡମ୍ବର ନ ଦେଖାଇ ଓ ଅଗ୍ରସର ହୋଇ ମୁଁ ସେଥିରେ ଯୋଗ ଦେଇଥାଏ ।

ଏହି ରାଜଭକ୍ତି ନେଇ ମୁଁ ମୋର ଜୀବନରେ କେବେହେଲେ ଅନଧିକାର ଚର୍ଚ୍ଚା କରିନାହିଁ, କିମ୍ବା ତଦ୍ୱାରା ମୋର ସ୍ୱାର୍ଥସାଧନ ପାଇଁ ଚେଷ୍ଟା କରିନାହିଁ । ତାହା ମୋ ପକ୍ଷେ କୃତଜ୍ଞତା ପ୍ରଦର୍ଶନର କଥା—ଓ କୌଣସି ପୁରସ୍କାର ପ୍ରତି ଆଶା ନରଖି ମୁଁ ରାଜଭକ୍ତି ଦେଖାଇ ଆସେ ।

ମୁଁ ଭାରତରେ ପହଞ୍ଚିଲା ବେଳକୁ ମହାରାଣୀ ଭିକ୍ଟୋରିଆଙ୍କ ଡାଇମଣ୍ଡ ଜୁବିଲି ଉତ୍ସବ ସକାଶେ ଯୋଗାଡ ଲାଗିଥିଲା । ଉତ୍ସବ ସକାଶେ ଆୟୋଜନ କରିବା ପାଇଁ ରାଜକୋଟରେ ଯେଉଁ କମିଟି ନିଯୁକ୍ତ ହୋଇଥିଲେ ସେଥିରେ ଯୋଗ ଦେବା ପାଇଁ ମୋତେ ଆମନ୍ତ୍ରଣ କରି-ଗଲା । ମୁଁ ତାହା ଗ୍ରହଣ କଲି, କିନ୍ତୁ ଉତ୍ସବଟି କେବଳ ବୃଥା ଆଡମ୍ବରରେ

ପରିଣତ ହେବ ବୋଲି ମୋର ସନ୍ଦେହ ହେଉଥାଏ । ଏହି ସମ୍ବନ୍ଧରେ ମୁଁ ନାନା ପ୍ରତାରଣା ଦେଖିଲି ଓ ମର୍ମାନ୍ତିକ ବେଦନା ଅନୁଭବ କଲି । କମିଟିରେ ରହିବା ଉଚିତ ନାହିଁ ବୋଲି ମନେ ମନେ ଭାବିବାକୁ ଲାଗିଲି, କିନ୍ତୁ ମୁଁ ଯାହା କରିବା ପାଇଁ ଥିଲି ତାହା ଶେଷ କରି ନୀରବ ରହିବି ବୋଲି ପରିଶେଷରେ ନିଷ୍ପତ୍ତି କଲି ।

ଗଛ ଲଗାଇବା ସକାଶେ ଗୋଟିଏ ପ୍ରସ୍ତାବ ଥିଲା । ମୁଁ ଦେଖିଲି, ଅନେକେ କେବଳ ଦେଖାଇ ହେବା ପାଇଁ ଓ ସରକାରୀ କର୍ମଚାରୀ-ମାନଙ୍କୁ ତୃପ୍ତ କରିବା ପାଇଁ ଗଛ ଲଗାଇ ଥିଲେ । ମୁଁ ସେମାନଙ୍କ ସହିତ ଯୁକ୍ତି କରିବାକୁ ଯାଇ କହିଲି ଯେ ଗଛ ଲଗାଇବା ବାଧ୍ୟତାମୂଳକ ନୁହେ, ତାହା କେବଳ ଗୋଟିଏ ପ୍ରସ୍ତାବ ମାତ୍ର । ତାହା ହୃଦୟର ଆଦରର ସହିତ କରିବାକୁ ହେବ ନଚେତ କିଛି ନକରିବା ଉଚିତ । ମୋର ମନେ ଅଛି ମୋ କଥା ଶୁଣି ସେମାନେ ହସିଲେ । ମୁଁ ଯେଉଁ ଗଛଟି ଲଗାଇବା କଥା ତାହା ମୁଁ ଅନୁରାଗର ସହିତ ଲଗାଇ ଥିଲି ଓ ତାକୁ ଉତ୍ତମରୂପେ ପାଣି ଦେଇ ପାଳନ କରିଥିଲି ।

ଜାତୀୟ ସଙ୍ଗୀତଟି ମୁଁ ଆମ୍ଭ ଘର ପିଲାଙ୍କୁ ମଧ୍ୟ ଶିଖାଇଲି ଓ ସ୍ଥାନୀୟ ଟ୍ରେନିଙ୍ଗ କଲେଜର ଛାତ୍ରମାନଙ୍କୁ ମଧ୍ୟ ଶିଖାଇଥିବା କଥା ମୋର ମନେ ହେଉଅଛି । କିନ୍ତୁ ତାହା ମହାରାଣୀଙ୍କ ଜୁବିଲି ଉତ୍ସବ ସମୟରେ କିମ୍ବା ସପ୍ତମ ଏଡ଼ୱାର୍ଡଙ୍କ ଭାରତ ସମ୍ରାଟ ଅଭିଷେକ ଉତ୍ସବ ସମୟରେ, ସେ କଥା ମୋର ସ୍ମରଣ ହେଉନାହିଁ । କେତେ ଦିନପରେ ଜାତୀୟ ସଙ୍ଗୀତଟି ମୋର କର୍ଣ୍ଣକଟୁ ହେଲା । ଅହିଂସା ଧାରଣା ଯେତେ-ବେଳେ ମୋଠାରେ ପରିପକ୍ୱ ହୋଇ ଆସିଲା, ମୋର ଭାବ ଓ ବଚନ

ସମ୍ବନ୍ଧେ ମୁଁ ବେଶି ସତର୍କ ହେଲି । ତାହାପ୍ର ସଙ୍ଗୀତଟି:—

"Scatter her enemies,
And make them fall;
Confound their politics,
Frustrate their knavish tricks".

—ପଂକ୍ତି ଗୁଡ଼ିକ ମୋର ଅହିଂସା ଧାରଣାର ବିପରୀତ । ସୁତରାଂ ତାହା ମୋତେ ଅପ୍ରୀତିକର ବୋଧ ହେଲା । ମୁଁ ମୋର ମନ କଥା ଡାକ୍ତର ବୁଥ୍‌ଙ୍କୁ କହିଲି । ସେ କହିଲେ ଯେ, ଜଣେ ଅହିଂସାଧର୍ମି ବିଶ୍ୱାସୀ ଉକ୍ତ ପଂକ୍ତି ଗୁଡ଼ିକ ଗାଇବା ଉଚିତ ନୁହେ । ତଥାକଥିତ 'ଶତ୍ରୁମାନେ' 'ଦୁଷ୍କୃତ୍' ବୋଲି ଆମ୍ଭେମାନେ କିପରି କହିପାରୁଁ ? ସେମାନେ ଶତ୍ରୁ ହୋଇଥିବା ଯୋଗୁଁ କଣ ଦୋଷୀ ବିବେଚିତ ହେବେ ? ଭଗବାନଙ୍କଠାରୁ ଆମ୍ଭେମାନେ କେବଳ ନ୍ୟାୟଭିକ୍ଷା କରିପାରୁଁ । ଡାକ୍ତର ବୁଥ୍ ମୋର କଥା ସବୁ ସମର୍ଥନ କଲେ ଓ ତାଙ୍କ ଧର୍ମକର୍ମ୍ମି ସଭାକକ୍ଷେ ଗୋଟିଏ ନୂତନ ସଙ୍ଗୀତ ରଚନା କଲେ । ଡ଼ାକ୍ତର ବୁଥ୍‌ଙ୍କ ସମ୍ବନ୍ଧେ ପରେ ବେଶି କହିବି ।

ରୋଗୀଙ୍କୁ ଓ ସେବା ଶୁଶ୍ରୂଷା ପ୍ରବୃତ୍ତି ମୋର ସ୍ୱଭାବ ସିଦ୍ଧ ଗୁଣ ଥିଲା । ବନ୍ଧୁ ହୁଅନ୍ତୁ ବା ଅପରିଚିତ ହୁଅନ୍ତୁ, ସମସ୍ତଙ୍କୁ ସେବା କରିବା ପାଇଁ ମୋର ବେଶି ଅନୁରାଗ ।

ଦକ୍ଷିଣ ଆଫ୍ରିକା ସମ୍ବନ୍ଧେ କାଗଜଖଣ୍ଡି ଲେଖିବା ଲାଗି ମୁଁ ଯେତେବେଳେ ରାଜକୋଟରେ ବ୍ୟସ୍ତ ଥିଲି, ବୋମ୍ବାଇକୁ ଯିବାପାଇଁ ଥରେ ସୁବିଧା ପାଇଥିଲି । ଦକ୍ଷିଣ ଆଫ୍ରିକା ବିଷୟ ନେଇ ସହରମାନଙ୍କରେ ସଭା ସମିତି କରି ଲୋକମତ ସଂଗ୍ରହ କରିବା ପାଇଁ ମୋର ଇଚ୍ଛା ଥିଲା । ସୁତରାଂ ବୋମ୍ବାଇକୁ ପ୍ରଥମ କାର୍ଯ୍ୟକ୍ଷେତ୍ର ସ୍ୱରୂପ ମୁଁ ବାଛିନେଲି । ପ୍ରଥମେ

ମୁଁ ବାରିଷ୍ଟର ପିଙ୍କଟଙ୍କ ସହିତ ଦେଖାହେଲି; ସେ ମୋର କଥା ସବୁ ଆଦରର ସହିତ ଶୁଣିଲେ ଓ ସର୍ ଫିରୋଜଶା ମେହେଟାଙ୍କ ସହ ଦେଖା କରିବା ପାଇଁ ମୋତେ ଉପଦେଶ ଦେଲେ । ନ୍ୟାୟପତି ବାଦୃଦ୍ଦିନ୍ ତ୍ୟାବ୍‌ଜିଙ୍କ ସହିତ ଦେଖା ହେବାରୁ ସେ ମଧ୍ୟ ପିଙ୍କଟଙ୍କ ପରି ଉପଦେଶ ଦେଲେ । ସେ କହିଲେ, "ପିଙ୍କଟ ଓ ମୁଁ ଆପଣଙ୍କୁ କିଛି ସାହାଯ୍ୟ କରିନପାରୁଁ । ଆପଣ ଆମର ଅବସ୍ଥା ସମ୍ବନ୍ଧେ ଜାଣିଛନ୍ତି । ଆମେମାନେ ଲୋକ ସାଧାରଣ କାର୍ଯ୍ୟରେ ଯୋଗ ଦେଇ ନପାରୁଁ, କିନ୍ତୁ ଆପଣଙ୍କ କାର୍ଯ୍ୟରେ ଆମର ସମ୍ପୂର୍ଣ୍ଣ ସହାନୁଭୂତି ଅଛି । ସର୍ ଫିରୋଜଶା ମେହେଟା କେବଳ ଆପଣଙ୍କୁ ବେଶି ସାହାଯ୍ୟ କରି ପାରନ୍ତି" ।

ସର୍ ଫିରୋଜଶାଙ୍କୁ ଦେଖିବା ଲାଗି ମୁଁ ସ୍ଥିର କରିଥିଲି; କିନ୍ତୁ ଏହି ଦୁଇ ଜଣ ବୟୋବୃଦ୍ଧ ବ୍ୟକ୍ତି ଯେ ତାହାଙ୍କର ଉପଦେଶ ନେଇ କାର୍ଯ୍ୟ କରିବା ପାଇଁ କହିଲେ, ତାହାଶୁଣି ସର୍ ଫିରୋଜଶାଙ୍କର ଲୋକ ମହଲରେ କିପରି ଖ୍ୟାତି ଅଛି, ତାହା ମୁଁ ସ୍ପଷ୍ଟରୂପେ ବୁଝି ପାରିଥିଲି । ଠିକ ସମୟରେ ତାଙ୍କ ସହିତ ଦେଖାକଲି । ତାଙ୍କ ଆଗରୁ ଗଲାବେଳେ ଭୀତ ନହେବା ପାଇଁ ମୁଁ ପୂର୍ବରୁ ସତର୍କ ହୋଇଥିଲି । ଲୋକେ ତାଙ୍କୁ ଯେ କେତେ ନାଆଁରେ ଡାକୁଥାନ୍ତି, ମୁଁ ତାହା ଶୁଣିଥିଲି । 'ବୋମ୍ବାଇ ସିଂହ' ଓ 'ପ୍ରଦେଶର ମୁକୁଟ ବିହୀନ ରାଜା'ଙ୍କୁ ଦେଖିବାକୁ ଯାଉଛି ବୋଲି ମୁଁ ଜାଣିଥିଲି । କିନ୍ତୁ ରାଜା ମୋତେ ଭୟତ୍ରସ୍ତ କରି ନଥିଲେ । ବୟସାଧିକ ପୁତ୍ର ସହିତ ଜଣେ ପୁତ୍ରବତ୍ସଳ ପିତା ଯେପରି ମିଶିଥାଏ ସେ ମଧ୍ୟ ମୋ ସହିତ ସେହିପରି ମିଶିଥିଲେ । ତାହାଙ୍କର କଚେରିରେ ଆମ୍ଭେ ଦୁହେଁ ପରସ୍ପର ଦେଖାହେଲୁ । ତାହାଙ୍କୁ ସେତେବେଳେ ଅନେକ ବନ୍ଧୁ ଓ ଶିଷ୍ୟ ଘେରି ରହିଥିଲେ । ସେମାନଙ୍କ ମଧ୍ୟରୁ ମିଃ ଡ଼ିଃ ଇଃ ୱାଚ୍ଚ ଓ ମିଃ କାମାଙ୍କ

ସଙ୍ଗେ ନେଇ ପରିଚୟ ଦେଲେ । ମିଃ ବ୍ରାଗ୍ଙ୍କ ଘରେ ମୁଁ କେତେ ଦିନ ରହିଥିଲି । ସାର୍ ଫିରୋଜଶାଙ୍କର ସେ ବଡ ପ୍ରୀତିପାତ୍ର ବନ୍ଧୁ ବୋଲି ପରିଚିତ ଓ ସେ ଜଣେ ଜାତ ବଣିକ ବଣାଉଦ ବୋଲି ଶ୍ରୀଯୁକ୍ତ ବୀରଚାନ୍ଦ ଗାନ୍ଧୀ ମୋତେ କହିଥାନ୍ତି । ମିଃ ବ୍ରାଗ୍ କହିଲେ, "ଗାନ୍ଧି ! ଆମେ ପୁନରପି ମିଳିବା" ।

ଏସବୁ ପରିଚୟ ଲାଭରେ ମୋତେ ଦୂର ମିଳନ୍ତ ବଢ଼ିଥିବ । ସାର୍ ଫିରୋଜଶା ମୋ କଥା ସବୁ ମନଯୋଗ ପୂର୍ବକ ଶୁଣିଲେ । ରାନେଡ଼ ଓ ତ୍ୟାବ୍ଜି ବାରିଷ୍ଟରଙ୍କୁ ଦୁହିଙ୍କୁ ମୁଁ ଦେଖିଛି ବୋଲି ତାହାଙ୍କୁ କହିଲି । ସେ କହିଲେ, "ଗାନ୍ଧି ! ଦେଖୁଛି, ଆପଣଙ୍କୁ ନିଶ୍ଚୟ ମୁଁ ସାହାଯ୍ୟ କରି-ବାକୁ ହେବ । ଏଠାରେ ମୁଁ ଗୋଟିଏ ସାଧାରଣ ସଭା ଡାକିବି"—ଏହା କହି ସେ ତାହାଙ୍କ ସେକ୍ରେଟେରି ମିଃ ମୁନସିଙ୍କ ଆଡକୁ ଚାହିଁ ସଭାର ତାରିଖ ନିଶ୍ଚୟ କରିବା ପାଇଁ ତାହାଙ୍କୁ କହିଲେ । ସଭାର ଦିନ ନିଶ୍ଚୟ କରାଗଲା—ଦିନକ ପୂର୍ବରୁ ତାହାଙ୍କ ସହିତ ଦେଖା କରିବାକୁ କହି ମୋଠାରୁ ସେ ବିଦାୟ ନେଲେ । ଏହି ସାକ୍ଷାତରେ ମୋର ଭୟ ସବୁ ଦୂର ହୋଇଥିଲା ଓ ମୁଁ ଆନନ୍ଦରେ ଘରକୁ ଫେରିଲି ।

ବମ୍ବାଇରେ ଥିବା ସମୟରେ ଥରେ ମୁଁ ମୋର ଭଣୋଇଙ୍କ ଘରକୁ ଯାଇଥିଲି । ସେତେବେଳେ ସେ ରୋଗଶଯ୍ୟାରେ ଶାୟିତ । ତାହାଙ୍କର ବେଶି ଧନ ନଥିଲା ଓ ମୋର ଭଉଣୀ ମଧ୍ୟ ତାହାଙ୍କୁ ଭଲ-ରୂପେ ସେବା ଶୁଶ୍ରୂଷା କରିପାରୁ ନଥିଲେ । ତାହାଙ୍କର ବେମାରିଟା ଭୟାନକ, ଯେହେତୁ ତାହାଙ୍କୁ ରାଜକୋଟ ନେଇଯିବା ଲାଗି ମୁଁ କହିଲି । ସେ ସ୍ୱୀକାର କରିବାରୁ ମୁଁ ମୋର ଭଉଣୀ ଓ ଭଣୋଇଙ୍କୁ ନେଇ ଘରକୁ ଫେରିଲି । ବେମାରିଟା ଯେତେଦିନ ରହିବ ବୋଲି ମୁଁ ଭାବିଥିଲି ତାଠାରୁ

ଅଧିକ ଦିନ ରହିଲେ । ତାହାଙ୍କ, ମୁଁ ମୋର ପ୍ରକୋଷ୍ଠରେ ରଖି ସବୁ ଦିବସ ତାହାଙ୍କ ପାଖରେ ରହିଲି । ରାତ୍ରିରେ ଅନେକ ସମୟ ମୁଁ ଜାଗି ରହିବାକୁ ବାଧ ହେଉଥାଏ ଓ ତାଙ୍କୁ ସେବା ଶୁଶ୍ରୂଷା କରିବା ସମୟରେ ମଧ ଦକ୍ଷିଣ ଆଫ୍ରିକା ସମ୍ବନ୍ଧେ କେତେ କେତେ କାର୍ଯ୍ୟ କରିପକାଏ । ସେ ଯାହାହେଉ ପରିଶେଷରେ ରୋଗୀ ପରଲୋକଗତ ହୋଇଗଲେ; କିନ୍ତୁ ଶେଷ ମୁହୂର୍ତ୍ତରେ ମୁଁ ଯେ ତାହାଙ୍କ ସେବା କରିବା ସୁବିଧା ପାଇଥିଲି; ତାହା ମୋ ପକ୍ଷେ ବଡ ଆଶ୍ୱାସନାର କଥା ।

ସେବା ଶୁଶ୍ରୂଷାରେ ମୋର ଯେ ପ୍ରବୃତ୍ତି ତାହା କ୍ରମେ କ୍ରମେ ଅନୁରକ୍ତିରେ ପରିଣତ ହେବାକୁ ଲାଗିଲା । ଏପରିକି ସେଥିଲାଗି ମୁଁ ମୋର କାର୍ଯ୍ୟରେ ମଧ ଅବହେଳା ଦେଖାଇଲି ଏବଂ ସମସ୍ତ ସମୟରେ କେବଳ ମୋର ସ୍ତ୍ରୀଙ୍କୁ ନୁହେଁ, ପରିବାରର ସମସ୍ତଙ୍କୁ ଏପରି ସେବାରେ ନିଯୁକ୍ତ କଲି ।

ଯେଉଁ ସେବା ଆନନ୍ଦର ସହିତ ହୋଇନାହିଁ ତାହା ସେବା ପଦବାଚ୍ୟ ନୁହେ । ଯଦି ତାହା ଦେଖାଇ ଦେବାପାଇଁ କିମ୍ବା ଲୋକମତ ଭୟରେ କରିଯାଇ ଥାଏ ତାହାହେଲେ ତଦ୍ୱାରା ସେବକର ଉନ୍ନତି ହୁଏନାହିଁ, ତାର ଜୀବନୀ ଶକ୍ତି ହ୍ରାସ ହୁଏ । ଯେଉଁ ସେବା ଆନନ୍ଦର ସହିତ କରାଯାଇ ନାହିଁ ତାହା ସେବକ କିମ୍ବା ସେବିତର ସହାୟତା କରିନଥାଏ; କିନ୍ତୁ ଆନନ୍ଦ ହୃଦୟର ସେବା ଆଗରେ ଅନ୍ୟ ସମସ୍ତ ସନ୍ତୋଷ ଓ ସମ୍ପତ୍ତିର ମୂଲ୍ୟ ନଗଣ୍ୟ ହୋଇପଡେ ।



## ସପ୍ତବିଂଶ ପରିଚ୍ଛେଦ ।

( ବୋମ୍ବାଇରେ ସଭା )

—:)✿(:—

ଉକ୍ଷୋଟ୍ଟଙ୍କ ମୃତ୍ୟୁର ପରଦିନ ବୋମ୍ବାଇର ସାଧାରଣ ସଭାରେ ଯୋଗଦେବା ପାଇଁ ମୋତେ ଯିବାକୁ ହୋଇଥିଲା । ମୁଁ ଯାହା କହିବା କଥା ସେ ସମ୍ବନ୍ଧେ କିଛି ଭାବନା କରିବା ପାଇଁ ଆଦୌ ସମୟ ପାଇ ନଥିଲି । ଦିନ ରାତି ଅନିଦ୍ରା ହୋଇଥିବା ଯୋଗୁଁ ମୁଁ କ୍ଳାନ୍ତ ହୋଇ ପଡଥିଲି ଓ ମୋର ଚୋଟି ମଧ୍ଯ ବଢି ଯାଇଥିଲା । ସେ ଯାହାହେଉ ଭଗବାନଙ୍କଠାରେ ବିଶ୍ୱାସ ରଖି ମୁଁ ବୋମ୍ବାଇକୁ ଗଲି । ମୋର ଅଭିଭାଷଣ ଲେଖି ପାରିବି ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି ।

ସର୍ ଫିରୋଜସାଙ୍କ ପ୍ରସ୍ତାବ ଅନୁସାରେ ସଭାର ପୂର୍ବଦିନ ଠିକ ପାଞ୍ଚ ଘଣ୍ଟା ସମୟରେ ଯାଇତାଙ୍କ ଅଫିସରେ ପହଞ୍ଚିଲି । 'ଗାନ୍ଧି ! ଆପଣଙ୍କ ଅଭିଭାଷଣ ଠିକ ହୋଇଛି' ? ବୋଲି ମୋତେ ସେ ପ୍ରଶ୍ନ କଲେ । ଭୟରେ ଥରି ଥରି ମୁଁ କହିଲି, "ନାହିଁ, ଠିକ ହୋଇନାହିଁ—ମୋର ଇଚ୍ଛା ମୌଖିକ ଭାବେ କହିବି" ।

ସେ:—"ବୋମ୍ବାଇରେ ତାହା ଚଳିବ ନାହିଁ ! ଏଠାରେ ବକ୍ତୃତାର ନକଲ ଭୁଲରେ ନେଇଥାନ୍ତି । ଯଦି ଏହି ସଭାରୁ କିଛି ଉପକାର ଆଶା କରାଯାଏ ତାହାହେଲେ ଆପଣଙ୍କ ବକ୍ତବ୍ୟଟି ଲେଖିବା ଉଚିତ ଓ ରାତି ପାହିବା ପୂର୍ବରୁ ତାହା ଛପାହେବା ଦରକାର । ମୋର ଆଶା ଆପଣ ତାହା କରିନେବେ" ?

ମୋର ସାହସ ହେଲାନାହିଁ, କିନ୍ତୁ ଚେଷ୍ଟା କରିବି ବୋଲିକହିଲି ।

ସେ:—"ତେବେ ପାଣ୍ଡୁଲିପିଟି ପାଇଁ ମିଃ ମୁନ୍‌ସି କେତେବେଳେ ଆପଣଙ୍କ ନିକଟକୁ ଆସିବେ, କହୁଥାନ୍ତୁ" ?

ମୁଁ—"ଆଜି ରାତି ଏଗାର ଘଣ୍ଟା ବେଳେ" ।

ପରଦିନ ସଭାରେ ଯୋଗ ଦେଇ ସର୍ ଫିରୋଜସାଙ୍କ ଉପଦେଶର ମୂଲ୍ୟ ମୁଁ ବୁଝି ପାରିଥିଲି । ସର୍ କୋୱାସଜି ଜାହାଙ୍ଗୀର ସମାଜ ହଲରେ ସଭାର ଆୟୋଜନ କରା ଯାଇଥିଲା । ମୁଁ ଶୁଣିଥିଲି ସର୍ ଫିରୋଜସା ମେହତା ସଭାରେ କହିବା ସମୟରେ ହଲଟି ସବୁବେଳେ ପୂର୍ଣ୍ଣ ହୋଇଥାଏ, ବିଶେଷତଃ ଛାତ୍ରମାନେ ତାହାଙ୍କ ବକ୍ତୃତା ଶୁଣିବାକୁ ବ୍ୟଗ୍ର ହୋଇଥାନ୍ତି, ହଲରେ ତିଳଟିଏ ପକେଇଲେ ସ୍ଥାନ ପଡ଼େନାହିଁ । ମୋ ଅନୁଭୂତିରେ ଏହା ସର୍ବ ପ୍ରଥମ ବଡ଼ ସଭା । ମୁଁ ଦେଖିଲି ମୋର କଥା କାହାରିକୁ ଶୁଭୁନାହିଁ । ମୋର ଲିଖିତ ବକ୍ତବ୍ୟଟି ପଢ଼ିବା ପାଇଁ ଆରମ୍ଭ କଲାବେଳକୁ ମୋ ଦେହ ଥରୁଥାଏ । ସର୍ ଫିରୋଜସା ମୋତେ ଉତ୍ସାହ ଦେଇ ବଡ ପାଟିରେ ପଢ଼ିବା ଲାଗି ବାରମ୍ବାର କହୁଥାନ୍ତି, କିନ୍ତୁ ତାହାର ମୁଁ ଉତ୍ସାହିତ ହେବା ତେଣେ ଥାଉ, ମୋର ସ୍ୱର କ୍ଷୀଣରୁ କ୍ଷୀଣତର ହେଉଥାଏ ।

ମୋର ପୁରାତନ ବନ୍ଧୁ ଶ୍ରୀଯୁକ୍ତ କେଶବ ରାଓ ଦେଶପାଣ୍ଡେ ମୋତେ ସାହାଯ୍ୟ କଲେ । ମୋର ବକ୍ତୃତାଟି ମୁଁ ତାହାଙ୍କ ହାତକୁ ବଢ଼ାଇଦେଲି । ତାହାଙ୍କର ସ୍ୱର ସମୟୋପଯୋଗୀ ହୋଇଥିଲା, କିନ୍ତୁ ଶ୍ରୋତାମାନେ ତାହାଙ୍କୁ ଶୁଣିବାପାଇଁ ନାରାଜ ହେଲେ । ହଲଟି ଯାକ 'ବାଚ୍ଛା' 'ବାଚ୍ଛା' ଶବ୍ଦରେ ପୂରିଗଲା । ସୁତରାଂ ମିଃ ୱାଚ୍ଛା ଛିଡ଼ା ହୋଇ ବକ୍ତୃତାଟି ପାଠ କଲେ । ତାହାଙ୍କ ପଢ଼ାର ଫଳ ସେହିକ୍ଷଣି ଫଳିଲା; ଲୋକେ ନୀରବ ହୋଇଗଲେ ଓ ବକ୍ତୃତାଟିର ଶେଷ ଯାଏ ମନଦେଇ ଶୁଣିଲେ । ସେମାନେ ମଝେ ମଝେ

କରତାଳ ଦେଉଥାନ୍ତି ଓ ବେଳେ ବେଳେ 'ଧିକ' 'ଧିକ' ବୋଲି ମଧ୍ୟ କହୁଥାନ୍ତି । ମୋର ହୃଦୟ ଆନନ୍ଦରେ ପୂରିଗଲା ।

ସର୍ ଫିରୋଜସା ମଧ୍ୟ ମୋର ବକ୍ତୃତାଟିକୁ ପସନ୍ଦ କରିଥିଲେ— ମୋର ଆନନ୍ଦର ଆଉ ସୀମା ରହି ନଥିଲା ।

ଏହି ସଭାର ଫଳରେ ମୁଁ ଶ୍ରୀଯୁତ ଦେଶପାଣ୍ଡେ ଓ ଅନ୍ୟ ଏକ ପାର୍ଶୀ ବନ୍ଧୁଙ୍କର ସହାନୁଭୂତି ପାଇଥିଲି । ଶେଷୋକ୍ତ ବନ୍ଧୁଙ୍କ ନାଆଁ ଦେବା ପାଇଁ ମୁଁ ଇଚ୍ଛା କରୁନାହିଁ କାରଣ ସେ ବର୍ତ୍ତମାନ ବଡ ସରକାରୀ ଚାକିରିରେ ଅଛନ୍ତି । ସେ ଦୁହେଁ ମୋ ସହିତ ଦକ୍ଷିଣ ଆଫ୍ରିକା ଯିବେ ବୋଲି ପ୍ରତିଜ୍ଞା କରିଥିଲେ । କିନ୍ତୁ ନ୍ୟାୟପତି ମିଃ ସିଃ ଏମ୍ଃ କାରସଠ୍‌ଜି ଉକ୍ତ ପାର୍ଶୀ ବନ୍ଧୁଙ୍କୁ ଅଟକାଇ ରଖିଲେ । କାରଣ ସେତେବେଳେ ସେ ତାହାଙ୍କର ବିବାହ ପାଇଁ ମନ୍ତ୍ରଣା କରୁଥିଲେ । ବିବାହ ଏବଂ ଦକ୍ଷିଣ ଆଫ୍ରିକା ଯାତ୍ରା ଏହି ଦୁଇଟିରୁ ଗୋଟିକୁ ସେ ବାଛି ନେବା ପାଇଁ ହୋଇଥିଲା; ସେ ପ୍ରଥମଟିକୁ ଧରିନେଲେ । କିନ୍ତୁ ଉକ୍ତ ଭଗ୍ନ-ପ୍ରତିଜ୍ଞାର କ୍ଷତିପୂରଣ ପାର୍ଶୀ ରୁସ୍ତମଜୀ କରିଥିଲେ ଓ ଯେଉଁ ସ୍ତ୍ରୀ ଉକ୍ତ ପ୍ରତିଜ୍ଞାର ଅନ୍ତରାୟ ହୋଇଥିଲେ, ତାହାଙ୍କ ଦୋଷ ମାର୍ଜନା ଲାଗି ଆଜି ଅନେକ ପାର୍ଶୀ ଭଉଣୀ ଖଦି କାମରେ ନିଜକୁ ଉତ୍ସର୍ଗ କରିଅଛନ୍ତି । ସୁତରାଂ ଉକ୍ତ ଦମ୍ପତିଙ୍କୁ ମୁଁ ଆନନ୍ଦର ସହିତ କ୍ଷମା କରିଅଛି । ଶ୍ରୀଯୁତ ଦେଶପାଣ୍ଡେଙ୍କର ବିବାହ ପ୍ରଲୋଭନ ନଥିଲା ସତ, କିନ୍ତୁ ସେ ମଧ୍ୟ ଆସି ପାରିଲେ ନାହିଁ । ତାହାଙ୍କର ଭଗ୍ନ-ପ୍ରତିଜ୍ଞା ଲାଗି ଆଜି କାଲି ସେ ବହୁ ପ୍ରତିକାର କରୁଅଛନ୍ତି । ମୁଁ ଦକ୍ଷିଣ ଆଫ୍ରିକାରୁ ଫେରି ଗଲାବେଳେ ବାଟରେ ଜାଞ୍ଜିବାର ଠାରେ ଜଣେ ତ୍ୟାବ୍‌ଜିଙ୍କ ସହିତ ମୋର ଦେଖା ହୋଇଥିଲା । ସେ ମଧ୍ୟ ଆସି ମୋତେ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତ ହେଲେ, କିନ୍ତୁ କେବେ ଆସିଲେ

ନାହିଁ । ମିଃ ଅବାସ ତ୍ୟାବ୍‌ଜୀ ଆଜି ସେହି ଦୋଷ ଲାଗି ଯଥେଷ୍ଟ ପ୍ରାୟ-ଶ୍ଚିତ୍ତ କରୁଅଛନ୍ତି । ବାରିଷ୍ଟରମାନଙ୍କ, ଦକ୍ଷିଣ ଆଫ୍ରିକାକୁ ନେବା ପାଇଁ ମୁଁ ଏହିପରି ଉଦ୍ୟମର ଚେଷ୍ଟା କଲି କିନ୍ତୁ କିଛି ଫଳ ହେଲନାହିଁ ।

ଏ ସମ୍ପର୍କରେ ମିଃ ପେଟ୍ରୋନଜୀ ପାଦଶା ମନେ ପଡନ୍ତି । ବିଲାତ ଅବସ୍ଥାନ ସମୟରୁ ତାହାଙ୍କ ସହିତ ମୋର ବନ୍ଧୁତା ଥାଏ । ଲଣ୍ଡନର ଗୋଟିଏ ନିରାମିଷ ହୋଟେଲରେ ତାହାଙ୍କ ସହିତ ମୋର ପ୍ରଥମେ ଦେଖା ହୋଇଥିଲା । ତାହାଙ୍କ ଭାଇ ମିଃ ବାର୍‌ଜୋରଜୀ ପାଦଶାଙ୍କୁ ମୁଁ ଜାଣିଥିଲି । ମୁଁ ତାହାଙ୍କୁ କେବେ ଦେଖିନଥାଏ, କିନ୍ତୁ ବନ୍ଧୁମାନେ କହୁଥାନ୍ତି ଯେ ସେ ଜଣେ ଅଦ୍ଭୁତ ଧରଣର ଲୋକ । ଘୋଡା ପ୍ରତି ଦୟା ବହି ସେ କେବେହେଲେ ଗାଡ଼ିରେ ଚଢ଼ି ନଥାନ୍ତି । ତାହାଙ୍କର ଅସାଧାରଣ ସ୍ମରଣ ଶକ୍ତି ଥିଲେ ମଧ୍ୟ ସେ କୌଣସି ଉପାଧି ନେବା ପାଇଁ ମନା କରୁଥାନ୍ତି । ସେ ସ୍ୱାଧୀନଚେତା ହୋଇ ଥାଉଥିଲେ ଓ ପାର୍ଶୀ ହୋଇ ମଧ୍ୟ ଫଳାହାର ଥିଲେ । ପେଟ୍ରୋନଜୀଙ୍କର ଏପରି ଖ୍ୟାତି ନଥାଏ; କିନ୍ତୁ ତାହାଙ୍କର ପାଣ୍ଡିତ୍ୟ ହେତୁ ସେ ଲଣ୍ଡନରେ ମଧ୍ୟ ସମ୍ମାନ ଲଭିଥିଲେ । ଫଳାହାର ଜୀବନ କେବଳ ଆମ୍ଭ ଦୁଇ ଜଣଙ୍କ ମଧ୍ୟରେ ସାମଞ୍ଜସ୍ୟ—କିନ୍ତୁ ପାଣ୍ଡିତ୍ୟରେ ନୁହେ । ପାଣ୍ଡିତ୍ୟରେ ତାହାଙ୍କର ସମକକ୍ଷ ହେବା ମୋର ଶକ୍ତିର ଅତୀତ ।

ତାହାଙ୍କୁ ମୁଁ ଅଲ୍ପଥରେ ବୋମ୍ବାଇରେ ଦେଖିଲି । ହାଇକୋର୍ଟରେ ସେ ପ୍ରଧାନ ଅଦାଲତ ପରୀକ୍ଷକ ( Prothonotary ) ହୋଇଥିଲେ । ମୁଁ ଯେତେବେଳେ ତାହାଙ୍କୁ ଦେଖିବାକୁ ଗଲି ସେ ଗୁଜରାଟୀ ଭାଷା ଅଭିଧାନ ପାଇଁ କିଛି ଲେଖୁଥିଲେ । ମୋର ଦକ୍ଷିଣ ଆଫ୍ରିକା କାର୍ଯ୍ୟ ଲାଗି ମୁଁ ଯେ କୌଣସି ବନ୍ଧୁଙ୍କଠାରୁ ସାହାଯ୍ୟ ଭିକ୍ଷା ନକରୁଛି, ତାହା ନୁହେ ।

ପେଷ୍ଟୋନଜି ପାର୍ଶୀ ମୋତେ ଯେ କେବଳ ସାହାଯ୍ୟ କରିବେ ନାହିଁ ବୋଲି କହିଲେ ତାହାନୁହେଁ, ମୁଁ ଅଉ ଦକ୍ଷିଣ ଆଫ୍ରିକା ନଯିବା ପାଇଁ ମଧ ଉପଦେଶ ଦେଇଥିଲେ ।

ସେ କହିଲେ—"ଆପଣଙ୍କୁ ସାହାଯ୍ୟ କରିବା ନିତାନ୍ତ ଅସମ୍ଭବ । ଆପଣ ଦକ୍ଷିଣ ଆଫ୍ରିକାକୁ ଯିବା କଥା ମଧ ମୋତେ ଭଲ ଲାଗୁନାହିଁ । ଆମ ଦେଶରେ କଣ କାର୍ଯ୍ୟର ଅଭାବ ? ଏବେ ଦେଖନ୍ତୁ ଆମ ଭାଷାର ଅଭିବୃଦ୍ଧି ପାଇଁ ଅନେକ କଥା କରିବାକୁ ହେବ । ବ୍ୟାକରଣ ସିଦ୍ଧ ପଦ-ଗୁଡ଼ିକ ସବୁ ମୁଁ ବାଛିବାକୁ ହେବ, କିନ୍ତୁ ତାହା ସେ କାର୍ଯ୍ୟର ଗୋଟିଏ ଅଂଶ ମାତ୍ର । ଦେଶର ଦରିଦ୍ର ଅବସ୍ଥା ପ୍ରତି ଟିକିଏ ଦୃଷ୍ଟି ଦିଅନ୍ତୁ ! ଆମର ଲୋକେ ଦକ୍ଷିଣ ଆଫ୍ରିକାରେ କଷ୍ଟ ପାଉଛନ୍ତି ସତ, କିନ୍ତୁ ଆପଣଙ୍କ ପରି ଜଣେ ବ୍ୟକ୍ତିଙ୍କୁ ସେ କାର୍ଯ୍ୟ ସକାଶେ ଉତ୍ସର୍ଗ କରିବା ମୋର ଇଚ୍ଛା ନୁହେଁ । ସ୍ୱାୟତ୍ତ ଶାସନ ପାଇଁ ପ୍ରଥମେ ଏଠାରେ ଚେଷ୍ଟା କରିବାକୁ ହେବ । ତାହାହେଲେ ସାଙ୍ଗେ ସାଙ୍ଗେ ସେଠାରେ ଥିବା ଆମ ଦେଶବାସୀଙ୍କୁ ଆମେ ସାହାଯ୍ୟ କରିପାରିବା । ମୁଁ ଜାଣେ, ମୁଁ ଆପଣଙ୍କର ପ୍ରତିଜ୍ଞାରେ ବାଧା ଦେଇ ନପାରେ, କିନ୍ତୁ ଆପଣଙ୍କ ଭଳିଆ ଅନ୍ୟଜଣେ ବ୍ୟକ୍ତିଙ୍କୁ ଆପଣଙ୍କର ସହକର୍ମୀ ହେବା ପାଇଁ ମୁଁ ଉତ୍ସାହ ଦେବିନାହିଁ ।

ମୁଁ ତାହାଙ୍କର ଏହି ଉପଦେଶକୁ ପସନ୍ଦ କଲିନାହିଁ, କିନ୍ତୁ ସେଥିଲାଗି ମି: ପେଷ୍ଟୋନଜି ପାର୍ଶୀଙ୍କ ପ୍ରତି ମୋର ସମ୍ମାନ ବଢିଲା । ମୁଁ ତାହାଙ୍କର ସ୍ୱଦେଶ ଓ ସ୍ୱଭାଷ-ପ୍ରୀତି ଦେଖି ବିମୁଗ୍ଧ ହୋଇଥିଲି । ଏହି ଘଟଣା ହେତୁ ଆମ ଦୁହିଙ୍କ ମଧରେ ବନ୍ଧୁତା ଘନିଷ୍ଠତର ହେଲା । ତାହାଙ୍କର ଅଭିମତ ମୁଁ ବୁଝି ପାରିଥିଲି; କିନ୍ତୁ ମୁଁ ମୋର ଦକ୍ଷିଣ ଆଫ୍ରିକା କାର୍ଯ୍ୟ ଛାଡ଼ିବା ଦୂରେ ଥାଉ ମୋର ପ୍ରତିଜ୍ଞା ଅଧିକର ଦୃଢ଼ୀଭୂତ ହେଲା ।

ଜଣେ ଦେଶ-ସେବକ ମାତ୍ରେ ଏହି ସେବାର କୌଣସି ଅଂଶ ତ୍ୟାଗ କରିଇ ନପାରେ । ଏବଂ ମୋ ପକ୍ଷେ ଗୀତାର ଏହି ନିମ୍ନୋକ୍ତ ଦୁଇଟି ପଂକ୍ତି ପ୍ରାଞ୍ଜଳ ଓ ମର୍ମସ୍ପର୍ଶୀ ହୋଇଥିଲା:—

"ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ, ପର ଧର୍ମାତ୍ ସ୍ୱନୁଷ୍ଠିତାତ୍
ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ" ।



# ଅଷ୍ଟବିଂଶ ପରିଚ୍ଛେଦ ।

(ପୁନା ଓ ମାନ୍ଦ୍ରାଜ)



ସର୍ ଫିରୋଜସା ମୋର ପଥ ମସୃଣ କରି ଦେଇଥିଲେ । ସୁତରାଂ ବୋମ୍ବାଇଠାରୁ ମୁଁ ପୁନାକୁ ଗଲି । ଏଠାରେ ଦୁଇଦଳ ଥିଲେ । ମୁଁ ବିଭିନ୍ନ ମତର ଲୋକଙ୍କଠାରୁ ସାହାଯ୍ୟ ଲୋଡିଥାଏ । ପ୍ରଥମେ ମୁଁ ଲୋକ-ମାନ୍ୟ ତିଲକଙ୍କ ସହିତ ଦେଖାକଲି ।

ସେ କହିଲେ—"ସବୁ ଦଳରୁ ସାହାଯ୍ୟ ପାଇଁ ଚେଷ୍ଟା କରି ଭଲ କରିଛନ୍ତି । ଦକ୍ଷିଣ ଆଫ୍ରିକା ବିଷୟ ନେଇ ମତଦ୍ୱୈଧ ହୋଇ ନପାରେ । କିନ୍ତୁ ସଭାପତି ସ୍ୱରୂପ ଜଣେ ସ୍ୱତନ୍ତ୍ର ବ୍ୟକ୍ତିଙ୍କୁ ବାଛିବାକୁ ହେବ । ଅଧ୍ୟାପକ ଭଣ୍ଡାରକାରଙ୍କୁ ଯାଇ ଦେଖନ୍ତୁ; ସେ କେତେ ଦିନ ହେଲା କୌଣସି ସାଧାରଣ ଆନ୍ଦୋଳନରେ ଯୋଗ ଦେଉ ନାହାନ୍ତି । କିନ୍ତୁ ଏହି ବିଷୟ ହେତୁ ସେ ଆସିପାରନ୍ତି । ତାହାଙ୍କ ସହିତ ଦେଖା କଲେ ଓ ସେ ଯାହା କହିବେ ମୋତେ ଆସି କହନ୍ତୁ । ମୁଁ ଯେତେଦୂର ପାରେ ଆପଣଙ୍କୁ

ସାହାଯ୍ୟ କରିବ । ଯେତେବେଳେ ଇଚ୍ଛାକଲେ ଆପଣ ମୋତେ ଦେଖି-ପାରନ୍ତି; ମୁଁ ଆପଣଙ୍କର ହୋଇ ରହିଲି" ।

ଲୋକମାନ୍ୟଙ୍କ ସହିତ ଏହା ମୋର ପ୍ରଥମ ସାକ୍ଷାତ । ତହାର ତାହାଙ୍କର ଲୋକ ମଣ୍ଡଳରେ କିପରି ଅସାଧାରଣ ପ୍ରତିପତ୍ତି, ମୁଁ ତାର ପରିଚୟ ପାଇଥିଲି ।

ତାପରେ ଫେରଗୁସନ କଲେଜ ପଡ଼ିଆରେ ଗୋଖେଲଙ୍କ ସହିତ ଦେଖାକଲି । ବଡ଼ ଆଦରର ସହିତ ମୋତେ ସେ ଗ୍ରହଣ କରିଥିଲେ ଓ ତାହାଙ୍କ ବ୍ୟବହାର ସେହିକ୍ଷଣି ମୋର ହୃଦୟ କିଣି ନେଇଥିଲା । ତାହାଙ୍କ ସହିତ ମଧ ମୋର ଏହା ପ୍ରଥମ ଦେଖା; କିନ୍ତୁ ମୋତେ ପ୍ରତୀତ ହେଲା ଯେ ଆମ୍ଭେ ଦୁହେଁ ଯେପରି ପୁରାତନ ସ୍ନେହର ପୁନରୁତ୍ଥାନ କରିଥିଲୁଁ । ସାର୍ ଫିରୋଜଶାଙ୍କୁ ହିମାଳୟ ପରି ଅଭ୍ର ଲୋକମାନ୍ୟଙ୍କୁ ସମୁଦ୍ର ପରି ମୁଁ ମଣିଥିଲି କିନ୍ତୁ ଗୋଖେଲ ଗଙ୍ଗାନଦୀ ସଦୃଶ୍ୟ । ପବିତ୍ର ଗଙ୍ଗା ଜଳରେ ଜଣେ ଆରାମପ୍ରଦ ସ୍ନାନ କରିପାରେ । କିନ୍ତୁ ହିମାଳୟରେ ଚଢ଼ିବା ଦୁଃସାଧ୍ୟ ଓ ସମୁଦ୍ର ଉପରକୁ ଲଙ୍ଘିଦେବା ସହଜ ନୁହେଁ । ମାତ୍ର ଗଙ୍ଗା ଜଣକୁ ତାହାଙ୍କ କୋଡ଼କୁ ଆମନ୍ତ୍ରଣ କରନ୍ତି । ଖଣ୍ଡିଏ ଡଙ୍ଗା ଓ ଆହୁଲା ଧରି ସେଥିରେ ଖେଳିବା ବଡ଼ ଆନନ୍ଦର କଥା । ସ୍କୁଲରେ ନାମ ଲେଖାଇବା ପାଇଁ ଜଣେ ପ୍ରଥମେ ଆସିଲାବେଳେ ଶିକ୍ଷକ ଯେପରି ତାକୁ ପରୀକ୍ଷା କରିଥାନ୍ତି, ଗୋଖେଲ ମଧ ମୋତେ ସେପରି ନଖାଗ୍ର ନଖାଗ୍ର ପରୀକ୍ଷା କରିଥିଲେ । କାହାଠାକୁ ଯିବାପାଇଁ ହେବ ଓ କିପରି ସେମାନଙ୍କୁ ଦେଖା କରିବାକୁ ହେବ ସେ ମୋତେ ତାହା ସବୁ କହିଥିଲେ । ସେ ମୋର ବକ୍ତୃତାଟି ଦେଖିବା ପାଇଁ ମାଗିଲେ । ମୋତେ କଲେଜର ଗୃହଆଦି ବୁଲାଇ ଦେଖାଇଲେ, ମୋ କାର୍ଯ୍ୟରେ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତ ହେଲେ

ଓ ଡାକ୍ତର ଭଣ୍ଡାରକାରଙ୍କ ସହିତ ଦେଖା କରିସାରି ସେ ଯାହା କହିବେ ତାହାଙ୍କୁ ସେ ଖବର ଦେବାକୁ କହି ମୋତେ ବିଦାୟ ଦେଇଥିଲେ—ମୁଁ ମହା ଆନନ୍ଦରେ ତାହାଙ୍କ ନିକଟରୁ ଫେରିଥିଲି । ଗୋଖେଲ ତାହାଙ୍କ ଜୀବିତାବସ୍ଥାରେ କାହିଁକି ଆଜି କାଲି ସୁଦ୍ଧା ରାଜନୈତିକ କ୍ଷେତ୍ରରେ ମୋର ଅଦ୍ୱିତୀୟ ଆଦର୍ଶ ।

ଡାକ୍ତର ଭଣ୍ଡାରକାର ମୋତେ ପୁତ୍ର ଭଳି ଗ୍ରହଣ କରିଥିଲେ । ମୁଁ ତାହାଙ୍କ ନିକଟକୁ ଗଲାବେଳେ ମଧ୍ୟାହ୍ନ ସମୟ । ସେ ସମୟରେ ମୁଁ ଲୋକଙ୍କୁ ଦେଖିବା ପାଇଁ ବ୍ୟସ୍ତ ହେଉଥିବା ଦେଖି ସେ ବଡ ତୁଷ୍ଟ ହେଲେ ଓ ସଭା ସମ୍ବନ୍ଧେ ଜଣେ ସ୍ୱତନ୍ତ୍ର ଦଳର ଲୋକ ଦରକାର ବୋଲି ମୁଁ ଧରିବସିବା ଜାଣି ସେ ସଭାପତି ହେବାପାଇଁ ସ୍ୱୀକାର କଲେ ଓ ବାରମ୍ବାର ହୃଦୟ ଖୋଲି କହିଲେ "ହଁ, ଠିକକଥା ।" ।

ମୋର ଯାହା କହିବାର ଥିଲା ସେସବୁ ଶୁଣିସାରି ସେ କହିଲେ—"ସମସ୍ତଙ୍କଠାରୁ ଆପଣ ଶୁଣିପାରିଥିବେ ଯେ ମୁଁ ରାଜନୀତି କ୍ଷେତ୍ରରେ ଯୋଗ ଦେଉନଥାଏ, କିନ୍ତୁ ମୁଁ ଆପଣଙ୍କୁ ନାହିଁ କରି ନପାରେ । ଆପଣଙ୍କର ବିଷୟ ଯେପରି ଗୁରୁତର ଆପଣଙ୍କର ପରିଶ୍ରମ ସେହିପରି ପ୍ରଶଂସାର୍ହ; ସୁତରାଂ ଆପଣଙ୍କ ସଭାରେ ଯୋଗ ଦେବାପାଇଁ ମୁଁ ମନା କରି ନପାରେ । ତିଳକ ଓ ଗୋଖେଲଙ୍କ ସହିତ ପରାମର୍ଶ କରି ଭଲ କରିଛନ୍ତି । ସେମାନଙ୍କୁ କହନ୍ତୁ ଯେ ଦୁଇଟି 'ସଭା' ପକ୍ଷରୁ ଯେଉଁ ବଡ ସଭାର ଯୋଗାଡ଼ ହେଉଛି ସେଥିରେ ସଭାପତି ହେବା ପାଇଁ ମୁଁ ଆନନ୍ଦର ସହିତ ସ୍ୱୀକାର କରୁଛି । ସଭାର ସମୟ ମୁଁ କହିବା ଦରକାର ନାହିଁ, ସେମାନଙ୍କୁ ଯେଉଁ ସମୟ ସୁବିଧା ହେବ ମୋତେ ମଧ୍ୟ ହେବ"—ଏହା କହି ମୋତେ ସେ ଆଶୀର୍ବାଦ ଦେଇ ବିଦାୟ ଦେଲେ ।

କୌଣସି ଆଡ଼ମ୍ବର ନଦେଖାଇ ପୂନାର ଏହି ସୁଶିକ୍ଷିତ ଓ ନିସ୍ୱାର୍ଥପର କର୍ମୀଦଳ ଏକ ସାଧାରଣ ସ୍ଥାନରେ ଗୋଟିଏ ସଭା କରି ମୋତେ ବିଦାୟ କରିଦେଲେ । ମୋର କାର୍ଯ୍ୟ ଫଳପ୍ରଦ ହେବ ବୋଲି ବିଶ୍ୱାସ କରି ମୁଁ ଆନନ୍ଦରେ ଫେରିଲି ।

ତାପରେ ମୁଁ ମାନ୍ଦ୍ରାଜକୁ ଗଲି । ସେଠାରେ ଉତ୍ସାହ-ଅଗ୍ନି ସତେ ଯେପରି ଜଳି ଉଠିଥିଲା । ବାଲସୁନ୍ଦରମଙ୍କ ଘଟଣା ନେଇ ସଭାରେ ଚହଳ ପଡ଼ିଗଲା । ମୋ ବକ୍ତୃତାଟି ଛପା ହୋଇଥିଲା । ତାହା ଅତି ଦୀର୍ଘ ହୋଇଥିଲେହେଁ ସଭାର ଲୋକେ ବଡ଼ ଆଦରର ସହିତ ଶୁଣିଥିଲେ । ସଭା ଶେଷ ହେଲାକ୍ଷଣି "ପତ୍ର କାଗଜ" ସକାଶେ ଲୋକେ ଅନବରତ ଆସିବାକୁ ଲାଗିଲେ । ପରିମାର୍ଜିତ କରି ତାର ଦ୍ୱିତୀୟ ସଂସ୍କରଣ ଛପାଗଲା— ଦଶ ହଜାର ଖଣ୍ଡ କାଗଜ ଛପା ଯାଇଥିଲା । ଗରମ ପିଠାପରି ତାହା ବିକ୍ରୟ ହୋଇଥିଲା, କିନ୍ତୁ ଏତେ ଛପାଇବା ଅନାବଶ୍ୟକ ବୋଲି ମୁଁ ପରେ ବୁଝି ପାରିଥିଲି । ମୁଁ ବେଶି ଉତ୍ସାହିତ ହୋଇ ଯାହା ଦରକାର ତାଠାରୁ ଅଧିକ ସଂଖ୍ୟା ଛପାଇଦେଲି । ଇଂରେଜି ଜାଣିବା ଲୋକେ ମୋର ବକ୍ତୃତାଟି ବୁଝିବା କଥା, କିନ୍ତୁ ମାନ୍ଦ୍ରାଜରେ କେବଳ ସେହି ଶ୍ରେଣୀର ଲୋକେ ଦଶହଜାର କାଗଜ କିଣି ପାରି ନଥିଲେ ।

ସେଠାରେ ମୁଁ ପରଲୋକ ଗତ ଶ୍ରୀଯୁକ୍ତ ଜି: ପରମେଶ୍ୱରନ୍ ପିଲେଙ୍କଠାରୁ ବେଶି ସାହାଯ୍ୟ ପାଇଥିଲି । ସେ "ମେଡ୍ରାସ ଷ୍ଟାଣ୍ଡାର୍ଡ" ପତ୍ରିକାର ସମ୍ପାଦକ ଥିଲେ । ଦକ୍ଷିଣ ଆଫ୍ରିକା ବିଷୟ ସମ୍ବନ୍ଧେ ସେ ଉତ୍ତମରୂପେ ଜାଣିଥିଲେ ଓ ଅନେକ ସମୟରେ ତାହାଙ୍କ ଅଫିସକୁ ଡକାଇ ମୋତେ ଉପଦେଶ ଦେଲେ । "ହିନ୍ଦୁ" ପତ୍ରିକାର ସମ୍ପାଦକ ଶ୍ରୀଯୁତ ଜି ସୁବ୍ରମନ୍ୟମ୍ ଓ ଡାକ୍ତର ସୁବ୍ରମନ୍ୟମ୍‌ଙ୍କର ମଧ୍ୟ ମୋ ପ୍ରତି ସହାନୁଭୂତି ଥିଲା ।

କିନ୍ତୁ ଶ୍ରୀଯୁକ୍ତ ଜି: ପରମେଶ୍ୱରନ୍ ପିଲେ "ମେଡ୍ରାସ ଷ୍ଟାଣ୍ଡାର୍ଡ" ପତ୍ରିକାରେ ଲେଖିବାପାଇଁ ସୁବିଧା ଦେଇଥିଲେ ଓ ମୁଁ ତାହାଙ୍କର ଯାଚଞ୍ଚା ଆଦରର ସହିତ ଗ୍ରହଣ କରିଥିଲି । ମୋର ଯେତେଦୂର ସ୍ମରଣ ହେଉଛି ପାଚେଯାପ୍ପା ହାଲ୍‌ରେ ସଭା ହୋଇଥିଲା, ଡାକ୍ତର ଶୁବ୍ରମଣ୍ୟମ୍ ସଭାପତି ହୋଇଥିଲେ ।

ମୁଁ ଦେଖିବା ବନ୍ଧୁମାନଙ୍କ ମଧ୍ୟରୁ ଅଧିକାଂଶ ମୋତେ ବେଶି ସ୍ନେହ କରିଥିବା ଯୋଗୁଁ ଓ ଦକ୍ଷିଣ ଆଫ୍ରିକା ବିଷୟ ପ୍ରତି ସେମାନେ ଅତ୍ୟନ୍ତ ଉତ୍ସାହ ଦେଖାଉଥିବା ହେତୁ ସେମାନଙ୍କ ସହିତ ଇଂରେଜିରେ କଥାବାର୍ତ୍ତା କଲେ ମଧ୍ୟ ମୁଁ ବଡ ତୃପ୍ତ ହୋଇଥିଲି । ପ୍ରେମ ସମସ୍ତ ବାଧା ଅତିକ୍ରମ କରିପାରେ ।

ଊନତ୍ରିଂଶ ପରିଚ୍ଛେଦ ।

( ଶୀଘ୍ର ଫେରନ୍ତୁ । )

—୪)-୩-(୪—

ମାନ୍ଦ୍ରାଜରୁ ମୁଁ କଲିକତାକୁ ଗଲି । ସେଠାରେ ମୋତେ ଗୁରୁ-ଆଡୁ ଅସୁବିଧା ଭୋଗିବାକୁ ହେଲା । କଲିକତାରେ ମୁଁ କାହାରିକୁ ଚିହ୍ନି ନଥିଲି; ସୁତରାଂ "ଗ୍ରେଟ ଇଷ୍ଟର୍ନ ହୋଟେଲ"ରେ ଗୋଟିଏ ବଖରା ଭଡ଼ା ନେଲି । 'ଡେଲି ଟେଲିଗ୍ରାଫ' ପତ୍ରିକାର ପ୍ରତିନିଧି ମିଃ ଏଲରଥ-ରଙ୍କ ସହିତ ମୁଁ ଏଠାରେ ପରିଚିତ ହେଲି । ସେ 'ବେଙ୍ଗାଲ କ୍ଲବ'ରେ ରହୁଥିଲେ; ସେଠାକୁ ଯିବା ପାଇଁ ମୋତେ ସେ ଆମନ୍ତ୍ରଣ କଲେ । ସେତେବେଳେ ସେ ଜାଣି ନଥିଲେ ଯେ ଜଣେ ଭାରତୀୟଙ୍କୁ କ୍ଲବର

ବୈଠକ ଖାନାକୁ ନିଆ ଯାଇ ନପାରେ । ସେ ସମ୍ବନ୍ଧେ ପରେ ସେ ବୁଝି ପାରି ତାହାଙ୍କ ନିଜ ବଖରାକୁ ମୋତେ ନେଲେ । ସ୍ଥାନୀୟ ଇଂରେଜ ଲୋକଙ୍କର ଏପରି ଭେଦଭାବ ଦେଖି ସେ ଦୁଃଖ ପ୍ରକାଶ କଲେ ଓ ବୈଠକ ଖାନାକୁ ମୋତେ ନେଇ ପାରିଲେ ନାହିଁ ବୋଲି ମୋଠାରେ କ୍ଷମା ପ୍ରାର୍ଥନା କରିଥିଲେ ।

"ବଙ୍ଗର ଦେବ ପ୍ରତିମା" ସୁରେନ୍ଦ୍ରନାଥ ବେନାର୍ଜିଙ୍କୁ ମୁଁ ଦେଖିବା କଥା ଥିଲା । ମୁଁ ତାହାଙ୍କୁ ସାକ୍ଷାତ କରିବାବେଳେ ସେ ଅନେକ ବନ୍ଧୁ ପରିବେଷ୍ଟିତ ହୋଇ ବସିଥିଲେ ।

ସେ କହିଲେ, "ମୋର ଭୟ ହେଉଛି ଆପଣଙ୍କ କାର୍ଯ୍ୟ ପ୍ରତି ଲୋକଙ୍କର ଶ୍ରଦ୍ଧା ଜନ୍ମିବ ନାହିଁ । ଆପଣ ଜାଣନ୍ତି ଏଠାରେ ଆମର ଅସୁବିଧା କମ୍ ନୁହେ । କିନ୍ତୁ ଯେତେଦୂର ପାରିବେ ଆପଣ ଚେଷ୍ଟା କରିବାକୁ ହେବ । ମହାରାଜାମାନଙ୍କର ସହାନୁଭୂତି ପାଇବା ଦରକାର । 'ବ୍ରିଟିଶ ଭାରତୀୟ ସମାଜ'ର ପ୍ରତିନିଧିଙ୍କୁ ଦେଖିବା ପାଇଁ ଆପଣ ଭୁଲିବେ ନାହିଁ । ରାଜା ସର ପ୍ୟାରି ମୋହନ ମୁଖାର୍ଜିଙ୍କୁ ଓ ମହାରାଜା ଠାକୁରଙ୍କୁ ମଧ୍ୟ ଆପଣ ଦେଖିବା ଉଚିତ । ଦୁହେଁ ଯାକ ଉଦାର ମନା ଓ ସାଧାରଣ କାର୍ଯ୍ୟରେ ବେଶି ଯୋଗ ଦିଅନ୍ତି ।

ମୁଁ ଏ ଦୁଇ ଜଣଙ୍କୁ ଦେଖିଲି; କିନ୍ତୁ କିଛି ଫଳ ହେଲାନାହିଁ । ଉଭୟେ ମୋତେ ଆଦରର ସହିତ ଗ୍ରହଣ କରି ନଥିଲେ ଏବଂ କହିଲେ ଯେ କଲିକତାରେ ଗୋଟିଏ ସାଧାରଣ ସଭା ଡାକିବା ସହଜ କଥା ନୁହେଁ, କିନ୍ତୁ ଯଦି କିଛି କରିବାକୁ ହୁଏ ତାହାହେଲେ ସେକଥା ସୁରେନ୍ଦ୍ରନାଥ ବେନାର୍ଜିଙ୍କ ଉପରେ ନିର୍ଭର ।

ମୁଁ ଦେଖିଲି ମୋର କାର୍ଯ୍ୟ ବେଳୁଁ ବେଶ ଅସୁବିଧା ଜନକ ହୋଇ ପଡ଼ିଅଛି । 'ଅମୃତ ବଜାର ପତ୍ରିକା' ଅଫିସକୁ ଗଲି; କିନ୍ତୁ ସେଠାରେ ମୁଁ ଯେଉଁ ଭଦ୍ରବ୍ୟକ୍ତିଙ୍କୁ ଦେଖିଲି ସେ ମୋତେ ଜଣେ ଭ୍ରମଣକାରୀ "ଜିଉ" ( Jew=ଯିହୁଦୀ ) ବୋଲି ମନେକଲେ । 'ବଙ୍ଗବାସୀ' ପତ୍ରିକା ଅଫିସର ବ୍ୟବହାର ତାଠାରୁ ଅଧିକ । ଘଣ୍ଟାଏ ପର୍ଯ୍ୟନ୍ତ ସମ୍ପାଦକ ମହାଶୟ ମୋତେ ଜଗାଇ ଦେଇଥିଲେ । ଅନେକ ଲୋକ ତାହାଙ୍କ ସହିତ ଦେଖା କରୁଥିଲେ ସତ, କିନ୍ତୁ ସେମାନେ ବାହାରି ଗଲା ପରେ ମଧ୍ୟ ସେ ମୋ ଆଡ଼କୁ ଦୃଷ୍ଟି ପକାଇ ନଥିଲେ । ବହୁତ ସମୟ ଅପେକ୍ଷା କଲା ପରେ ମୁଁ ମୋର ବକ୍ତବ୍ୟ ସାହସ କରି ତାହାଙ୍କୁ କହିବାରୁ ସେ କହିଲେ, "ଦେଖୁନାହାନ୍ତି ଆମେ କିପରି କାର୍ଯ୍ୟରେ ବ୍ୟସ୍ତ ଅଛୁଁ ? ଆପଣଙ୍କ ଭଳିଆ କେତେ ଦର୍ଶକ ଯେ ଆସୁଛନ୍ତି ତାହାର କଳନା ନାହିଁ । ଆପଣ ବାହାରି ଯାଆନ୍ତୁ—ଆପଣଙ୍କର କଥା ଶୁଣିବା ପାଇଁ ମୁଁ ପ୍ରସ୍ତୁତ ନୁହେଁ" । କ୍ଷଣକପାଇଁ ମୁଁ ବ୍ୟଥିତ ହେଲି କିନ୍ତୁ ପର କ୍ଷଣରେ ଜଣେ ସମ୍ପାଦକଙ୍କର ଅବସ୍ଥା କିପରି ସେ କଥା ବୁଝିଗଲି । 'ବଙ୍ଗବାସୀ'ର ଖ୍ୟାତି ସମ୍ବନ୍ଧେ ମୁଁ ଶୁଣିଥିଲି । ମୁଁ ଦେଖିଲି ଯେ ସେ ଅଫିସକୁ ଦର୍ଶକମାନେ ଅନବରତ ଆସୁଥାନ୍ତି ଏବଂ ସେମାନେ ସମସ୍ତେ ସମ୍ପାଦକଙ୍କର ପରିଚିତ । ତାହାଙ୍କ ପତ୍ରିକାରେ ଆଲୋଚନା କରିବା ପାଇଁ ବିଷୟର ମଧ୍ୟ ଅଭାବ ନଥିଲା ଓ ଦକ୍ଷିଣ ଆଫ୍ରିକା ସମ୍ବନ୍ଧେ ସେତେବେଳେ କେହି କିଛି ଜାଣିନଥିଲେ ।

ନିଜ ନିଜର ଗୁହାର କହିବାପାଇଁ ସମ୍ପାଦକଙ୍କ ଅଫିସକୁ ଅନେକ ଲୋକ ଆସିଥାନ୍ତି । ସୁତରାଂ ଜଣେ ଗୁରୁତର ଗୁହାର ଘେନି ତାହାଙ୍କ ନିକଟକୁ ଆସିଲେ ମଧ୍ୟ ସେ ସମସ୍ତଙ୍କ ମଧ୍ୟରୁ ଜଣେ ମାତ୍ର । ସେ ସମସ୍ତଙ୍କୁ

ସଂପାଦକ ଉପର ବା ଦେଖିବେ ତଥା ତୃପ୍ତ କରିବେ ? ବାସ୍ତବିକ କଥା, ଯେଉଁମାନେ ଖୁଣ୍ଟାଇ କହିବାକୁ ସଂପାଦକଙ୍କର ଦ୍ୱାରସ୍ଥ ହୁଅନ୍ତି ସେମାନେ ମନେ କରନ୍ତି ଯେ ପୃଥିବୀରେ ସଂପାଦକ ଜଣେ କ୍ଷମତାଶାଳୀ ବ୍ୟକ୍ତି । କିନ୍ତୁ କେବଳ ସେ ନିଜେ ଜାଣନ୍ତି ଯେ ତାହାଙ୍କର କ୍ଷମତା ତାହାଙ୍କ ଅଫିସ ସୀମା ଅତିକ୍ରମ କରି ନପାରେ । ସେ ଯାହାହେଉ ମୁଁ ନିରୁତ୍ସାହ ହୋଇ ନଥିଲି; ଅନ୍ୟାନ୍ୟ ପତ୍ରିକାର ସଂପାଦକମାନଙ୍କୁ ଦେଖିବାକୁ ଲାଗିଲି । ପୂର୍ବୋକ୍ତ ଗୋରା ସଂପାଦକଙ୍କ ସହିତ ମଧ୍ୟ ଦେଖାକଲି । 'ଷ୍ଟେଟ୍ସମେନ' ଓ 'ଇଂଲିସମେନ' ପତ୍ରିକାର ସଂପାଦକ ଦ୍ୱୟ ବିଷୟଟିର ଗୁରୁତା ବୁଝିପାରି ଥିଲେ । ମୁଁ ସେମାନଙ୍କ ସହିତ ଅନେକ ସମୟ କଥା-ବାର୍ତ୍ତା କରିଥାଏ—ମୋର ସମସ୍ତ କଥା ସେମାନେ ପତ୍ରିକସ୍ଥ କରିଥାନ୍ତି ।

'ଇଂଲିସମେନ' ପତ୍ରିକାର ସଂପାଦକ ମି: ସାଣ୍ଡରସ୍ ମୋତେ ନିଜର କରି ନେଲେ ଏବଂ ତାହାଙ୍କ ଅଫିସରୁ କାଗଜ ପତ୍ର ଦେଖିବାପାଇଁ ଓ ତାହାଙ୍କ ପତ୍ରିକାରେ ଲେଖିବା ପାଇଁ ମୋତେ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲେ । ଦକ୍ଷିଣ ଆଫ୍ରିକା ବିଷୟ ନେଇ ତାହାଙ୍କ ପତ୍ରିକାରେ ସେ ଯେଉଁ ଅଗ୍ରଲେଖା ଲେଖିଥିଲେ ତାହାର ପାଣ୍ଡୁଲିପି ମୋଠାକୁ ପୂର୍ବରୁ ପଠାଇ ସେଥିରେ ଯେ କୌଣସି ପରିବର୍ତ୍ତନ କରିବା ପାଇଁ ମଧ୍ୟ ମୋତେ ଅନୁମତି ଦେଇଥିଲେ । ଆମ୍ଭ ଦୁହିଙ୍କ ମଧ୍ୟରେ ବନ୍ଧୁତା ଜନ୍ମିଲା କହିଲେ ଅତ୍ୟୁକ୍ତି ହୋଇ ନପାରେ । ଯେତେଦୂର ପାରିବେ ମୋତେ ସେ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତ ହୋଇ ତାହା କାର୍ଯ୍ୟରେ ପରିଣତ କରି-ଥିଲେ ଓ ଜୀବନର ଶେଷ ମୁହୂର୍ତ୍ତ ଯାଏ ମୋ ସହିତ ଉଠପଣ ବ୍ୟବହାର କରୁଥିଲେ ।

ମୋ ଜୀବନରେ ମୁଁ ଏହିପରି ଅନେକ ବନ୍ଧୁତାର ସଂଯୋଗ ପାଇଅଛି । ସେ ସବୁ ଆନନ୍ଦର ଭାବରେ ମଧ୍ୟ ରହିଅଛି । ଅତିଶୟୋକ୍ତି ନ କରିବା ଓ ସତ୍ୟ ପ୍ରତି ଅନୁରାଗୀ ହେବା ଯୋଗୁଁ ମିଃ ସାଣ୍ଡରସ୍ ମୋତେ ଭଲ ପାଉଥିଲେ । ମୋର ଦକ୍ଷିଣ ଆଫ୍ରିକା କାର୍ଯ୍ୟ ପ୍ରତି ସେ ସହାନୁଭୂତି ଦେଖାଇବା ପୂର୍ବରୁ ନାନାରୂପେ ମୋତେ ସେ ଅନେକ ପ୍ରଶ୍ନ କରିଥିଲେ—କିନ୍ତୁ ପରିଶେଷରେ ସେ ଦେଖିଲେ ଯେ ଦକ୍ଷିଣ ଆଫ୍ରିକାର ଗୋରାମାନଙ୍କ ବିଷୟ ମଧ୍ୟ ନିରପେକ୍ଷ ଭାବରେ କହିବାକୁ ମୁଁ ଭୁଲି ନାହିଁ ଓ ତାର ସ୍ୱୀକୃତି ମଧ୍ୟ ଉପଲବ୍ଧି କରିଅଛି ।

ମୁଁ ମୋର ଅନୁଭୂତିରୁ ବୁଝି ପାରିଅଛି ଯେ ବିପକ୍ଷ ପକ୍ଷକୁ ନ୍ୟାୟ ଦେଇ ଆମ୍ଭେ ନିଜେ ଶୀଘ୍ର ନ୍ୟାୟ ପାଇ ଥାଉଁ ।

ମିଃ ସାଣ୍ଡରସ୍ଙ୍କର ଏହି ଆକସ୍ମିକ ସାହାଯ୍ୟ ଯୋଗୁଁ ମୁଁ କଲିକତାରେ ଗୋଟିଏ ସାଧାରଣ ସଭା ଡକାଇ ପାରିବି ବୋଲି ଆଶା ପୋଷଣ କଲି; କିନ୍ତୁ ସେତେବେଳେ ଡରବାନରୁ ତାର ଆସିଲା ଯେ, "ପାରଲିଆମେଣ୍ଟ ଜାନୁୟାରୀରେ ବସୁଛି, ଶୀଘ୍ର ଫେରନ୍ତୁ" ।

ସୁତରାଂ ମୁଁ କାହିଁକି ଏତେ ଶୀଘ୍ର କଲିକତା ଛାଡୁଛି ତାହା ବୃଷ୍ଟାଲ ପତ୍ରିକାରେ ଗୋଟିଏ ଲେଖା ପ୍ରକାଶ କଲି ଓ ବୋମ୍ବାଇକୁ ବାହାରି ଗଲି । ଯିବା ପୂର୍ବରୁ ଦାଦା ଅବଦୁଲ୍ଲା କମ୍ପାନୀର ବୋମ୍ବାଇ ପ୍ରତିନିଧିଙ୍କ ଠାକୁ ତାର ଦେଇଥିଲି ଯେ ଦକ୍ଷିଣ ଆଫ୍ରିକାକୁ ଯାଉଥିବା ପ୍ରଥମ ଜାହାଜରେ ମୁଁ ଯିବା ସକାଶେ ସେ ଯେପରି ବ୍ୟବସ୍ଥା କରନ୍ତି । ଦାଦା ଅବଦୁଲ୍ଲା ଠିକ ସେ ସମୟରେ 'କୋରଲେଣ୍ଡ' ନାମକ ଗୋଟିଏ ବାଷ୍ପଯୋତ କିଣିଥିଲେ । ସେଥିରେ ମୋତେ ଓ ମୋର ପରିବାର ସମସ୍ତଙ୍କୁ ବିନାମୂଲ୍ୟରେ ନେବା ସକାଶେ ସେ ଧରି ବସିଲେ ।

ବନ୍ଧୁଙ୍କ ଭବନରେ ମୁଁ ତାହାଙ୍କ ଆତିଥ୍ୟ ଗ୍ରହଣ କଲି ଓ ଡିସେମ୍ବର ପ୍ରଥମ ସପ୍ତାହରେ ମୋର ସ୍ତ୍ରୀ, ଦୁଇ ପୁଅ ଓ ମୋର ବିଧବା ଭଉଣୀଙ୍କର ଏକମାତ୍ର ପୁଅକୁ ସାଙ୍ଗରେ ନେଇ ଦ୍ୱିତୀୟ ଥର ଦକ୍ଷିଣ ଆଫ୍ରିକା ଯାତ୍ରା କଲି । 'ନାଦେରୀ' ନାମକ ଆଉ ଗୋଟିଏ ବାଷ୍ପପୋତ ମଧ୍ୟ ସେତେବେଳେ ଡରବାନ ଯାଉଥିଲା । ଦୁଇଟି ଜାହାଜର ଯାତ୍ରୀ ସଂଖ୍ୟା ପ୍ରାୟ ଅଠଶତ; ସେଥିରୁ ଚାରିଶତ ଟ୍ରାନ୍ସଭାଲ ଯାଉଥିଲେ ।

( ଦ୍ୱିତୀୟ ଭାଗ ଶେଷ )

## ପ୍ରଥମଖଣ୍ଡ ସମାପ୍ତ ।

